# ସେଇ ପାହାଡ଼ତଳ

ଲେଖକ :
ରାସବିହାରୀ ବେହେରା
ଭବାନୀପାଟଣା

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା (ଅଫସେଟ୍) ପ୍ରିଣ୍ଟସ୍,** ସୂତାହାଟ, କଟକ-୧
ଫୋନ୍ : 0671-625148

ପ୍ରଥମ ମୁଦ୍ରଣ : ଜୁଲାଇ, ୧୯୯୮

ମୂଲ୍ୟ : ଟ. ୭୦-୦୦
ସାଦାବନ୍ଧେଇ : ଟ. ୬୦-୦୦

ଅସମତଳ ପାହାଡ଼ଘେରା ଗାଆଁଟି। ନାଁ ତାର କେନ୍ଦୁପାଟି। ଗାଁର ଅତି ନିକଟରେ ବୁଦୁବୁଦୁକିଆ ଜଙ୍ଗଲ। ବେଶୀ ଦୂର ମଧ୍ୟ ନୁହେଁ। ରାତି ପାହିଲେ ଗାଁଲୋକ, ଆଖପାଖ ଗାଁର ଅନେକ ଲୋକ, ପୁଅଝିଅ, ବୁଢ଼ାବୁଢ଼ୀ ସଭିଏଁ ସେହି ପାହାଡ଼ରେ କିଏ କାଠ ହାଣି ଓ ତାକୁ ଛୋଟ ଛୋଟ ଖଣ୍ଡକରି ବିଡ଼ା-ବାନ୍ଧି, କିଏ ଶରଗି ପତର, କଅଁଳିଆ ବାଉଁଶ ଗଜା କରଡ଼ି ଅବା କିଏ ବିଭିନ୍ନ ବଣ୍ୟ ଫଳ ହରିଡ଼ା, ଅଁଳା, କେନ୍ଦୁ ସଂଗ୍ରହ କରି ନିଜର ଜୀବିକା ନିର୍ବାହ କରିଥାନ୍ତି।

ବଣର ଶାଗ, କରଡ଼ିଗଜା, କାଠ, ପତର, ଦାନ୍ତକାଠି, ଫଳମୂଳ ମୁଣ୍ଡରେ ବୋଝେ ଲେଖାଏଁ ବୋହି ସନ୍ଧ୍ୟାବେଳକୁ ଘରକୁ ଫେରିଆସନ୍ତି। ତା' ଆରଦିନ ପାଖ ହାଟକୁ ଯାଇ ବିକ୍ରିବଟା କରି ହାଟରୁ ନିଜର ଆବଶ୍ୟକୀୟ ଜିନିଷ ସଂଗ୍ରହ କରି ଘରକୁ ଫେରିଆସିଥାନ୍ତି।

ପାହାଡ଼ହିଁ ସେମାନଙ୍କ ଜୀବନ; ବଞ୍ଚିବାପାଇଁ ଏକ ମାଧ୍ୟମ। ଚାଷକାମ ନଥିଲେ ସେମାନେ ସଦାସର୍ବଦା ପାହାଡ଼ରେ ଦିନ କାଟିଦିଅନ୍ତି। ଦିନଟିଏ ପାହାଡ଼କୁ ନଗଲେ ସେମାନଙ୍କ ମନ ପୂରିବନାହିଁ କି ପେଟ ପୂରିବନାହିଁ।

ଗାଁର ଚତୁର୍ଦ୍ଦିଗରେ ବିସ୍ତୃତ ଧାନକ୍ଷେତ। ପାହାଡ଼ିଆ ଜମି। ବଡ଼ ବଡ଼ ହୁଡ଼ା। ବର୍ଷା ହୋଇଗଲେ ଗାଁ ପାଣି, ପାହାଡ଼ ପାଣି ମିଶି କ୍ଷଣିକ ମଧ୍ୟରେ ବିଲବାଡ଼ି ପାଣିରେ ବୁଡିଯାଇ ଚତୁର୍ଦ୍ଦିଗ ବର୍ଷାପାଣିରେ ଭରିଯାଏ। ଜମିର ଧାନଗଛ ବର୍ଷାପାଣିରେ ବୁଡିଯାଇ ଚତୁର୍ଦ୍ଦିଗ ଧଳା ହୋଇଯାଏ। ବର୍ଷା ଛାଡ଼ିଗଲେ, ତାର କିଛିକ୍ଷଣ ପରେ ପୁଣି ସବୁଜକ୍ଷେତ ଏକ ମଳିନ ଧୂସର ବର୍ଣ୍ଣରେ ମୁଣ୍ଡ ଟେକିଉଠେ। ବର୍ଷାପରେ ସୂର୍ଯ୍ୟଙ୍କ ସୁନେଲି କିରଣ ବିସ୍ତୃତ ଧାନକ୍ଷେତରେ ବିଛେଇ ହୋଇ ଏକ ଅପୂର୍ବ ଶୋଭା ସୃଷ୍ଟି କରିଥାଏ।

ଏଣେ ବର୍ଷାପାଣିର ଘୋ-ଘୋ ଗର୍ଜନ ସଙ୍ଗେ ପାହାଡ଼ିଆ ପାଣି ବିଲବାଡ଼ି ଭାଙ୍ଗି ଛୁଟିଥାଏ ଅମାନିଆ ଗତିରେ। ପ୍ରଖର ପବନ ପାଖ ପାହାଡ଼ରେ ପିଟିହୋଇ ସୁ-ସୁ ଶବ୍ଦରେ ଗାଁ ଲୋକଙ୍କୁ ଭୟଭୀତ କରି ବୋହିଚାଲିଥାଏ। ପବନର ବେଗ ଯୋଗୁଁ ବର୍ଷାପାଣିବୁନ୍ଦା ଦେହରେ ବାଜିଲେ ଛୁଞ୍ଚି ଫୋଡ଼ିହେଲାଭଳି ମନେହେଉଥାଏ। ସାଇଁ ସାଇଁ ପବନ ବୋହି କ୍ଷଣିକ ମଧ୍ୟରେ ଡ଼ଙ୍ଗରକୁ ମେଘରେ ଢାଙ୍କିପକାଏ। ପବନର ପ୍ରଖର ଗତିରେ ଗଛ ଡାଳସବୁ ଭାଙ୍ଗିପଡ଼ିଲାଭଳି କଡ଼ମଡ଼୍ ଶବ୍ଦ କରି

ଲାଗିରହିଥାଏ । କେତେବେଳେ ଗୋଟିଏ ପଥରରୁ ଆର ପଥରକୁ ଡେଇଁ ଡେଇଁ ଚାଲିଥାଏ । ପଥରରେ ସ୍ଥାନଟି ବିଛେଇ ହୋଇ ରହିଥାଏ । ଝରଣାର କୁଳୁକୁଳୁ ନାଦର ସୁମଧୁର ସ୍ୱରଭଳି ତାର ପାଦର ନୂପୁର ସ୍ୱର ଗୋଟିଏ ପଥରରୁ ଆର ପଥରକୁ ଡେଇଁବା ମଧ୍ୟରେ ଏକ ମଧୁର ସ୍ୱରଲହରୀ ସୃଷ୍ଟି କରିଚାଲିଥାଏ । ବୁଦା ଉହାଡ଼ରୁ କନ୍ଦି-ବିକନ୍ଦି ଦେଇ, ଡେଇଁ ଡେଇଁ ଆଗକୁ ଗୋଟିଏ ଟିକି ଝିଅ ଦୂରରୁ ଆସିଲାଭଳି ମନେହେଉଥାଏ ତ କେତେବେଳେ ବୁଦା ଉହାଡ଼ରେ ଛପିଗଲାଭଳି ମନେହେଉଥାଏ । କେତେବେଳେ ତାର ମୁକୁଳା କେଶ ଫିଟି ପବନରେ ଫରଫର ଉଡ଼ି ଏକ ଅପୂର୍ବ ଶୋଭା ସୃଷ୍ଟିକରୁଥାଏ ।

ନବୀନ ଦୂରରୁ କିଆର ଡେଇଁ ଡେଇଁ ଦୌଡ଼ିବା ଦୃଶ୍ୟକୁ ଅପଲକ ନୟନରେ ଅନାଇ ରହିଥାଏ । ବଣ ପାହାଡ଼ରେ ଘୂରୁଥିବା ଏଇ ପାହାଡ଼ୀ କନ୍ୟାର ଏ ଅପୂର୍ବ ରୂପସମ୍ଭାର ତା' ମନରେ ପୁଲକ ସୃଷ୍ଟି କରୁଥାଏ । ଛେଳି ଅଡ଼େଇଦେଇ କିଆ ଏକ ପ୍ରଜାପତି ପଛରେ ଗୋଡ଼ାଇ ଚାଲିଥାଏ । ଦୂରରୁ କିଆ ଦେଖିଲା, ସୁନ୍ଦର ପ୍ରଜାପତିଟି ପାହାଡ଼ୀ ଫୁଲ ଗଛରେ ବସି ଡେଣା ହଲାଇ ହଲାଇ ମଧୁପାନ କରିଚାଲିଛି । କିଛିକ୍ଷଣପରେ ଗୋଟିଏ ଫୁଲରୁ ମଧୁ ଶୋଷି ଆର ଫୁଲଟିକୁ ଉଡ଼ିଯାଉଥାଏ । କିଆ ଅତି ସନ୍ତର୍ପଣରେ ପାଦ ଛପି ଛପି ତା'ରି ପଛରେ ଗୋଡ଼ାଇ ଚାଲିଥାଏ । ଧୀରେ ଧୀରେ ହାତର ବୁଢ଼ାଆଙ୍ଗୁଠି ଏବଂ ତାର ପାଖ ଆଙ୍ଗୁଠିକୁ ବଢ଼ାଇ ପ୍ରଜାପତିକୁ ସତର୍କତାସହ ଧରିବାକୁ ଚେଷ୍ଟା କଲାବେଳକୁ ବିପଦର ଟେର ପାଇ ପ୍ରଜାପତିଟି ଡେଣା ମେଲାଇ ଦୂରକୁ ଦୂରକୁ ଉଡ଼ିଯାଉଥାଏ ।

ସେହି ସୁନ୍ଦର ହଳଦିଆ ଏବଂ କଳା ରଙ୍ଗର ଛିଟିଛିଟିକିଆ ପ୍ରଜାପତିଟି ଡେଣା ମେଲାଇ ଉଡ଼ିଯାଉଛି ଦୂରକୁ ଦୂରକୁ ... ବହୁ ଦୂରକୁ ।

କିଆ ମୁହଁ ଆମ୍ବିଲା କରି ଧରିନପାରି ହତାଶ ହୋଇ ପ୍ରଜାପତିଟିକୁ ଅନାଇ ରହିଥାଏ । ପାଖରେ ବସିଲେ ପୁଣି ତା' ପାଖକୁ ଯାଇ ଧରିବାକୁ ଚେଷ୍ଟାକରିବା ଆଶାନେଇ ମନ ତାର ଛଟପଟ ହେଉଥାଏ । ପ୍ରଜାପତି ବିପଦର ଆଶଙ୍କା କରି ଦୂରକୁ ଦୂରକୁ ଉଡ଼ିଗଲେ ହତାଶ ହୋଇ ତାର ଛୋଟିଆ କଅଁଳିଆ ମୁହଁ ଗମ୍ଭୀର ହୋଇଯାଉଥାଏ । କ୍ଷଣିକପାଇଁ ମନ ତାର ହା-ହତାଶ ହୋଇଯାଏ; ସତେ ଯେପରି ଆଉ ଟିକିଏ ପରେ ସେ କାନ୍ଦିପକାଇବ !!

କିଆ ପ୍ରଜାପତି ପିଛା ଗୋଡ଼ାଇଥିବା ଦୃଶ୍ୟ ତାର ସାଙ୍ଗସାଥୀମାନେ ଦେଖିନେଇଥାନ୍ତି । ପ୍ରଜାପତିକୁ ଧରିନପାରି ହତାଶ ହୋଇ ଛିଡ଼ାହୋଇଥିବା କିଆକୁ ଦେଖି ତାର ସାଥୀମାନେ ପାଟିକରି ଡାକନ୍ଦିଅନ୍ତି– "ଆଲୋ କିଆ, ତୋ ପ୍ରଜାପତିଧରା ହୋଇଗଲା । ଆ, ଏଥର ଖେଳିବା । ଆଲୋ, ଏତେ ମନୋଦୁଃଖ କରୁଛୁ କିଆଁ ?"

କିଆ ସେମାନଙ୍କ ଡାକ ଶୁଣି ପ୍ରକୃତିସ୍ଥ ହୋଇ ତାର ସାଙ୍ଗମାନଙ୍କ ଗହଣକୁ ଦୌଡ଼ି ଦୌଡ଼ି ଫେରିଆସିଲା ସେହି ଗଛମୂଳକୁ। ତାର ସାଙ୍ଗମାନଙ୍କୁ ଦେଖି ତାର ମଳିନ ଶୁଖିଲା ମୁହଁରେ ହସର ସରୁ ରେଖା ଉକୁଟିଉଠିଲା।

ଆମ୍ବଗଛ ମୂଳ; ସଭିଙ୍କ ବସିବାପାଇଁ ଆଶ୍ରୟସ୍ଥଳୀ। ବଣ ଭିତରେ ଘୂରି ଘୂରି ଆସି ସଭିଏଁ ଏଇଠି ଟିକିଏ ବିଶ୍ରାମ ନେଇ ପୁଣି ଯେ ଯାହାର କାମରେ ଲାଗିଯାଆନ୍ତି।

କିଆର ଆଗମନରେ ନବୀନର ମୁହଁରେ ହସ ଚହଟିଗଲା। କିଆ ତାର ଅତି ନିକଟକୁ ଚାଲିଆସି ପଥର ଉପରେ ଥକାମାରି ବସିପଡ଼ିଲା। ପ୍ରଜାପତି ପଛରେ ଗୋଡ଼ାଇ ଗୋଡ଼ାଇ ତା' ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଫୁଟିଥାଏ; ମନ ଉଦାସ ହୋଇଯାଇଥାଏ।

ନବୀନ ତାକୁ ଦେଖିନେଇ କହିଲା, ''ଦୌଡ଼ି ଦୌଡ଼ି ଥକିଯାଇଛୁ। ଟିକିଏ ବସିପଡ଼। ଆରାମ ଲାଗିବ।''

କିଆ ତାର ଅତି ନିକଟକୁ ଚାଲିଆସି ପଥର ଉପରେ ବସିପଡ଼ି ନବୀନକୁ ଦେଖିନେଇ କହିଲା, ''ତୁ ତ ବହୁତ ଆଗରୁ ଆସିଯାଇଛୁ ?''

—''ତୁ ଆସିବା ଅଳ୍ପ ସମୟ ଆଗରୁ ମୁଁ ଆସି ପ୍ରଜାପତିକୁ ତୁ ଗୋଡ଼ାଉଥିବା ଦେଖୁଥିଲି।'' ନବୀନ ଏତକ କହି କିଆ ମୁହଁକୁ ଅନାଇରହିଲା।

ଏତେବେଳକୁ ତାର ସମବୟସୀ ସାଥୀ ମାଳତୀ ଆସି ପହଞ୍ଚିଗଲା।

ମାଳତୀ ତା'ର ଅତି ନିକଟକୁ ଚାଲିଆସି କହିଲା, ''ଆଲୋ, ତୁ ଏତେବେଳଯାଏଁ ଆସି ପହଞ୍ଚିନଥିଲୁ ? ମୁଁ ତୋତେ କେତେ ଖୋଜୁଛି ଖେଳିବା ବୋଲି।''

ମାଳତୀ ପାଖକୁ ଆସି ତା' ହାତ ଟାଣିଲା ଖେଳିବାପାଇଁ। କ୍ଷଣିକ ପୂର୍ବରୁ ମନ ତାର ଉଦାସ ହୋଇଯାଇଥିଲା। ସାଙ୍ଗସାଥୀଙ୍କ ଖେଳିବା କଥା ଶୁଣି ମନ ତାର ଉଲ୍ଲସିତ ହୋଇଉଠିଲା। ମୁହଁରେ ଚହଟିଆସିଲା ଆନନ୍ଦର ଲହରୀ। କିଆ ତାର ବସିବା ସ୍ଥାନରୁ ଉଠିପଡ଼ି ଖିଲିଖିଲି ହସିଉଠିଲା। ତାର ହସଟିକକ ବନଭୂମିକୁ ଚହଲାଇଦେଲା।

କିଆ ହସି ହସି କହିଲା, ''ଆଲୋ, ତୁ ମତେ ଖୋଜିଲେ ପାଇବୁ କେଉଁଠି ? ମୁଁ ତ ଆସି ପହଞ୍ଚିଛି ଏଇଠି।''

—''ହଁ ଲୋ, ସତେ ମୁଁ ତୋତେ ଖୋଜିଲେ ପାଇବି କେଉଁଠି ? ଖୋଜିଲା ଜାଗାରେ ଖୋଜିଲେ ସିନା ପାଇଥାନ୍ତି। ଏଣେତେଣେ ଖୋଜିଲେ ପାଇଥାନ୍ତି କେଉଁଠି ?''

ଏତକ କହି ମାଳତୀ ଦୁଷ୍ଟାମି ହସ ହସି ଥରେ ନବୀନକୁ ଥରେ କିଆକୁ

ଦେଖି ହସିଦେଲା । ତା'ର ହସରେ ସ୍ଥାନଟି କମ୍ପିଉଠିଲା ।

ନବୀନ୍ ମାଳତୀର ଥଟ୍ଟାର ମର୍ମ ବୁଝି ନ ପାରିଲାଭଳି କହିଲା, ''କିଆ ତ ପ୍ରଜାପତି ପଛରେ ଗୋଡ଼ାଇ ଗୋଡ଼ାଇ ଏଇନେ ଆସୁଛି ।''

ମାଳତୀ ତା' କଥା ଶୁଣି ମୁହଁରେ ହସ ଖେଳାଇ କହିଲା, ''ଆଲୋ କିଆ, ତୁ ତ ଗୋଟିଏ ପ୍ରଜାପତି ଭଳି ହୋଇଛୁ– ତୋ' ପଛରେ କେତେ ଗୋଡ଼ାଇବେ– ତୁ କ'ଣ ପ୍ରଜାପତି ପଛରେ ଗୋଡ଼ାଇଛୁ ।'' –ଏତକ କହି ଖିଲି-ଖିଲି ହସି ପଳାଇଲା ।

ତା' କଥା, ତା' ହସ ଶୁଣି କିଆ ତାକୁ ହାତରେ ଠେଲିଦେଇ କହିଲା, ''ଆଲୋ ଅଲାଜୁକି, ତୋତେ କ'ଣ ଲାଜ ସରମ ନାହିଁ କି ଲୋ ? କ'ଣ ଯେ କହିଯାଉଛୁ ମୁଁ କିଛି ବୁଝିପାରୁନାହିଁ ?''

–''ହଁ ଲୋ ହଁ, ଏଇନେ କିଛି ବୁଝିପାରିବୁନାହିଁ; ଡେଣା ଲାଗିଲେ ସବୁ ବୁଝିଯିବୁ ଲୋ । ପ୍ରଜାପତି ଭଳି ତୁ ମଧ୍ୟ ଉଡ଼ିବୁଲିବୁ ।'' –ଏହାକହି ମାଳତୀ ତାର ଗାଲରେ ହାତମାରି ଏକ ଦୁଷ୍ଟାମି ହସ ହସିଲା ।

–''ଆଲୋ, ଖେଳିବାପାଇଁ ମୋତେ ଡାକିଲୁ ପରା । ଖେଳିବା କଥା ଛାଡ଼ିଦେଇ କେତେ କଥା କହିଯାଉଛୁ ? ଆ ଖେଳିବା ।'' –ଏହାକହି କିଆ ତାର ହାତ ଧରି ଟାଣିନେଇଗଲା ।

–''କି ଖେଳ ଖେଳିବା ?''

–''ବହୁଚୋରି ।'' ମାଳତୀ କହିଲା ।

–''ନା । ଆଜି ପୁଚି ଖେଳିବା ।'' କିଆ ମୁହଁ ହଲାଇ କହି ହସିଦେଲା ।

–''ହେଲା ତେବେ, ତୋ'ରି କଥା ରହିଲା ।'' –କହି ମାଳତୀ ତା'ର ପିନ୍ଧିଥିବା ଲୁଗାକୁ ଅନ୍ଟଟିକେ ଅଣ୍ଟାରେ ଭଲକରି ଭିଡ଼ିଦେଲା; ଖେଳିବାପାଇଁ ପ୍ରସ୍ତୁତ ହୋଇଗଲା ।

ନବୀନ ଗଛମୂଳରେ ବସି ଏମାନଙ୍କ କଥାବାର୍ତ୍ତା ଶୁଣି ଆନନ୍ଦ ଉପଭୋଗ କରି ମୁରୁକି ହସି ପୁଚି ଖେଳ ଦେଖିବାପାଇଁ ଅପେକ୍ଷାକରି ରହିଥାଏ । କିଆ ମଧ୍ୟ ତା'ର ଲୁଗାକୁ ଆଣ୍ଠୁ ପର୍ଯ୍ୟନ୍ତ ଟେକିଦେଇ, ଅଣ୍ଟାରେ ଲୁଗାକାନିକୁ ଭଲଭାବରେ ଭିଡ଼ିଦେଇ ପ୍ରସ୍ତୁତ ହୋଇଗଲା । ସେମାନଙ୍କ ଖେଳ ଆରମ୍ଭ ହୋଇଗଲା । ଖେଳ ସହିତ ଦୁଇସାଥୀଙ୍କ କଣ୍ଠରୁ ମଧୁର ସଙ୍ଗୀତଲହରୀ ଛୁଟିଚାଲିଥାଏ ।

''ଠିଆ ପୁଚି ନାରଙ୍ଗ . . . ଗୋଡ଼ ଦୁଇଟି ସାରଙ୍ଗ
ସାରଙ୍ଗ ବାଡ଼ିକୁ ଯାଇଥିଲି . . . ସାରଙ୍ଗ ଅଧେ ଆଣିଥିଲି
ଅଧେ ସାରଙ୍ଗ କଂଚା . . . ଅଧେ ସାରଙ୍ଗ ପଚା
ମୋ ଭଉଣୀ ରାଣୀ ତ . . . ତୋ ଭାଇ ତ ରାଜା ।''

ନବୀନର ଆଖି ଆଗରେ ସମବୟସୀ ଦୁଇଟି ଝିଅ ପୁଚିଖେଳରେ ମାତିଯାଇଥାଆନ୍ତି। ଗୀତର ଲହରୀସହ ସେମାନଙ୍କ ମୁହଁର ମଧୁର ହସ ନବୀନର ମନରେ ପୁଲକ ସୃଷ୍ଟି କରୁଥାଏ। ସରଳ ନିଷ୍କପଟ ଛନ୍ଦୋମୟ ସେମାନଙ୍କ ହାସ-ପରିହାସ। ଧୀରେ ଧୀରେ ସେମାନେ ଖେଳରେ ମଜ୍ଜିଯାଉଥାନ୍ତି, କିଏ ଜିଣିବ, କିଏ ହାରିବ। ସେମାନଙ୍କ ଭିତରେ ଏକପ୍ରକାର ପ୍ରତିଦ୍ୱନ୍ଦ୍ୱିତା ହେଲାଭଳି ମନେହେଉଥାଏ। କିଏ କାହାକୁ ଊଣା ନୁହନ୍ତି। କିଏ ସହଜରେ ମଧ୍ୟ ଜଣକୁ ହାରିଯିବାପାଇଁ ପ୍ରସ୍ତୁତ ନୁହନ୍ତି। ସେମାନଙ୍କ ପାଦ ଦୁଇଟି ମାଟିରେ ଘସି ହେଉଥାଏ ଆଗପଛ ହୋଇ। ଗୋଡ଼ ଦୁଇଟି ଧୀରେ ଧୀରେ ଅବଶ ହୋଇ ଆସୁଥାଏ।

ନବୀନ ଏମାନଙ୍କ ପୁଚିଖେଳ ଦେଖି ଆମ୍ବଗଛମୂଳେ ବସି ଆନନ୍ଦରେ କୁରୁଳିଉଠୁଥାଏ। ସେମାନଙ୍କୁ ଉତ୍ସାହିତ କରିବାପାଇଁ କହୁଥାଏ, ‘‘ଦେଖିବା, ଆଜି କିଏ ଜିଣିବ କିଏ ହାରିବ। ଆଜି ସବୁ ଜଣାପଡ଼ିଯିବ।’’

ମଝିମଝିରେ ଏମିତି ନବୀନର କଥା ଶୁଣି ଦୁଇଝିଅଙ୍କ ମଧ୍ୟରେ ପ୍ରତିଯୋଗିତା ମନୋଭାବ ବଢ଼ିଯାଉଥାଏ। ନବୀନ ଆଗରେ କିଏ ସାନ ହେବାକୁ ଚାହୁଁ ନଥାଏ। ତା’ ଆଗରେ ନିଜର ଟେକ ବଜାୟ ରଖିବାପାଇଁ ଦୁହିଁଙ୍କ ଭିତରେ ଆପ୍ରାଣ ଉଦ୍ୟମ ଚାଲିଥାଏ। ଧୀରେ ଧୀରେ ସେମାନଙ୍କ ପାଦ ଅବଶ ହୋଇଆସୁଥାଏ। ମୁହଁରୁ ଝାଳ ଗମ୍‌ଗମ୍ ବୋହିପଡୁଥାଏ।

କ୍ରମେ ମାଳତୀର ପାଦ ଅବଶ ହୋଇପଡ଼ିଲା। ଧୀରେ ଧୀରେ ତାର ଗତି ବନ୍ଦହୋଇଗଲା। ନୀରବ ନିଶ୍ଚଳ ହୋଇ ଛିଡ଼ାହୋଇପଡ଼ିଲା ଏବଂ କ୍ଳାନ୍ତ ହୋଇ ତଳେ ବସିପଡ଼ିଲା। ମୁହଁର ସରସତାଟିକକ ଲିଭିଗଲା।

ଆଉ କିଛିକ୍ଷଣ ଖେଳିଲାପରେ କିଆ ମୁହଁରେ ହସ ଚହଟି ଉଠିଲା। ଆନନ୍ଦରେ ପାଟି କରି ଉଠିଲା, ‘‘ମୁଁ ଜିତିଲି, ମାଳତୀ ହାରିଲା।’’

ମନ ତାର ଆନନ୍ଦରେ ବିଭୋର ହୋଇଉଠିଲା। ନିଃଶ୍ୱାସ ଖରତର ବୋହିଚାଲିଥାଏ। ଛାତି ତାର ପଡୁଥାଏ ଉଠୁଥାଏ। ମାଳତୀ ପାଖକୁ ଚାଲିଯାଇ କହିଲା – ‘‘ହେଲା ଏଥର। ମୋତେ ଆଉ ତୁ କେବେ ବଡ଼ପଣ କରି କହିବୁନାହିଁ। ମୋତେ ବଳିଯିବୁ ବୋଲି ଭାବିଥିଲୁ – ଏଥର ଫଳ ପାଇଲୁ?’’ କିଆ ଆନନ୍ଦରେ ଆଗ୍ରହରେ ଏତକ କହି ତାକୁ ଚିଡ଼ାଇବାକୁ ଲାଗିଲା।

–‘‘ହଁ ଲୋ ହଁ, ଆଜି ସିନା ତୁ ଜିଣିଗଲୁ। କାଲିକୁ ଦେଖିବାନାହିଁ?’’ ହାରିଯାଇଥିଲେ ମଧ୍ୟ ମୁହଁରେ ଦମ୍ଭ ଫୁଟାଇ ମାଳତୀ କହିଲା, ‘‘ମୁଁ କାଲିକି ନଜିଣିବି ତ ମୋ’ ନାଁ . . .’’

କିଆ ଚଟ୍‌କିନା ତା’ ତୁଣ୍ଡରୁ କଥା ଛଡ଼ାଇନେଇ ଖତେଇହୋଇ କହିଲା, ‘‘ତୋ’ ନାଁ ମାଳତୀ . . . ଆଉ କ’ଣ କି?’’

ଦୁହେଁ ଧଇଁସଇଁ ହୋଇ ଆସି ପଥର ଚଟାଣ ଉପରେ ବସିପଡ଼ିଲେ। ନବୀନ କିଆକୁ ଚିଡ଼ାଇବାପାଇଁ କହିଲା, ''ଆଜି ସିନା ମାଳତୀ ହାରିଗଲା– କାଲିକି ମାଳତୀ ପୁଣି ଜିଣିବନାହିଁ କି? କାଲିକି ସବୁ ଜଣାପଡ଼ିଯିବ।''

କିଆ ଟିକିଏ ରାଗୀ; ରୋଷ ଆଖିରେ ତା' ମୁହଁକୁ ଚାହିଁ, ଧଇଁସଇଁ ହୋଇ କହିଲା– ''କାଲି କଥା କାଲିକି, ଆଜି କଥା ଆଜି। ଆଜି କ'ଣ ହେଲା, ତୋତେ ଦିଶିଲା ନାହିଁ କି?'' ଜିଭ ଦେଖାଇ ଖତେଇହେଲା। ରାଗ ତମତମ ହୋଇ କିଆ ଏତକ କହି ମାଳତୀକୁ ଭିଡ଼ି ଆଣିଲା, ''ଆଲୋ ଆ, ତେଣେ ଛେଳି କୁଆଡ଼େ ଗଲେ ଦେଖିଆସିବା।''

–ଏହାକହି ଦୁଇସାଥୀ କାନ୍ଧରେ ହାତ ରଖି, ଧରାଧରି ହୋଇ ଦୌଡ଼ି ଚାଲିଗଲେ ଛେଳି ଅଡ଼େଇବାପାଇଁ। କିଛିକ୍ଷଣ ପରେ ଛେଳି ଅଡ଼େଇ ଦୁହେଁ ଫେରିଆସିଲେ ପୁଣି ସେହି ଗଛମୂଳକୁ। ସେଇଠି ପୁଅ ପିଲାମାନଙ୍କ ଖେଳ ଚାଲିଥାଏ – ଡୁ-ଡୁ ଖେଳ।

ନବୀନ ଡୁ-ଡୁ ଖେଳରେ ଧୁରନ୍ଧର। ସମସ୍ତଙ୍କୁ ହରାଇ ଆନନ୍ଦରେ ନାଚିଉଠୁଥାଏ। ପାଖରେ ପଥର ଚଟାଣ ଉପରେ ବସି ପୁଅ ଝିଅମାନେ ପାଟିକରି ଖେଳାଳିମାନଙ୍କୁ ଉତ୍ସାହିତ କରୁଥାନ୍ତି। ଖେଳ ଜମିଯାଇଥାଏ। ହାରିବା ଜିତିବା ଭିତରେ ଏମିତି ସମୟ ଟିକକ ଗଡ଼ି ଗଡ଼ି ଯାଉଥାଏ। ସନ୍ଧ୍ୟା ହୋଇଆସିବା ପୂର୍ବରୁ ସମସ୍ତେ ଏକାଠିହୋଇ ଗାଈ, ଗୋରୁ, ଛେଳି, ମେଣ୍ଢା ଅଡ଼େଇ ଗାଁକୁ ଫେରିଆସିଥାନ୍ତି।

ଏଭଳି ବର୍ଷ ବର୍ଷ ହସ-ଖୁସିରେ ଡଙ୍ଗରରେ ଖେଳିବୁଲି ସେମାନେ ତାଙ୍କ ସମୟଟିକକ ଅତିବାହିତ କରିଦେଉଥାନ୍ତି।

ଡଙ୍ଗରରେ ଯେତେବେଳେ ବାଘ ମାଡିଉଠେ ସେତେବେଳେ ସମସ୍ତଙ୍କ ମନରେ ଭୟ ଖେଳିଯାଏ। ଡଙ୍ଗରକୁ କିଏ ଯିବାପାଇଁ ସାହସ କରନ୍ତିନାହିଁ। କେଉଁ ଅମାନିଆ ଗାଈ, ବାଛୁରୀ ପେଟବିକଳରେ ଡଙ୍ଗରର ଭିତରକୁ ପଶିଯାଏ, ସେ ପୁଣି ବାଘ ହାବୁଡ଼ରେ ପଡ଼ି ଆହାର ହୁଏ। ତା' ହାବୁଡ଼ରୁ ଖସିଆସିବା ଏତେ ସହଜ ନୁହେଁ। କେତେ ଲୋକଙ୍କ ଗାଈ, ବଳଦ ବାଘର ଆହାରର ଶିକାର ହୋଇ ଗୋଟି ଗୋଟି ଟଳିପଡୁଥାନ୍ତି। ବାଘ ତା' ପାଦର ମୁନିଆ ନଖକୁ ଗଳାଇଦେଇ ତଣ୍ଟିଚିପି ରକ୍ତ ପିଇଯାଏ। ଦିନତମାମ ବୁଦା ଉହାଡ଼ରେ ଲୁଚି ଛପି ବସିରହି ମଢ଼ର ମାଂସ ଖାଇ ପେଟ ଫୁଲାଇ ବୁଦାମୂଳେ ନିଘୋଡ଼ ନିଦରେ ଶୋଇଯାଇଥାଏ। ଥରେ ଗାଈଗୋରୁର ତତଲା ରକ୍ତ ପିଇଲେ ଆଉ ସେ ସହଜରେ ଛାଡ଼ିପାରେନାହିଁ।

ଏଇଭଳି ଗୋଟିଏ ପରେ ଗୋଟିଏ ଗାଈ, ବଳଦ ମାରିଚାଲିଥାଏ ସେ ବାଘ। ଗାଁର ଗୋଟିଏ ପରେ ଗୋଟିଏ ଗାଈଗୋରୁ ତା' ହାବୁଡ଼ରେ ପଡ଼ି

ମରିପଡ଼ିଲେ। ଧୀରେ ଧୀରେ ଲୋକେ ଉତ୍ତେଜିତ ହୋଇଉଠନ୍ତି। ଲୋକେ ନିଜ ଗାଈ, ବାଛୁରି ବାଘ ହାବୁଡ଼ରେ ପଡ଼ି ପ୍ରାଣ ହରାଉଥିବାର ଦେଖି ଗାଁରେ ବିଚାର ଚାଲେ ତାର ପ୍ରତିକାର କରିବାପାଇଁ। ଏମିତି नीରବ ରହିଲେ ଗାଁଟିଯାକ ଗାଈଗୋରୁଙ୍କୁ ବାଘ ମାରି ଖାଇଯିବ। ସେମାନେ ଗାଈ ବଳଦ ବିନା ବଂଚିବେ କିପରି ? ହଳ ନକଲେ ଜମି ଉଜୁଡ଼ା ପଡ଼ିବ। ଭୋକ-ଉପାସରେ ସେମାନେ ଟଳିପଡ଼ିବେ। ବଳଦଟିଏ ମଧ୍ୟ ଯୋଗାଡ଼ କରିବା କଷ୍ଟକର। ତା' ପାଇଁ ଟଙ୍କା ଦରକାର। ଗରିବ ଚାଷୀ; ତାର ଏତେ ସମ୍ବଳ ନାହିଁ। ପୁଣି ମହାଜନଦ୍ୱାରକୁ ଯାଇ ଋଣ କରିବାକୁ ପଡ଼ିବ।

ବିଚାର-ଆଲୋଚନା ପରେ ପୁଣି ଲୋକଙ୍କ ମଧ୍ୟରେ ସାହସ, ଦମ୍ଭ ଫେରିଆସେ। ଗାଁ ଲୋକେ ସାହସ ବାନ୍ଧି, ମେଟ୍ ହୋଇ, ହାତରେ ଟାଙ୍ଗି, ଟାଙ୍ଗିଆ, ବର୍ଚ୍ଛା, ଠେଙ୍ଗା ଧରି, ବିଭିନ୍ନ ବାଦ୍ୟ ବଜାଇ, ବିକଟାଳ ରେ-ରେକାର ଚିତ୍କାର କରି, ଦଳବଦ୍ଧ ହୋଇ ଜଙ୍ଗଲ ଭିତରକୁ ଧସେଇ ପଶି ବାଘକୁ ଆହ୍ୱାନ କରନ୍ତି।

ଗାଁର ଏତେ ଲୋକଙ୍କୁ ଏକାଠି ଦେଖି ଚତୁର ଚିତାବାଘ ଡିଆଁମାରି ଆଉ ଏକ ଜଙ୍ଗଲକୁ ପଳାଇଯାଏ। ବାଘ ଭୟ କିଛିଦିନପାଇଁ ପୁଣି ଦୂରେଇଯାଏ। ଲୋକେ ନୀତିଦିନିଆ ନିଜ ନିଜ ଗାଈ, ବଳଦ, ଛେଳି, ମେଣ୍ଢା ଧରି ପୁଣି ସେହି ଜଙ୍ଗଲକୁ ନେଇ ଚରାଇ ଆଣନ୍ତି। ସେମାନେ ଭୁଲିଯାଆନ୍ତି ବାଘମାତି ତାଙ୍କ ଗାଁର ଗାଈ ବଳଦକୁ ମାରି ଖାଇଯିବାକଥା।

ଏଭଳି ସମୟର ସ୍ରୋତରେ ସେମାନଙ୍କ ଜୀବନ ଧାରା ଗଡ଼ିଚାଲିଥାଏ। ହସ-ଦୁଃଖର ସଂସାରରେ ସେମାନେ ନିଜ ନିଜର ଜୀବନଯାତ୍ରାରେ ଆଗକୁ ଆଗକୁ ମାଡ଼ି ଚାଲିଥାନ୍ତି।

ସମୟର କଳସ୍ରୋତରେ ଲୋକଙ୍କ ମନରୁ ବାଘଭୟ କିଛିଦିନପାଇଁ ଦୂରେଇଯାଇଥିଲା। ମାତ୍ର ଏହା ସତ ବାଘ ନଥିଲେ ମଧ୍ୟ ବାଘର ଭୟ ଯାହା କି ଲୋକଙ୍କ ସମ୍ମୁଖରେ ଛାଡ଼ିଯାଇଥିଲା, ସେହି ଭୟଟିକକ ସେମାନଙ୍କ ମନ ଭିତରେ ଛପି ରହିଯାଇଥିଲା; ଏବେ ପର୍ଯ୍ୟନ୍ତ ମନରେ ଛପି ରହିଛି। ଆଜିକାଲି ସମୟେ ସମୟେ ହେଟାବାଘ ଗାଁର ଛେଳି-ମେଣ୍ଢାକୁ ମାରି ରକ୍ତ ପିଇ ତାକୁ କାଖରେ ଜାକି ବଣକୁ ପଳାଇଯାଏ। ଏଭଳି ଅନେକ ଦେଖିବା କଥା, ନ ଦେଖିବା କଥା, ଅନେକ ଜନରବ ଏବେ ମଧ୍ୟ ଲୋକଙ୍କ ମନରେ ଭୟଭୀତିଭାବ ଖେଳାଇ ରହିଛି। ବଣରେ ବାଘ ନଥିଲେ ମଧ୍ୟ ମଣିଷ ମନରେ ଅତୀତର ବହୁ ଘଟଣାର ଛାପ ବସା ବାନ୍ଧି ରହିଛି। ସେହି ମଣିଷ ମନର ଭୟ ଆଶଙ୍କା ଏବେ ମଧ୍ୟ ମନରେ ରହିଥିବାଯୋଗୁଁ ଜଙ୍ଗଲ ଭିତରକୁ ଗଲେ ନିଜ ଭିତରେ

କୁହାକୁହି ହୁଅନ୍ତି – ''ଜଙ୍ଗଲକୁ ନକହିବ ପଦା, ପୋଲିଶକୁ ନ କହିବ ଦଦା ।''

ଚାଷ ସମୟ ହେଲେ ଚାଷୀମାନେ କ୍ଷେତରେ ଲାଗିଯାଆନ୍ତି । ଚାଷୀମାନଙ୍କୁ ସାହାଯ୍ୟ କରିବାକୁ ମୂଲିଆମାନେ ମଧ୍ୟ ଦିନ-ମଜୁରିରେ ଉପାର୍ଜନ କରି ଚଳିଯାଆନ୍ତି । ସତେ ଯେପରି ଗାଁଟି ସାରା ମରଦ, ମାଇପେ ମାତିଯାଆନ୍ତି । ଚାଷ ହେଲା ସେମାନଙ୍କ ମୂଳ ଧନ୍ଦା । ଧାନଚାଷ, ପନିପରିବା ଚାଷ, ଫଳମୂଳ ଚାଷ – କିଏ କେତେ ପ୍ରକାର ଚାଷରେ ମାତିଯାଆନ୍ତି ।

(୨)

ଗୋବିନ୍ଦ ନିଶା-ବାଉଳାରେ ଟଳି ଟଳି ଘରକୁ ଫେରୁଛି । ରାତି ଆସି କେତେ ହେଲାଣି । ନିଶା ଘାରିଯାଇଛି । ଗୋଡ଼ ଦୁଇଟି ଠିକ୍ ପଡୁନାହିଁ । କେତେବେଳେ ନିଜକୁ ସମ୍ଭାଳି ନପାରି ଟଳେ କଚାଡ଼ିହୋଇ ପଡୁଛି; ପୁଣି ଉଠିପଡ଼ି ଆଗକୁ ପାଦ ବଢ଼ାଉଛି ।

ଘରେ ରେଖା ସ୍ୱାମୀର ଆସିବା ବାଟକୁ ଅନାଇ ରହିଥାଏ । ଆଖି ଦୁଇଟି ମାଡ଼ିପଡୁଥାଏ । ରାତି ବଢ଼ି ବଢ଼ି ଚାଲିଥାଏ । ଏମିତି ଢୁଳେଇ ଢୁଳେଇ କେତେବେଳେ ଆଖିପତା ପଡ଼ିଯାଉଥାଏ ।

ନବୀନ ବାପର ଆସିବା ବାଟକୁ ଆଉ ଅପେକ୍ଷା ନକରି ଭାତଗଣ୍ଡେ ଖାଇ ଅନ୍ୟ ଏକ କୋଠରିରେ ନିଘୋଡ଼ ନିଦରେ ଶୋଇଯାଇଛି । ଦିନ ତମାମ୍ ଖରାତରାରେ ବୁଲି ବୁଲି ଗାଈ, ଗୋରୁ ଅଡ଼େଇ ଅଡ଼େଇ ହାଲିଆ ହୋଇପଡ଼ିଥାଏ । ଭୋକିଲା ପେଟରେ ଗଣ୍ଡେ ଭାତ ପଡ଼ିଗଲେ ସବୁ ଶାନ୍ତ ହୋଇଯାଏ । ମା' ତାର ବିଛଣା ପାରିଦେଲେ ସେ ଆସି ଖଟରେ ଗଡ଼ିପଡ଼େ ନିଦ ଆପଣାଛାଏଁ ଚାଲିଆସିଥାଏ । ସେ ନିଘୋଡ଼ ନିଦରେ ଶୋଇଯାଇଛି । ମନରେ କୌଣସି ଚିନ୍ତା ଦକ ନାହିଁ । ଶାନ୍ତିରେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଇଛି ।

ଗୋବିନ୍ଦ ନିଶା-ବାଉଳାରେ କେତେ କ'ଣ ବକି ବକି ତା' ଘରକୁ ମୁହାଁଇଛି । ଗାଁରେ କାହାଠୁ କ'ଣ ଶୁଣିଛି, ମଦକୋଠିରେ ତା'ର ମଦୁଆ ସାଙ୍ଗମାନଙ୍କ ସହ ଉଟର ଉଟର ହୋଇଛି । ତାକୁ ରାହା ଧରିଲାଭଳି ରାହା ଧରି ବିଳବିଳେଇ ହେଉଛି । ପାଦ ଟଳି ଟଳି ଆଗକୁ ବଢ଼ିଚାଲିଛି । କେତେବେଳେ କ'ଣ ଭାବି ପୁଣି ପଛକୁ ଘୁଞ୍ଚିଆସୁଛି । ନିଶା-ବାଉଳାରେ ରାସ୍ତାକୁ ଅଣ୍ଡାଳି ରାସ୍ତାକଡ଼ରେ ଥିବା ପଥରକୁ ଦେଖି ଅନ୍ଦାଜ କରି ତାର ଘର ଭାବି ଅନ୍ୟଜଣଙ୍କ ଘରକୁ ପଶିଯାଇ ପାଟିକରୁଛି । ଘରଲୋକ ତା' ପାଟି ଶୁଣି ତାର ଢଙ୍ଗ ଆଗରୁ ଜାଣି, ବିରକ୍ତହୋଇ ତା' ଘରକୁ ବାଟ ବତାଇଦେଇଛନ୍ତି ।

—''ଏଁ, ଏ ମୋ' ଘର ନୁହେଁ? ମୋ' ଘର ଗଲା କୁଆଡ଼େ? ମୋ' ଘରକୁ କିଏ ନେଇଗଲା?''

ଘର ଲୋକ ପୁଣି ପାଟିକରି ତାକୁ ବାଟ ବତାଇଦିଅନ୍ତି— ''ହେଇ ପରା ତୁମ ଘର।''

—''ହଁ ଭାଇ ହଁ, ସତେ ଏଇନେ ଜାଣିଲି। ମୁଁ ଶଳା ମୋ' ଘରକୁ ବାଟ ଭୁଲିଯାଉଛି।'' —ଏତକ କହି ଗୋବିନ୍ଦ ପୁଣି ଟଳିଟଳି ତା' ଘରଆଡ଼କୁ ମୁହାଁଇଲା।

ଗୋବିନ୍ଦ ନିଶା-ଜୋରରେ ଦାଣ୍ଡରୁ ପାଟିକରି ଆସୁଛି— ''ଆବେ ରାଣ୍ଡ, ମଲୁ ନା ବଞ୍ଚିଛୁ! ଆଲୋ ରାଣ୍ଡ ରେଖା, ଦାଣ୍ଡକୁ ଆଲୁଅ ଦେଖା।''

ପାଟିରୁ ତାର ଫେଣ ବାହାରିପଡୁଥାଏ— ''ଆବେ, ତୋତେ କ'ଣ ଶୁଭୁଛି ନା ନାହିଁ?''

ଗୋବିନ୍ଦର ପାଟି ଶୁଣି ନିଦବାଉଳାରେ ରେଖା ଧଡ଼ପଡ଼ ହୋଇ ଆଖି ମଳିମଳି ଶୋଇବା ସ୍ଥାନରୁ ଉଠିପଡ଼ିଲା। କବାଟ କୋଣରୁ ଡିମିରି ଧରି ପବନରେ ଲିଭିନଯିବାପାଇଁ ଗୋଟିଏ ହାତରେ ଢାଙ୍କି ଦାଣ୍ଡକୁ ଆଲୁଅ ଦେଖାଇଦେଲା ଏବଂ କହିଲା— ''ଧୀରେ ଧୀରେ ଚାଲିଆସ, ଆଲୁଅ ଦେଖାଇ ଦେଉଛି।'' ଗୋବିନ୍ଦ ସେହି ଆଲୁଅ ଦେଖି ଟଳିଟଳି ଘର ଭିତରକୁ ଚାଲିଆସିଲା। ସତେ ଯେପରି ଦିଗହରା ନାବିକ ସମୁଦ୍ରକୂଳର ବତିଘର ଦେଖି ଦିଗ ନିର୍ଣ୍ଣୟ କରି ତାର ଲକ୍ଷ୍ୟସ୍ଥଳରେ ପହଞ୍ଚିଯାଇଥାଏ, ଠିକ୍ ସେଭଳି ଗୋବିନ୍ଦ ତାର ଘର ଠାବ କରି ଆସି ପହଞ୍ଚିଯାଇଛି।

ରାଗ ତମତମ ହୋଇ ପରସ୍ତେ ତା' ସ୍ତ୍ରୀ ଉପରେ ଗାଳିବର୍ଷିଗଲା— ''ମୋ' ଡାକରେ ଦାଣ୍ଡ କମ୍ପୁଚି, ଏଣେ ରାଣ୍ଡକୁ କିଛି ଶୁଭୁନି।''

ଡିମିରି ଆଲୁଅରେ ତାର ଶୁଖିଲା ମୁହଁକୁ ଅନାଇ ଆଖି ମିଟିମିଟି କରି ନିରେଖି ସେ ନିଶାବାଉଳାରେ କହିଚାଲିଛି— ''ଆବେ ରାଣ୍ଡ, ଆଉ କାହା ସଙ୍ଗେ ଭାବ ରଖି ତା'ରି କଥା ହେଜିହେଉଥିଲୁ କି?''

ରେଖା ସବୁକଥା ଶୁଣି, ମନରେ ରାଗ ନଧରି, ଟିକିଏ ଶାସନ କଲାଭଳି ସ୍ୱରରେ କହିଲା— ''ପୁଅ ତେଣେ ଶୋଇଛି। ଏମିତି କ'ଣ ବାଉଳା ହେଲାଭଳି ହେଉଛ? ଗୋଡ଼ହାତ ଧୋଇ ଆସ ଖାଇବ। ମୁଁ ତୁମରି ବାଟକୁ ଅନାଇ ରହିଥିଲି ପରା।''

ପୁଅ କଥା ଶୁଣି ଟିକିଏ ଦବିଯାଇ ସ୍ୱରକୁ କମାଇ ଗୋବିନ୍ଦ କହିଲା— ''ଆବେ, ମୋ ପାଇଁ ଆଜି କ'ଣ ଖାଇବାକୁ ରଖିଛୁ?''

ରେଖା ଦେଖିଲା ନିଶା ଜୋରରେ ଘାରିଯାଇଛି। ଆଖି ଲାଲ୍‌ଲାଲ୍ ଦିଶୁଛି। ଦେଶୀ ମଦର ଗନ୍ଧରେ ଘର ଫାଟିପଡୁଛି। ନାକ ତାର ବନ୍ଦହୋଇଗଲାଭଳି

ମନେହେଉଛି। ଗଣ୍ଡେ ନଖାଇଲେ ସେ ଆଉ ଶାନ୍ତିରେ ବସାଇ ଉଠାଇ ଦେବନାହିଁ। ମାଂସ ତରକାରି ନହେଲେ ତାକୁ ଭାତ ରୁଚିବନାହିଁ। ଘରେ ଏଣେ ଯାହାତାହା ଗଣ୍ଡେ ରାନ୍ଧି ତା' ପାଇଁ ରଖିଦେଇଛି।

ଗୋବିନ୍ଦ ନିଶା ବାଉଳାରେ ପାଟିକଲା— "ଆବେ, ତୋତେ ଶୁଭୁନାହିଁ କି? ମୋତେ ଶୀଘ୍ର ଖାଇବାକୁ ଦେ। ହଁ, ମାଂସ ରାନ୍ଧିଛୁ ନା ନାହିଁ...?"

—"ତମେ ହାତ ଗୋଡ଼ ଧୋଇଦେଲ, ହେଇଟି ପାଣି ଢାଳଟା ଥୋଇଦେଇଛି। ବାଲ୍‌ଟିରେ ପାଣି ରଖିଦେଇଛି। ମୁଁ ତମପାଇଁ ଭାତ ମାଂସ ବାଢ଼ିଦେଉଛି। ମାଂସ ରାନ୍ଧି ତୁମରି ବାଟକୁ ଜଗିରହିଥିଲି ପରା !"

ସ୍ତ୍ରୀଠୁ ଏତକ ଶୁଣି ଗୋବିନ୍ଦର ମନ ଖୁସ୍। ତା' ମୁହଁରେ ହସ ଚହଟିଆସିଲା। ମରଦ ସୁଆଗ ଦେଖାଇ କହିଲା— "ମୁଁ ଜାଣେ ପରା, ମୋ' ରାଣୀଟି ପରା, ମୋ' ମନ ଜାଣି ମୋ' ପାଇଁ ଭାତ, ମାଂସ ରାନ୍ଧି ନଖୁଆଇଲେ ତା' ମନ ପୂରିବନାହିଁ। ଆଲୋ, ତୁ ମୋ' ପେଟ ପୂରାଇଲେ ମୁଁ ତୋ' ମନ ପୂରାଇବି।" —ଏତକ କହି ଶରଧାରେ ତାକୁ ତା' ପାଖକୁ ଟାଣିଆଣିଲା।

ଲୁଗାକୁ ଟାଣିଦେବା ଫଳରେ ଦେହରୁ ଲୁଗା ଖସିଗଲା। ନିଜର ଅନାବୃତ ଶରୀରକୁ ଘୋଡ଼ାଇବାପାଇଁ ସେ ତା' ଲୁଗାକୁ ଭିଡ଼ିଧରିଲା। ନିଶାଗନ୍ଧରେ ରେଖାର ମୁହଁ ବିକୃତ ହୋଇଗଲା। ଭର୍ତ୍ସନା କଲାଭଳି କହିଲା— "ମୋତେ ଛାଡ଼... ଛି... ଦାଣ୍ଡ କବାଟ ଖୋଲାରହିଛି।"

ଲୋଭିଲା ଆଖିରେ ତାର ଅନାବୃତ ଶରୀରକୁ ଦେଖିନେଇ କହୁଛି— "ସେଠୁ କ'ଣ ହେଲା? ମୋ' ଘରେ ମୁଁ ମୋର ସ୍ତ୍ରୀକୁ ଗେହ୍ଲ କରୁଛି, ସେଥିରେ କାହାର କ'ଣ ଯାଉଛି? ଆରେ, ତୁ ଏମିତି କ'ଣ ଡରିଯାଉଛୁ? ମୁଁ କ'ଣ ତୋତେ ଗିଳି ଖାଇଦେବି?"

ରେଖା ଛଡ଼ାଇହୋଇ ଉଠି ସେଠୁ ଚାଲିଗଲା ଭାତ ବାଢ଼ିବାପାଇଁ— "ହଉ ଯା, ଯା। ଆଗ ମୋ' ପାଇଁ ଭାତ ମାଂସ ଆଣ।"

ଗୋବିନ୍ଦର ଆଖିପତା ପଡ଼ି ପଡ଼ି ଆସୁଥାଏ। ଥାଳିରେ ଭାତ, ଗିନାରେ ଆଳୁ ଝୋଳ ଆଣି ତା' ଆଗରେ ଥୋଇଦେଇ ରେଖା କହିଲା— "ହେଇଟି ଭାତ ଆଉ ମାଂସ ଆଣିଦେଲି, ଖାଇଦିଅ। ମୁଁ ତୁମପାଇଁ ଶେଯ ପାରିଦେଉଛି, ଯାଇ ଶୋଇପଡ଼ିବ।"

ଗୋବିନ୍ଦ ନିଶାବାଉଳାରେ ଭାତ ସହ ଆଳୁଝୋଳ ଗୋଳାଇ ପରମ ତୃପ୍ତିରେ ଖାଇବାକୁ ଲାଗିଲା। ସତେ ଯେପରି ମାଂସଝୋଳ ସହ ଭାତଗଣ୍ଡିକ ସରିଯାଇଛି। ପେଟେ ଖାଇ ହାତ ଧୋଇ ଖଟରେ ଯାଇ ଗଡ଼ିପଡ଼ିଲା। ସଙ୍ଗେ ସଙ୍ଗେ ନିଦରେ ଅଚେତ ହୋଇ ଶୋଇପଡ଼ିଲା।

ଡେକିଚିରେ ଗଣ୍ଡେ ଯାହା ଭାତ ବଳିଥିଲା ତାକୁ ଖାଇ, ପେଟେ ପାଣିପିଇ ରନ୍ଧା ବାସନ ସବୁ ଏକାଠି କରି ରଖିଦେଲା, ସକାଳେ ଧୋଇବ ବୋଲି। ଚୁଲିରେ ଗୋବରକନା ବୁଲାଇ ସଫାକରିଦେଇ ହାତଗୋଡ଼ ଧୋଇ ଆସି ମସିଣା ପକାଇ ତଳେ ଶୋଇପଡ଼ିଲା।

ରେଖା ମନରେ କେତେ ସ୍ୱପ୍ନ ଥିଲା— ତା'ରି କୋମଳ ହୃଦୟ ଭିତରେ ଛୋଟିଆ ଘର-ସଂସାର ନିଜର ବୋଲି ଗଢ଼ିତୋଳିବ। ତାର ସ୍ୱାମୀ ତାକୁ କେତେ ଶରଧାରେ ଆଦରକରି ଗେହ୍ଲା କରୁଥିବ। ହସ-ଖୁସିରେ ରାତି ପାହିଯାଉଥିବ। ତାର ମନ ହୃଦୟକୁ ଜୟ କରିବ। ସୁଖରେ ଦିନ-ରାତି ବିତିଯାଉଥିବ। ମାତ୍ର ହେଲା କ'ଣ— ଆଜି ସେ ଭାବିପାରୁନାହିଁ। ସ୍ୱାମୀର ସଂସାର ପାଇଁ ସେ ନିଜକୁ ସମର୍ପି ଦେଇଛି। ତାର ଶଂଖା ସିନ୍ଦୂରବିନ୍ଦୁ ପାଇଁ ସେ ସବୁକୁ ହସି ହସି ସହିଯାଉଛି। ତଥାପି ଦହଗଞ୍ଜ ମଧ୍ୟରେ ସ୍ୱାମୀର ଉଷ୍ମ ଉତ୍ତାପ ନାରୀପାଇଁ ଯାହା କାମ୍ୟ, ତାହା ସେ ପାଇଛି। ସେତକ ହୋଇନଥିଲେ ମନ ଆଜି ହା-ହତାଶ ହୋଇ ଜୀବନ ତୁଚ୍ଛ ହୋଇପଡ଼ନ୍ତା। ନାରୀର ଯାହା କାମ୍ୟ, ସେତକ ସେ ପାଇଛି। ତାର ପ୍ରତୀକ ସ୍ୱରୂପ ତାର ଶିଶୁ ସନ୍ତାନର କୁଆଁ-କୁଆଁ ଡାକରେ ମନ ତାର ଭରିଯାଇଛି।

ସେହି ଶିଶୁ ସନ୍ତାନ ବଡ଼ହୋଇଗଲା ପରେ ତା'ର ମା' ଡାକ ତା' ମନରେ କେତେ ଆଶା ବିଶ୍ୱାସ ଜନ୍ମାଇଛି। ତା'ର ପ୍ରଥମ ମା' ଡାକ ତା' ମନରେ ପୁଲକ ସୃଷ୍ଟି କରିଛି। ସେ ଆତ୍ମବିଭୋର ହୋଇଯାଇଛି। ଆଜି ଏତେବଡ଼ ପୁଅ ନବୀନ ତା' ଆଖି ଆଗରେ ଝଲସି ଉଠୁଛି। ସେତକ ତା' ମନରେ ଭରିଦେଇଛି ସାନ୍ତ୍ୱନା।

କେତେ ଭାବି ଚିନ୍ତି, କେତେ କଳ୍ପନା ଭିତରେ ମା'ଘରୁ ଶାଶୁଘରକୁ ବୋହୂଟିଏ ହୋଇ ଆସିଥିଲା। ଶାଶୁ ଶ୍ୱଶୁର କେତେ ଶରଧା, କେତେ ଆଦର କରୁଥିଲେ। ମା'-ବାପାଙ୍କୁ ଛାଡ଼ି ଶାଶୁଘରକୁ ଆସିଲାବେଳେ ମନରେ ଭୟ ସଂଚରିଯାଇଥିଲା। ମାତ୍ର ତାର ଶାଶୁ ଶ୍ୱଶୁରଙ୍କ ସ୍ନେହ ମମତା ବଳରେ ମା'ଘରକଥା ଆଉ ସେତେ ମନେପଡ଼ିଲାନାହିଁ; ଧୀରେ ଧୀରେ ସବୁ ଭୁଲି ମନ ଏଠି ଲାଖିଗଲା। ଦିନତମାମ ସେମାନଙ୍କ ଗହଣରେ ହସଖୁସିରେ ସମୟଟିକକ ବିତିଯାଉଥିଲା।

ବୁଢ଼ା ଶାଶୁ ଶ୍ୱଶୁର ଗୋଟିଏ ଗୋଟିଏ ଆରପାରିକୁ ଚାଲିଗଲେଣି। କାହାର ଆକଟ ନମାନି ସଙ୍ଗଦୋଷରେ ସ୍ୱାମୀ ତାର ମାତାଲ। ବାପ ମା'ର ଗେହ୍ଲା ଝିଅ, ଆଦରର ଝିଅ ଆଜି ମାତାଲ୍ ସ୍ୱାମୀର ଅବୁଝା ମନକୁ ବୁଝାଇ ନପାରିଲେ ଦିନେ ଦିନେ ମାଡ଼ ଖାଇ ପିଠିରେ ନୋଳାପଡ଼ିଯାଏ। ଲହୁ-ଲୁହାଣ ହୋଇ ଆଖି ଛଳଛଳ କରି ମୁହଁ ମାଡ଼ି ପଡ଼ିରହେ; ସବୁ ସହିଯାଏ କେବଳ ସେହି

ପୁଅମୁହଁକୁ ଚାହିଁ।

ସ୍ୱାମୀର ସଂସାରପାଇଁ ସେ ନିଜକୁ ସମର୍ପି ଦେଇଛି ଯେତେବେଳେ, ଏ. କଷ୍ଟ କେବଳ କ୍ଷଣିକମାତ୍ର। ପୁଅ ବଡ଼ହୋଇଗଲେ, ସବୁକଥା ବୁଝିଗଲେ ସବୁ ·ଠିକ୍ ହୋଇଯିବ। ଗାଳିଗଞ୍ଜଣାର ଅନ୍ତ ହେବ ସେତେବେଳେ। ତାର ଉଦାସ ମୁହଁରେ ହସ ଚହଟିଆସେ। ବିଜୁଳିର କ୍ଷୀଣ ଆଲୁଅରେ ଘନ ଅନ୍ଧକାର ଚହଟିଗଲାଭଳି, ଉଦାସ ମଳିନ ମୁହଁରେ ତାର ଆଶା ସଂଚରିଆସେ। ମଣିଷ ଆଶାରେହିଁ ବଂଚିରହିଛି; ଏଭଳି ବଂଚିରହିଥିବ ଯୁଗଯୁଗ ଧରି। ଏମିତି ଭାବି ଭାବି ରେଖା କେତେବେଳେ ନିଦରେ ଶୋଇପଡ଼ିଲା ଜାଣିପାରିଲାନାହିଁ।

ଗୋବିନ୍ଦର ନିଦ ସଅଳ ଭାଙ୍ଗିଗଲା। ଆଖି ମଳିମଳି ଉଠି ଚାରିଆଡ଼କୁ ଅନାଇଲା। ଅନ୍ଧାର ଟିକିଏ ଅଛି; ଫର୍ଚ୍ଚା ହୋଇନଥାଏ। ପୂର୍ବ ଆକାଶରେ ସିନ୍ଦୂରା ଫାଟିବାକୁ ରଙ୍ଗବୋଳା ଆରମ୍ଭ ହୋଇଯାଇଥାଏ। ଗଛଡାଳରୁ ଚଢ଼େଇଙ୍କ କିଚ଼ିରି-ମିଚ଼ିରି ଶବ୍ଦ ଆରମ୍ଭ ହୋଇଯାଇଥାଏ।

ଗୋବିନ୍ଦ ଥରେ ଚାରିଆଡ଼କୁ ଆଖି ବୁଲାଇଆଣିଲା। ତା'ର ଦେହରେ ପୀଡ଼ା ଅନୁଭବ କଲାଭଳି ମନେହେଲା। ତା'ରି ଶୋଇବା ବାଟ ପାଖରେ ତଳେ ମସିଣାଟିଏ ପକାଇ ତାର ସ୍ତ୍ରୀ ରେଖା ତା'ରି ପାଖରେ ଶୋଇଯାଇଛି। ରାତିଟା ତା' ପାଖରେ ସେ ଶୋଇପଡ଼ିଛି ଅଥଚ୍ ସେ କିଛି ଜାଣିପାରିଲାନାହିଁ। ତାକୁ ସେ ନିରେଖେଇ ଦେଖିଲା। ସତେ ଯେପରି ଅନେକ ଦିନ ହେଲା ତାକୁ ସେ ଦେଖିନଥିଲାଭଳି ମନେହେଲା।

ରେଖାର ଆଖିରୁ ଲୁହ ଗଡ଼ିଆସି ଗାଲରେ ଲାଗି ଶୁଖିଯାଇଛି। ନିଘୋଡ଼ ନିଦରେ ସେ ଶୋଇପଡ଼ିଛି। ମନର ହସଟିକକ ଲିଭିଯାଇଛି। ଶୁଖିଲା ମୁହଁ। ରାତିରେ ଖାଇଛି କି ନାହିଁ କେଜାଣି? ଭାତ ତା' ପାଇଁ ଥିଲା କି ନାହିଁ, ତା' ବି ତାକୁ ଜଣାନାହିଁ। ସେ ତ ଘରର ଭଲମନ୍ଦ କିଛି ବୁଝେନାହିଁ। ନିଶା ଖାଇ ମାତାଲ ହୋଇ ରାତିଅଧରେ ଘରକୁ ଫେରୁଛି; ଘରର ଭଲମନ୍ଦ କ'ଣ, ସେ ଜାଣିଲାନାହିଁ। ଅନେକ ଦିନ ହେବ ପୁଅମୁହଁକୁ ମଧ ଭଲକରି ଦେଖିନାହିଁ। ଗୋଟିଏ ବୋଲି ପୁଅ। ତାକୁ ପାଠ ଦି'ଅକ୍ଷର ପଢ଼ାଇବ ବୋଲି ଆଶା ବାନ୍ଧିଥିଲା। ମାତ୍ର ଗାଁ ସ୍କୁଲରେ ପାଠ ତାର ସରିଗଲା। ଆଗକୁ ପାଠ ପଢ଼ିବ ବୋଲି ଗଲା; ମାତ୍ର ଅଭାବରେ ତା' ମଧ ହେଲାନାହିଁ। ପାଠ ପଢ଼ି ଚାକିରି କରିବ। ଘରକୁ ମୁଠା ମୁଠା ଟଙ୍କା ଆସିବ। ଘର ତାର ହସିଉଠିବ। ସବୁ ଆଜି ସାତ-ସପନ ଭଳି ମନେହେଉଛି।

ତା'ର ବାପ ମା' ଔଷଧଟିକିଏ ନ ପାଇ ଗୋଟି ଗୋଟି ଟଳିପଡ଼ିଲେ। ମଫସଲ ଗାଁରେ ସେତକ ମଧ ଯୁଟାଇବା ସମ୍ଭବ ହେଲାନାହିଁ; ଯୁଟିଲେ ମଧ

କାମକୁ ଲାଗିଲାନାହିଁ। ରୋଗ ନିଦାନ କଲାବେଳକୁ ସବୁ ଶେଷ। ଗାଁ ବୈଦ୍ୟ ହାତରେ ଔଷଧଟିକକ ଯୁଟାଇ ତୁଣ୍ଡରେ ଦେଇପାରିଲା। ବଡ଼ ଡାକ୍ତର ପାଖକୁ ନେବାପାଇଁ ତା' ପାଖରେ ସମ୍ଭଳ ନାହିଁ। ହାତରେ ପଇସା ନଥିଲେ ମଣିଷକୁ କେତେ ହିନସ୍ତା ହେବାକୁ ପଡ଼େ। ପୁରୁଣା କଥାସବୁ ଗୋଟି ଗୋଟି ଆଜି ତା'ର ମନେପଡ଼ିଯାଉଛି।

କେତେ ଦିନର କେତେ ପୁରୁଣା କଥା; ତଥାପି ତାକୁ କାଲିଭଳି ମନେହେଉଛି। ଆଜି କେବଳ ମନରେ ଭାଳି ଘାଣ୍ଟି ଚକଟି ହେଲାଭଳି ଲାଗୁଛି। ଅତୀତର ସ୍ମୃତି ସତେ କେତେ ମଧୁର, କେତେ ମନମତାଣିଆ। ତାର ବାପ ମା'ର ମୁହଁ ଆଜି ତା' ଆଖିଆଗରେ ଝଲସିପଡୁଛି।

ସେ ଭାବବିହ୍ୱଳ ହୋଇପଡ଼ିଲା। ବ୍ୟାକୁଳ ହୋଇ ଶୋଇବା ଖଟରୁ ଉଠି ତାର ପୁଅ କୋଠରିକୁ ଚାଲିଗଲା। ଦେହ ମୁଣ୍ଡ ପରଶରେ ଥରିଉଠିଲା। ପାଦ ସମ୍ଭାଳି ପୁଅକୁ କିଛିକ୍ଷଣ ଦ୍ୱାରମୁହଁରେ ରହି ଚାହିଁରହିଲା। ଧୀରେ ଧୀରେ ତା'ର ଅତି ନିକଟକୁ ଚାଲିଯାଇ କିଛିକ୍ଷଣ ତାକୁ ଅନାଇ ତା'ରି ଖଟରେ ବସିପଡ଼ି ପୁଅ ମୁଣ୍ଡରେ ହାତ ବୁଲାଇଆଣିଲା।

ନବୀନର ସେତେବେଳକୁ ଉଠିବାବେଳ ହୋଇଯାଇଥାଏ। ନିଦ ଭାଙ୍ଗି ଆସୁଥାଏ। ହଠାତ୍ କାହାର ହାତ ପରଶ ତା'ର ମୁଣ୍ଡରେ ଲାଗିଯିବାରୁ ସେ ଚମକିପଡ଼ିଲା। ଆଖି ମଳିମଳି ଦେଖିଲା, ବାପ ତାର ଖଟରେ ବସି ତାକୁ ଅନାଇରହିଛି। ସେ ଆଶ୍ଚର୍ଯ୍ୟ ଚକିତ ହୋଇ ତାର ବାପର ମୁହଁକୁ ଅନାଇରହିଲା। ଏ କେଇ ବର୍ଷ ଭିତରେ ବାପ ତାକୁ କେବେ ଗେହ୍ଲା କରିବା, ଦୁଇପଦ କଥା ହେବା ସେ କେବେ ଦେଖିନି କି ଜାଣିନି। ଆଜି ହଠାତ୍ ତା' ମୁଣ୍ଡର ବାଳକୁ ଶ୍ରଦ୍ଧାରେ ସାଉଁଳି, ମୁଣ୍ଡ ଆଉଁସି ତାକୁ ଏଭଳି ଅନେଇବା ଦେଖି ସେ ଖଟରୁ ଉଠିପଡ଼ି ଛିଡ଼ାହୋଇଗଲା। ବାପର ଏ ହାବଭାବ ତାକୁ କେମିତି ନୂଆ ନୂଆ ଲାଗିଲା।

ସେ ତ କେବେ ଏତେ ସକାଳୁ ଉଠିବା ମଣିଷ ନୁହେଁ; ଶୋଇରହିଥିବ ବେଳ ଦି'ଘଡ଼ି ପର୍ଯ୍ୟନ୍ତ। ବାପ ତାର ଆଜି ଏତେ ସକାଳୁ କାହିଁକି ଉଠିପଡ଼ିଲା ?

— "ବାପା, ତୁମ ଦେହ ଭଲ ଅଛି ତ ?"

ଆଶ୍ଚର୍ଯ୍ୟ ହୋଇ ନବୀନ ତାର ବାପର ମୁହଁକୁ ଅନାଇଲା। ତା'ରି କଥାପଦକରେ ଗୋବିନ୍ଦର ମୁହଁରେ ହସ ଚହଟିଆସିଲା; ମାତ୍ର ଅନ୍ତରରେ କୋହ ଜାତ ହେଲା। ପୁଅ ତା'ର କେତେ ଶରଧାରେ ଭଲମନ୍ଦ କଥା ପଚାରୁଛି; ତା'ରି ଦେହପା' କଥା ବୁଝୁଛି— ଅଥଚ ମୁଁ ଚଣ୍ଡାଳ ପୁଅକୁ ଭଲରେ କେବେ ଦୁଇପଦ କଥା କହିନି; ତା'ରି ଭଲମନ୍ଦ କଥା କେବେ ବୁଝିଲିନାହିଁ।

ପୁଅ ମୋର ଆସି କେତୁଟିଏ ହେଲାଣି। ମୁଁ ଉଠିବା ଆଗରୁ ସେ ଗାଈଗୋଠ ଧରି ଡଙ୍ଗରକୁ ଚାଲିଯାଇଥିବ। ନିଶା ଖାଇ ମାତାଲ ହୋଇ ରାତିରେ ଘରକୁ ଫେରିଲେ ପୁଅ ମୋର ଶୋଇପଡ଼ିଥିବ। ଏତେ ରାତିଯାଏ ସେ ଅବା ମୋ' ବାଟକୁ କାହିଁକି ଚାହିଁରହିଥିବ? ଆଉ କଥା ହେବାକୁ ବେଳ କାହିଁ? ଆଜି ସେହି ପୁଅ ତାକୁ କେତେ ଶରଧାରେ କେତେ କଥା ପଚାରୁଛି; ତା'ରି ଭଲମନ୍ଦ କଥା ବୁଝୁଛି।

ନିଜ ଅଜାଣତରେ ଗୋବିନ୍ଦର ଆଖିରୁ ଦୁଇଧାର ଲୁହ ଗଡ଼ିପଡ଼ିଲା। ଗୋବିନ୍ଦ ହାତ ବଢ଼ାଇ ପୁଅକୁ ପାଖକୁ ଡାକିଲା। ନବୀନ ଶଙ୍କିତ ମନରେ ପାଖକୁ ଆସିଲାପରେ ତାକୁ ଶ୍ରଦ୍ଧାରେ ଭିଡ଼ିଆଣି କୁଣ୍ଢାଇପକାଇ ସକସକ ହୋଇ କାନ୍ଦିପକାଇଲା।

ବାପାକୁ ଏଭଳି ଛୋଟଛୁଆଙ୍କ ଭଳି କାନ୍ଦୁଥିବା ଦେଖି ସେ ପ୍ରଥମେ ବିଚଳିତ ହୋଇଗଲା। ବାପାର ଛାତିରେ ତାର ମୁହଁ ଲାଗିଯିବାପରେ ସେ ଚମକିପଡ଼ିଲା। କପାଳରେ ହାତମାରି ଜାଣିପାରିଲା ଯେ ବାପ ଦେହରେ ଭୀଷଣ ଜର। ଦେହ ତାତିଫୁଟୁଛି।

ନବୀନ ବିଚଳିତ ହୋଇ ତା' ବାପ ମୁହଁକୁ ଚାହିଁ କହିଲା– ''ବାପା, ତୁମ ଦେହରେ ଜର। ଚାଲ ତୁମେ ଖଟରେ ଶୋଇପଡ଼ିବ।''

ରେଖା ଉଠି ଦେଖିଲା, ପାଖରେ ତାର ସ୍ୱାମୀ ନାହିଁ। ସେ ତ କେବେ ଏତେ ସଅଳ ଉଠିବା ମଣିଷ ନୁହେଁ। ଆଜି କୁଆଡ଼େ ଗଲା ବୋଲି ଉଠିଆସି ଦେଖେ ତ ବାପ ପୁଅକୁ କୁଣ୍ଢାଇ କାନ୍ଦୁଛି।

ରେଖା କ୍ଷଣିକପାଇଁ ଆଶ୍ଚର୍ଯ୍ୟ ହୋଇ ବାପ-ପୁଅଙ୍କର ଏ ମଧୁର ମିଳନ ଦେଖି ଆନନ୍ଦରେ ତାର ଆଖିରୁ ଲୁହ ଗଡ଼ିପଡ଼ିଲା। କିଛିକ୍ଷଣ ମୂକଙ୍କ ଭଳି ପଲକବିହୀନ ଦୃଷ୍ଟିରେ କେବଳ ଚାହିଁରହିଲା।

ନବୀନ ତା' ମା'କୁ ଦେଖି ବାପଠୁ ଖସିଆସି ପାଟିକରି କହିଲା– ''ମା' ବାପାଙ୍କ ଦେହରେ ତାତି। ତାଙ୍କୁ ଭୀଷଣ ଜ୍ୱର। ଜ୍ୱରବାଉଳାରେ ସେ ଉଠିପଡ଼ି କ'ଣ ନା କ'ଣ କହିଯାଉଛନ୍ତି। ବାଉଳା ହୋଇ କାନ୍ଦିପକାଉଛନ୍ତି।''

ରେଖା ସଚେତନ ହୋଇ ପାଖକୁ ଆସି ତାର ସ୍ୱାମୀର ମୁଣ୍ଡରେ ଦେହରେ ହାତ ମାରିଲା। ସତକୁସତ ଦେହତମାମ ଖଇଫୁଟା ତାତି।

–''ବାପା, ଚାଲ ତୁମେ ଶୋଇପଡ଼ିବ। ମୁଣ୍ଡ ବିନ୍ଧୁଥିବ। ମୁଁ ଗାଁ ବଇଦକୁ ଡାକିଆଣିବି; ଔଷଧ ଦେବ'' –ଏତକ କହି ନବୀନ ପାଖକୁ ଆସି ତା' ବାପାକୁ ଉଠାଇବାପାଇଁ ଚେଷ୍ଟା କଲା। ଗୋବିନ୍ଦ ତାର ପୁଅ ଏବଂ ସ୍ତ୍ରୀକୁ ଦେଖିନେଇ କହିଲା– ''ତମେସବୁ କିଛି ବ୍ୟସ୍ତ ହୁଅନାହିଁ। ଏମିତି ମୋତେ ଜ୍ୱର ହୁଏ। ଆପେ ଆପେ ଛାଡ଼ିଯାଏ। ଏ ତ ନୂଆକଥା ନୁହେଁ।''

ଶୀତରେ ଗୋବିନ୍ଦର ଦେହ ଥରିଉଠୁଥାଏ; ରୋମମୂଳ ଟାଙ୍କୁରି ଯାଉଥାଏ। ନବୀନ ତାର ବିଛଣାରୁ ଚାଦର ଆଣି ତାର ବାପ ଦେହରେ ଘୋଡ଼ାଇଦେଲା। ଗୋବିନ୍ଦ ଚାଦର ଘୋଡ଼ାଇହେବାପରେ ଟିକିଏ ସୁସ୍ଥ ବୋଧକଲା। ରେଖା ତାକୁ ଜୋର୍‌କରି ଉଠାଇନେଇ ଖଟରେ ଶୁଆଇଦେଲା। କହିଲା– ତୁମେ ଟିକିଏ ଶୋଇପଡ଼, ମୁଁ ଗୋଡ଼ହାତ ଘଷିଦେଉଛି।

ରେଖା ତେଲ ଆଣି ସ୍ୱାମୀର ଦେହରେ ଲଗାଇ ଘଷିଦେଲା। ତେଲ ମାଲିଶ କରିଦେଲା ପରେ ସତକୁ ସତ ଗୋବିନ୍ଦକୁ ଟିକିଏ ଆରାମ ଲାଗିଲା। କିଛିକ୍ଷଣ ତୁନିହୋଇ ଖଟରେ ପଡ଼ିରହିଲା। ରେଖା ତା’ ଦେହରେ ଚାଦର ଘୋଡ଼ାଇଦେଲା। ଘୋଡ଼ାଇ ହୋଇ ଶୋଇରହିବାପରେ ଦେହରୁ ଗୋଟେ ଝାଳ ବାହାରିପଡ଼ିଲା। ରେଖା ଗାମୁଛାରେ ଝାଳ ପୋଛିଦେଲା। ଉଷୁମ ପାଣି ଆଣି ମୁହଁ ଧୋଇ ରେଖା ତାର ପଣତ କାନିରେ ମୁହଁ ପୋଛିଦେଲା।

ଗୋବିନ୍ଦ ସନ୍ତୁଷ୍ଟ ନୟନରେ ତାକୁ କିଛିକ୍ଷଣ ଚାହିଁରହିଲା। ରେଖା ଘରଭିତରକୁ ଯାଇ ପାଣିଡାଳ ସହ ଦାନ୍ତକାଠି ଆଣି ତଳେ ଥୋଇଦେଇ ଗୋବିନ୍ଦକୁ ଖଟରୁ ଉଠାଇଆଣି ଦାନ୍ତ ଘଷିଦେବାପାଇଁ ହାତ ଧରି ବସାଇଦେଲା। ଗୋବିନ୍ଦ ବିନା ଦ୍ୱିଧାରେ ତାର ସ୍ତ୍ରୀର ପ୍ରତ୍ୟେକ କଥାକୁ ମାନି କାମ କରିଯାଉଥାଏ। ରେଖା ମନେ ମନେ ଭାବୁଥାଏ – ଜରବାଉଳାରେ ଆଜି ସେ ଏକ ସୁବୋଧ ବାଳକଭଳି ସବୁ କରିଯାଉଛନ୍ତି। ସକାଳୁ ମଦ ଟିକିଏ ପଡ଼ିଗଲେ କେତେ ପ୍ରଳୟ ସୃଷ୍ଟିହୋଇଯାଇଥାନ୍ତା। ସେତକ ପଡ଼ିନାହିଁ ବୋଲି ମଣିଷ ଆଜି କେତେ ସୁଧାର। ମଦ-ରାକ୍ଷସ ତାଙ୍କୁ ସାରିଦେଲାଣି। ସେଥିରୁ ତାଙ୍କୁ କେମିତି ବଞ୍ଚାଇ ପାରିବ, ସେହି ଚିନ୍ତା ତା’ ମନକୁ ଘାରିଦେଲା।

ଗୋବିନ୍ଦ ମୁହଁହାତ ଧୋଇ ଆସି ଖଟରେ ପୁଣି ବସିପଡ଼ିଲା। ସତେ ସେ ଆଜି ବଡ଼ ଦୁର୍ବଳ ବୋଧକରୁଥାଏ। ଗୋଡ଼ହାତ ଥରୁଥାଏ। ଏତେବେଳ ହେଲା ପାଟିରେ ନିଶାପାଣି ଟିକିଏ ପଡ଼ିନଥାଏ।

ଏଣେ ନବୀନ ଦୌଡ଼ିଯାଇ ଗାଁ ବୈଦ୍ୟକୁ ଧରି ଫେରିଆସିଲାଣି। ବୈଦ୍ୟ ଜଣେ ପୁରୁଖା ଲୋକ। ଚେରମୂଳି ଔଷଧ ଦେଇ ଗାଁ ତଥା ପାଖଆଖ ଗାଁରେ ତାଙ୍କର ସୁନାମ ରଟିଯାଇଛି। ଦଶ-ପନ୍ଦର କିଲୋମିଟର ଭିତରେ ଡାକ୍ତରଖାନା ନାହିଁ। ଜର ବେମାର ପଡ଼ିଲେ ତାଙ୍କରି ଡାକହାକ ହୋଇଥାଏ। ଅନେକ ଲୋକ ମଧ୍ୟ ତାଙ୍କ ଔଷଧ ଖାଇ ଆରୋଗ୍ୟଲାଭ କରିଥାନ୍ତି। ତାଙ୍କର ହାତଯଶ ବଢ଼ି ବଢ଼ି ଚାଲିଥାଏ। ପ୍ରଥମେ ପ୍ରଥମେ ଅବଶ୍ୟ ନିଦାନ ଠିକ୍‌କରି ପାରୁନଥିବା ହେତୁ ଅନେକ ରୋଗୀ ମୃତ୍ୟୁମୁଖରେ ପଡ଼ିଥିଲେ। ମାତ୍ର ପ୍ରଗାଢ଼ ଉଦ୍ୟମ ଫଳରେ ପୁରୁଣା ପୋଥିସବୁ ପଢ଼ି ନିଜେ ଔଷଧ ପ୍ରସ୍ତୁତ କରି ରୋଗନିଦାନ କଲେ;

ଫଳରେ ତାଙ୍କ ହାତତିଆରି ଔଷଧ କାଟୁ କଲା, ରୋଗୀ ଆରୋଗ୍ୟ ହେଲେ ।

ବୃକ୍ଷଲତାଦ୍ୱାରା ଉପଚାର ସହଜ, ଶସ୍ତା ଏବଂ ସରଳ । କବିରାଜଙ୍କ ଘରେ ପ୍ରତିଦିନ ଡଙ୍ଗର ଭିତରୁ ହରିଡ଼ା, ବାହାଡ଼ା, ଅଁଳା, ବେଲ, ଗମ୍ଭାରୀ, ଭେଜିବାଇଗଣ, ନାଗେଶ୍ୱର, ନିମ୍ବ, କୋଚିଲା, କରଞ୍ଜ, ପାତାଳଗରୁଡ଼, ଭୂଇଁକଖାରୁ, ବ୍ରାହ୍ମୀ, ଗୁଳୁଚି, ଘୀକୁଆଁରୀ, ଭୂଇଁନିମ ପ୍ରଭୃତି ଔଷଧ ଗୁଣଯୁକ୍ତ ବୃକ୍ଷଲତାକୁ ସଂଗ୍ରହ କରି ତାଙ୍କ ନିଜ ହାତରେ ପାଚନ ତିଆରି କରି ଖରାରେ ଶୁଖାଇ ନିଦାନକରି ତିଆରି ଔଷଧ ରୋଗୀକୁ ଦେଇ ସେ ବହୁ କ୍ଷେତ୍ରରେ ସଫଳତା ଅର୍ଜନ କରିଛନ୍ତି । ବନୌଷଧିର ଗୁଣ ଶରୀର ପକ୍ଷେ ଅତି ଉପକାରୀ । ଏହା ରୋଗୀର କ୍ଷତି ଘଟାଇନଥାଏ । ଏହା ସମୟସାପେକ୍ଷ ହୋଇପାରେ, ମାତ୍ର ରୋଗର ମୂଳୋତ୍ପାଟନ ସୁନିଶ୍ଚିତ । ତେଣୁ ଦିନକୁଦିନ କବିରାଜୀ ଔଷଧର ମହତ୍ତ୍ୱ ବୃଦ୍ଧି ପାଇବାରେ ଲାଗିଛି । ମଫସଲ ଗାଁ ଲୋକଙ୍କ ପାଖରେ ଆଦର ବଢ଼ିଚାଲିଛି ।

ବୈଦ୍ୟଙ୍କୁ ଦେଖି ଗୋବିନ୍ଦ ନମସ୍କାରଟିଏ କଲା । ଉଠିବାପାଇଁ ଚେଷ୍ଟା କଲା; ମାତ୍ର କବିରାଜ ମନାକଲେ । ଖଟରେ ଶୋଇରହିବାପାଇଁ କହି ସେ ପାଖରେ ଛିଡ଼ାହେଲେ । ଗୋବିନ୍ଦ କହିଲା– ‘‘ଏମିତି ଟିକିଏ ଜର ହୋଇଯାଇଛି । ସେତକ ଦେଖି ପିଲାଟି ହରବର ହୋଇ ତୁମକୁ ଡାକିଆଣିଛି ।’’

ବୈଦ୍ୟ ମହାଶୟ ମୁହଁରେ ହସ ଫୁଟାଇ ପାଖରେ ବସିପଡ଼ି ଗୋବିନ୍ଦର ହାତ ଉଠାଇ ନାଡ଼ି ଦେଖିଚାଲିଥାନ୍ତି । ନାଡ଼ି ପରୀକ୍ଷା କରି କହିଲେ– ‘‘ତୁମେ ସିନା ପୁଅପାଇଁ ବ୍ୟସ୍ତ ନୁହଁ, କି ତାର ଭଲମନ୍ଦ ଚିନ୍ତା କରୁନ– ପୁଅ ତୁମର କେତେ ଚଞ୍ଚଳ ଦୌଡ଼ିଯାଇ ମୋତେ ଖବର ଦେଲା । ନହେଲେ ମୁଁ ଆଉ ଟିକିଏ ପରେ ପାଖ ଗାଁକୁ ରୋଗୀ ଦେଖିବାପାଇଁ ଚାଲିଯାଇଥାନ୍ତି; ଫେରୁ ଫେରୁ ରାତି ହୋଇଯାଇଥାନ୍ତା । ବୁଝିଲ ଗୋବିନ୍ଦ, ତୁମର ଭଲମନ୍ଦ ତୁମରି ହାତରେ; ଆମେ ଔଷଧ ଦେବୁ ନାମକୁମାତ୍ର ।’’

ଗୋବିନ୍ଦ ତାଙ୍କ ମୁହଁକୁ ଚାହିଁ ଆଶ୍ଚର୍ଯ୍ୟ ହୋଇ କହିଲା– ‘‘ଏ କେମିତିକା କଥା କହୁଛନ୍ତି ଆଜ୍ଞା ? ଆପଣଙ୍କ ହାତଯଶ ଏ ଖଣ୍ଡମଣ୍ଡଳରେ ବ୍ୟାପିଛି । ଯାହାକୁ ଆପଣ ପାନେ ଔଷଧ ଦିଅନ୍ତି, ସେ ମଲା ରୋଗୀ ଉଠିଆସିଥିବା ଆମେ ଜାଣିଛୁଁ । ଆଜି ମୋ’ବେଳକୁ କହୁଛନ୍ତି କ’ଣନା, ତୁମରି ଭଲମନ୍ଦ ତୁମରି ହାତରେ ।’’ ମୁହଁକୁ ଶୁଖାଇ ପୁଣି କହିଲା– ‘‘ଆମ ହାତରେ ଏତକ ହୋଇପାରୁଥିଲେ ତୁମକୁ ଡାକିଥାନ୍ତୁ କାହିଁକି ?’’

କବିରାଜ ମୁହଁରେ ହସ ଫୁଟାଇ କହିଲେ– ‘‘ବୁଝିଲ ଗୋବିନ୍ଦଚନ୍ଦ୍ର, ମୁଁ କହୁଥିଲି କ’ଣ କି; ଆମ କବିରାଜୀ ଔଷଧ ମାଦକ ଦ୍ରବ୍ୟ ସେବନକାରୀଙ୍କ ପାଇଁ ଅହିତକର ।’’

ଏତକ ଶୁଣୁଶୁଣୁ ଗୋବିନ୍ଦର ମୁହଁ କଳାପଡ଼ିଗଲା ।

ବୈଦ୍ୟ ତା'ର ମୁହଁକୁ ଚାହିଁ ପୁଣି କହିଲେ— "ସେଇଟା ତ ଆମ ହାତରେ ନାହିଁ; ତାହା ତୁମ ହାତରେ ଅଛି। ସେତେବେଳକୁ ଆମ ଔଷଧ ଆଉ କାଟୁକରିବନାହିଁ। ତୁମେ ଯଦି ନିଶା ଛାଡ଼ିନଦିଅ, ତେବେ ତୁମ କଲିଜା ଧୀରେ ଧୀରେ ନଷ୍ଟହୋଇଯିବ ।"

ତାର ପୁଅ ଆଗରେ ଏତେ କଥା ବୈଦ୍ୟ କହିଦେବାରୁ ମନେମନେ ସେ ବୈଦ୍ୟଙ୍କ ଉପରେ ଚିଡ଼୍‌ଚିଡ଼୍ ହେଲା । ମୁହଁ ତାର ନାଲି ପଡ଼ିଗଲା ।

ରେଖା ପାଖରେ ଛିଡ଼ାହୋଇ ସବୁକଥା ଶୁଣୁଥାଏ । ସେ ତାଙ୍କ କଥାକୁ ସମର୍ଥନ କରି କହିଲା— "ସେତକ ଛାଡ଼ିଦେଇଥିଲେ ସେ ଆଜି ଏ ଅବସ୍ଥା ଭୋଗୁଥାନ୍ତେ କାହିଁକି ? କାହା କଥା ତ ଶୁଣୁନାହାନ୍ତି । ଦିନକୁ ଦିନ ତାଙ୍କ ଦେହ କ'ଣ ହେଲାଣି ? କଳାକାଠ ହୋଇଗଲେଣି । ତମେ ସେତକ ବୁଝାଇଦିଅ । ନିଶା ଛାଡ଼ିଦିଅ ବୋଲି କେତେ ନେହୁରା ହେଲିଣି— ତେବେ କ'ଣ ସେ ଛାଡୁଛନ୍ତି କି ?

ତା' ସ୍ତ୍ରୀର କଥା ଶୁଣି କଟା ଘା'ରେ ଲୁଣ ଦେଲାଭଳି ତାକୁ ଲାଗିଲା । କଟମଟ କରି ଥରେ ତାକୁ ଅନାଇଦେଲା । ମନେମନେ ଭାବିହେଉଥାଏ, ମାଇପିଟାର ବହପ ଦେଖ ! କେତେ ବଢ଼ି ବଢ଼ି କଥା କହିଯାଉଛି ! ମାତ୍ର ବୈଦ୍ୟଙ୍କ ସାମନାରେ ତା' ମନକଥା ଖୋଲିପାରିଲାନାହିଁ। ନବୀନ ନୀରବରେ ସବୁକଥା ଶୁଣୁଥାଏ ଏବଂ ପାଖରେ ଛିଡ଼ାହୋଇ ବାପାକୁ ଅନାଇ ରହିଥାଏ । ଗୋବିନ୍ଦ ମୁଣ୍ଡ ତଳକୁ ପୋତି ନୀରବରେ ବସିରହିଥାଏ । ଦେହର ତାତି ସହ ମନର ରାଗ ବଢ଼ିବଢ଼ି ଚାଲିଥାଏ । ତା' ପୁଅ ଆଗରେ ଆଜି ସେ ନିଜକୁ ଛୋଟମନେକରୁଥାଏ । ପୁଅ ଆଗରେ ଏତେକଥା କେବେ ପଡ଼ିନଥିଲା । ସତେ ଯେପରି ଆଜି ତା' ମୁଣ୍ଡ ଛିଣ୍ଡିପଡ଼ିଲା ଭଳି ମନେହେଉଥାଏ ।

ବୈଦ୍ୟ ତାକୁ ଦେଖି ରୋଗର ନିଦାନ କରି ପରାମର୍ଶ ଦେଲାଭଳି କଅଁଳିଆ ସ୍ୱରରେ କହିଲେ— "ମୋ' କଥାକୁ ଭୁଲ୍ ବୁଝିବନାହିଁ। ରୋଗ ନିଦାନ କରି ମୁଁ ଏତକ କହିଲି ।" ବୈଦ୍ୟଙ୍କ କଥା ଶୁଣି ଗୋବିନ୍ଦ ମୁହଁରୁ ରାଗଟିକକ ଲିଭିଗଲା । ତାଙ୍କ ମୁହଁକୁ ବଲବଲ କରି ଅନାଇ ଭାବିଲା, ସେ ତା'ରି ମଙ୍ଗଳପାଇଁ କହୁଛନ୍ତି । ଭୁଲ କଥା ତ କହୁନାହାନ୍ତି ? ସେ କ'ଣ କରିବ କିଛି ବୁଝିପାରିଲାନାହିଁ। ସେ ବ୍ୟତିବ୍ୟସ୍ତ ହୋଇପଡ଼ିଲା ।

ତାକୁ ଆଶ୍ୱାସନା ଦେବାପାଇଁ ବୈଦ୍ୟ କହିଲେ— "ବ୍ୟସ୍ତ ହୁଅନାହିଁ। ପୁଅ ହାତରେ ଔଷଧ ପଠାଇଦେଉଛି। ତୁମେ ଘରୁ କୁଆଡ଼େ ଯିବନାହିଁ। ଅଳ୍ପଦିନ ଭିତରେ ଜର ଛାଡ଼ିଯିବ। ଭୟ କରିବାର କିଛି ନାହିଁ।" —ଏହା କହି ସେ ନିଜ କାମରେ ଚାଲିଗଲେ ।

ଏତକ ଶୁଣି ଗୋବିନ୍ଦର ମୁହଁରେ ହସ ଚହଟିଆସିଲା । ଆଶାର ଆଲୋକରେ ପାଣ୍ଡୁର ମୁହଁ ଝଲସିଉଠିଲା ।

ନବୀନ ବୈଦ୍ୟଙ୍କ ସହ କଥାବାର୍ତ୍ତା ହୋଇ ଚାଲିଗଲା ଔଷଧ ଆଣିବାପାଇଁ ।

ସମସ୍ତେ ଚାଲିଗଲାପରେ ଗୋବିନ୍ଦ ମନର ପାପ ତାର ପ୍ରାଧାନ୍ୟ ବିସ୍ତାର କଲା । ମନ ତାର ଡହଳବିକଳ ହୋଇଉଠିଲା । ଗୋବିନ୍ଦ ବଡ଼ ଉଦାସ ମନରେ ନିସ୍ତେଜ ହୋଇ ଖଟରେ ବସିରହିଛି । ମନ ଛଟପଟ ହେଉଥାଏ । ଏତେବେଳ ହେଲା ଦାରୁପାଣି ଟିକିଏ ପଡ଼ିନାହିଁ । ରେଖା ଗରମ ଚାହା ଟିକିଏ କରି ଆଣିଦେଇଛି । ଗରମ ଚାହାର ବାମ୍ପ ତାକୁ ସେତେ ଆକୃଷ୍ଟ କରିପାରୁନାହିଁ । ମନ ତାର ବ୍ୟତିବ୍ୟସ୍ତ ହୋଇଯାଉଥାଏ । ସକାଳୁ ଟିକିଏ ଦାରୁପାଣି ନହେଲେ ନଚ଼ଲେ । ଏତେବେଳ ହେଲା ପେଟରେ କିଛି ପଡ଼ିନାହିଁ । ହେଲେ ଟିକିଏ ପିଇବାପାଇଁ ଆଜି ସେ ବାହାରକୁ ଯିବା ଅବସ୍ଥାରେ ନାହିଁ । ଏଣେ ଘରେ ବି କିଛି ନାହିଁ । ଦରାଣ୍ଡିକରି ବୋତଲ ସବୁ ଦେଖିଦେଲାଣି; କେଉଁଠି କିଛି ନାହିଁ । ଧଳା, କଳା, ସାନ, ବଡ଼ ନାନା ପ୍ରକାର ଖାଲିବୋତଲ କେବଳ ଗଡୁଛି । ସବୁ ବୋତଲ ଖାଲି । ସେ କ'ଣ କରିବ କିଛି ବୁଝିପାରିଲାନାହିଁ । ମନକୁ ଆୟତ୍ତ କରିବାପାଇଁ ଚେଷ୍ଟାକରୁଛି । ମନ କ'ଣ ସହଜରେ ଆୟତ୍ତ ହେବ ! ସକାଳୁ ସେଥିରୁ ଟିକିଏ ପେଟରେ ନପଡ଼ିଲେ ସେ ରହିପାରେନାହିଁ ।

ଭାବିଲା— କି ଜର ହେଲା— ମୁଁ ମିଛଟାରେ ଉଠି ପୁଅକୁ ଦେଖିବାକୁ ଗଲି । ଉଠି ସିଧା ଚାଲିଯାଇଥିଲେ କଥାଟା ତୁଟିଯାଇଥାନ୍ତା । ଜର ଆପେ ଆପେ କୁଆଡ଼େ ପଳାଇଯାଇଥାଆନ୍ତା; ପାଖ ପଶନ୍ତାନାହିଁ । ଏମିତି କେତେ ଜର ଆସିଛି; ଦାରୁପାଣି ଟିକିଏ ପଡ଼ିଗଲେ ଆପେ ଆପେ ଛାଡ଼ିଯାଇଛି । ଦାରୁ ହେଉଛି ମୂଳ ଔଷଧ; ଆଉ ସବୁ ପଛ । ସେତକ ପଡ଼ି ନାହିଁ ବୋଲି ଆଜି ଏ ଦଶା । ବଇଦ ବତାଇଦେଇ ଯାଇଛି କ'ଣ ନା ମଦ ନଛାଡ଼ିଲେ କଲିଜା ପୋଡ଼ିଯିବ ବୋଲି ।

ତାଚ୍ଛିଲ୍ୟ କରି ସେ ହସିଉଠିଲା । ମଣିଷ ବଞ୍ଚିବ ବୋଲି ସେତକ ଛାଡ଼ି କ'ଣ ସେ ବଞ୍ଚିପାରିବ ? ମୁଁ ବଞ୍ଚିପାରିବି ନାହିଁ । ନା, ନା, ମୁଁ ବଞ୍ଚିପାରିବି ନାହିଁ । ସେ ଛାଟିପିଟି ହେଲା ।

ରେଖା ଘର ଭିତରୁ ଦୌଡ଼ିଆସିଲା । ତାକୁ ଜୋରଜବରଦସ୍ତି କରି ଖଟରେ ଆଣି ଶୁଆଇଦେଲା । ବୈଦ୍ୟ ମନାକରିଯାଇଛନ୍ତି କୁଆଡ଼େ ନ ଯିବାପାଇଁ । ଆକଟକରି ତାକୁ ଖଟରେ ଶୁଆଇଦେଇ ଓ ଚାଦର ଖଣ୍ଡିଏ ଘୋଡ଼ାଇଦେଇ ମୁଣ୍ଡରେ ହାତ ବୁଲାଇ ଆଣିଲା ।

ଗୋବିନ୍ଦ ମନେମନେ ଗରଗର ହେଉଥାଏ; ମାତ୍ର କିଛି କହିଲାନାହିଁ । ଦେଖ ଆଜି ମୋର ବଳଟିକକ ମଧ୍ୟ ନାହିଁ । ନିଶା ଟିକିଏ ନପଡ଼ିଲେ ଦେହର ବଳ

ବି ଉଭେଇଯାଉଛି । ରାଣ୍ଡି ମୋତେ ଜୋର ଜବରଦସ୍ତି ଖଟରେ ଆଣି ଗଡ଼ାଇଦେଲା ? ଦାରୁପାଣି ଟିକେ ପଡ଼ିଥିଲେ ମୋ ପାଖକୁ ପଶନ୍ତାନାହିଁ। ସେ ଫେର୍ ମୋତେ ଖଟରେ ଆଣି ଶୁଆଇଦେଲା ? ମାଇପିର ସାହସ ଦେଖ। ମଦ ବିନା ସେ ଆଜି କିଛି ନୁହେଁ। ସାମାନ୍ୟ ବଳଟିକକ ମଧ୍ୟ ନାହିଁ।

ସେ କଟମଟ କରି ତାର ସ୍ତ୍ରୀର ମୁହଁକୁ ଅନାଇରହିଲା । ମନରେ ସୀମାହୀନ ବ୍ୟାକୁଳତା ଓ ହତାଶଭାବ ଖେଳିଗଲା । ମଣିଷ ପ୍ରକୃତରେ ସମୟେ ସମୟେ କେତେ ଦୁର୍ବଳ କେତେ ଅସହାୟ ହୋଇପଡ଼େ ! ମଣିଷ ମନରେ ଯେତେବେଳେ ଦୁଃଖ, ଯନ୍ତ୍ରଣା, ଯାତନା ଖେଳିଯାଏ, ସଭିଏଁ ସମାନ ହୋଇଯାଆନ୍ତି । ଛୋଟ, ବଡ଼, ଧନୀ, ଦରିଦ୍ର, ଦୁର୍ବଳ, ସବଳ ଭିତରେ ପାର୍ଥକ୍ୟ ରହେନାହିଁ। କଷ୍ଟ, ଦୁଃଖ, ଯନ୍ତ୍ରଣା ସଭିଁଙ୍କପାଇଁ ସମାନ ।

ସେ ଖଟରେ ଶୋଇ ଏମିତି କେତେ କ'ଣ ଭାବିଚାଲିଥାଏ । ଦୁଃଖ-ଯନ୍ତ୍ରଣାରେ ମନ ତାର ଛଟପଟ ହେଉଥାଏ । ଅନୁଶୋଚ଼ନାରେ ମନ ତାର ଜର୍ଜରିତ ହୋଇଉଠିଲା । ସେ କେତେ ଚେଷ୍ଟା କରିଛି ମଦ ଛାଡ଼ିଦେବାପାଇଁ; ମାତ୍ର ଛାଡ଼ିପାରିନାହିଁ। ଜୀବନରେ ସେ କେତେ ପାପ କରିଛି, ତାର ଠିକ୍-ଠିକଣା ନାହିଁ। ସେହି ପାପର ଫଳ ସେ ଆଜି ଭୋଗୁଛି। ପାପୀ ମନ ସଦାବେଳେ ତଳକୁ ତଳକୁ— ବୁଡ଼ିଗଲା ଲୋକ ଯେମିତି ତଳକୁ ତଳକୁ ବୁଡ଼ିଚାଲେ ।

ଅସହ୍ୟ ଯନ୍ତ୍ରଣାରେ ସେ ଛଟପଟ ହେଲା । ପେଟକୁ ଚାପିଧରି ସେ ଚିତ୍କାର କରିଉଠିଲା । କପାଳରେ ବିନ୍ଦୁ ବିନ୍ଦୁ ଝାଳ ଫୁଟିଉଠିଲା । ରେଖା ପାଖକୁ ଚାଲିଆସି ତାକୁ ସମ୍ଭାଳିନେଲା । ଆଶ୍ୱାସନା ଦେଇ କହିଲା— ''ପୁଅ ଏଇନେ ଫେରିଆସିବ ଔଷଧ ନେଇ— ଟିକିଏ ଥୟ ଧରିଯାଅ ।'' ସେ ତାର ଲୁଗା କାନିରେ ସ୍ୱାମୀର କପାଳର ଝାଳ ପୋଛିଦେଲା । ପାଖରେ ବିଞ୍ଚଣା ନଥିବାରୁ ତା'ରି ଲୁଗା କାନିରେ ଧୀରେ ଧୀରେ ବିଞ୍ଚିଲା ।

ଗୋବିନ୍ଦ ତାର ସ୍ତ୍ରୀର ମୁହଁକୁ ବ୍ୟାକୁଳ ନୟନରେ ଅନାଇ ରହିଥାଏ । ତା' ମନର କଷ୍ଟ ଜାଣିପାରି ତାର ସ୍ତ୍ରୀ ତା' ମୁଣ୍ଡରେ ହାତ ବୁଲାଇଆଣିଲା । ଗୋବିନ୍ଦର ଆଜି କେଜାଣି କାହିଁକି ଭଗବାନ୍‌ଙ୍କୁ ଡାକିବାପାଇଁ ଭାରି ଇଚ୍ଛାହେଲା । ସେ କେବେ କୌଣସି ଠାକୁର ଦେବତାଙ୍କୁ ପୂଜାକରିନାହିଁ। ଠାକୁର ଦେବତାଙ୍କୁ ଯେ ସେ ମାନେନାହିଁ, ତା' ନୁହେଁ; ତାକୁ କେବେ ସୁଯୋଗ ମିଳିନାହିଁ ଅବା ସମୟ ମିଳିନାହିଁ ଠାକୁରଙ୍କୁ ପୂଜାକରିବାପାଇଁ। କେବେ ମଧ୍ୟ ତାର ଦରକାର ପଡ଼ିନାହିଁ। ମାତ୍ର ଆଜି କେଜାଣି କାହିଁକି ତାର ଅଜାଣତରେ ଠାକୁରଙ୍କୁ ମନେମନେ ଡାକଛାଡ଼ିଛି ।

ମଣିଷ ବିପଦ ଅବା କଷ୍ଟରେ ପଡ଼ିଲେ ଠାକୁରଙ୍କୁ ସ୍ମରଣ କରିଥାଏ ।

ସେହିଭଳି ପରିସ୍ଥିତିରେ ପଡ଼ି ଗୋବିନ୍ଦ ମନେମନେ ଠାକୁରଙ୍କୁ ସ୍ମରଣ କରିଚାଲିଥାଏ। ମଣିଷ କେତେବେଳେ କେଉଁଠି କି ଭାବରେ ଓ କି ପ୍ରକାରରେ ତାର ମନର କଥା, ମନର ବ୍ୟଥା ପ୍ରକାଶ କରେ, ତାହା ମଧ୍ୟ ସଠିକ୍ କହିହୁଏନାହିଁ। ବିଚିତ୍ର ଏ ଦୁନିଆ; ତା'ଠୁଁ ବିଚିତ୍ର ଏ ମଣିଷର ମନ।

ନବୀନ ବୈଦ୍ୟଠୁ ଔଷଧ ଆଣି, ତାଙ୍କ ପରାମର୍ଶ ଅନୁସାରେ ପ୍ରଥମେ ବାପର ସେବା କରିବାକୁ ଲାଗିଲା। ତା'ର ଜଣେ ସାଙ୍ଗକୁ କହିଦେଇ ଆସିଲା, ଗାଈଗୋରୁ ନେଇ ଡଙ୍ଗରକୁ ଯିବାପାଇଁ। ସେ ଆଜି ଯାଇପାରିବ ନାହିଁ।

ପୁଅକୁ ଦେଖି ଗୋବିନ୍ଦର ସବୁ ରାଗ ଅଭିମାନ ଦୁଃଖକଷ୍ଟ ଲିଭିଗଲା। ଗଦ ଦେଖିଲେ ସାପ ଯେପରି ଆପେ ଆପେ ଫଣା ନୁଆଁଇଦିଏ, ଆଜି ଗୋବିନ୍ଦର ମଧ୍ୟ ସେହି ଅବସ୍ଥା। ମନର ଦୁଃଖ ମନ ଭିତରେ ଛପିରହିଗଲା।

ନବୀନ ଔଷଧ ପାନେ ବାପ ହାତକୁ ବଢ଼ାଇଦେଲା। ସେ ନୀରବରେ ଔଷଧ ଖାଇଦେଲା। କଡ଼ା ପିତା ଔଷଧ ଖାଇ ମୁହଁ ତାର ବିକୃତ ହୋଇଗଲା। ପାଟି ଖରଖର ଲାଗିଲା। ପାଣି ଢୋକେ ପିଇ ଆଖିବୁଜି ଖଟରେ ଶୋଇପଡ଼ିଲା।

## (୩)

ଅନେକ ଦିନଧରି ଗୋବିନ୍ଦ ଖଟରେ ପଡ଼ି ପଡ଼ି ମନ ତାର ଚିଟା ଲାଗୁଥାଏ। ଦେହ ଦୁର୍ବଳ ହୋଇଯାଇଥାଏ। ଉଠିବାକୁ ମଧ୍ୟ ବଳ ନଥାଏ। ମୁଣ୍ଡ ବୁଲାଉଥାଏ। ରେଖା ଆସି ତାକୁ ଧରି ଉଠାଇଦେଲେ ଖଟରେ କିଛିକ୍ଷଣ ବସି ଆସ୍ତେ ଆସ୍ତେ ଉଠି ଅତି ସତର୍କରେ ପାଦ ପକାଇ ପଦାକୁ ବାହାରୁଥାଏ। ପାଖରେ ଥାଏ ରେଖା। ତାକୁ ଭରସା କରି ତା'ରି କାନ୍ଧରେ ହାତ ରଖି ଯିବାଆସିବା କରୁଥାଏ। ଗୋବିନ୍ଦ ରୋଗଶଯ୍ୟାରେ ଅଚେତ୍ ହୋଇ ଶୋଇପଡ଼ିଥିବାବେଳେ ତାର କେତେ ସାଙ୍ଗ ମଦୁଆ ସାଥୀ ତାକୁ ଡାକିଆସୁଥାନ୍ତି। ଅନେକ ଦିନ ହେବ ମଦ ଆଡ୍ଡାରେ ତାକୁ ନଦେଖି ସେମାନଙ୍କ ମନ ଛଟପଟ ହେଉଥାଏ।

ନବୀନ ସଦାବେଳେ ଘରେ ତା' ବାପକୁ ଜଗିରହିଥାଏ। ଔଷଧଠୁଁ ବଳି ରୋଗୀର ସେବାଯତ୍ନ କରିବା ହେଉଛି ବଡ଼ କାମ– ବୈଦ୍ୟ ତାକୁ ଏହି ପରାମର୍ଶ ଦେଇଯାଇଥିଲେ। ତେଣୁ ତାର ସବୁ କାମ ପଛରେ ପକାଇ ବାପର ସେବାରେ ଲାଗିଯାଇଥାଏ। ତା' ବାପର ସାଙ୍ଗମାନେ ଆସିଲେ ମନାକରିଦିଏ– ଭୀଷଣ ଜ୍ୱର। ସେ କୁଆଡ଼େ ଯାଇପାରିବେ ନାହିଁ। ବୈଦ୍ୟ ମନାକରିଛନ୍ତି।

ଏମିତି କଅଁଳ କଥା କହି ସେମାନଙ୍କୁ ବୁଝାଇ-ଶୁଝାଇ ପଠାଇଦିଏ। ତଥାପି

ସେମାନଙ୍କ ମନ ନମାନିଲେ କବାଟ ଟିକିଏ ମେଲାକରି ପଦାରୁ ଉଙ୍କିମାରି, ସତକୁସତ ଗୋବିନ୍ଦ ଶୋଇଥିବା ଦେଖି ଚାଲିଯାଉଥିଲେ। ସେମାନଙ୍କ ମଦଗନ୍ଧରେ ଘରଟା ଫାଟିପଡୁଥିଲା।

ନବୀନ ଦିନେ ସାହସ କରି କହିଲା– "ମଉସା, ଦେହ ବି କାଇଲା ହୋଇଗଲାଣି। ଦେହ ଦୁର୍ବଳ ହୋଇଯାଉଛି। ମଦ ପିଇବା ଛାଡ଼।" ତା'ର ଏଭଳି ଅନୁନୟ ବିନୟ କଥା ଶୁଣି ସେମାନେ ହସରେ ଉଡ଼ାଇଦିଅନ୍ତି। ତାକୁ ତାଛଲ୍ୟ କରି, ଥଟ୍ଟା ଟାପରା କରି, ଅସଭ୍ୟ ଭାଷାରେ ଗାଳିଦେଇ ଟଳି ଟଳି ବେସୁରା ଗୀତଗାଇ ଚାଲିଯାଆନ୍ତି।

–"ଟୋକାର ବହପ ଦେଖ। ସତେ ଯେପରି ତା' ବାପର ଧନ ଆମେ ଖାଇଯାଉଛୁଁ? ଆମ ଟଙ୍କାରେ ଆମେ ମଦ ପିଉଛୁ– ତୋର କ'ଣ ଗଲା ବେ? ସରକାର ମଦକୋଠି ଖୋଲିଛି କାହିଁକି? ମଦକୋଠି ନଥିଲେ ଆମେ ମଦ ପିଅନ୍ତୁ କାହିଁକି? ଯା' ସରକାରକୁ ମନାକରିବୁ। ଆମକୁ ମନାକରିବାକୁ ତୁ କିଏ?" –ତାକୁ ଧମକ ଦେଇ ପାଟିକରନ୍ତି।

ନବୀନ ସେମାନଙ୍କ ଭାବଭଙ୍ଗୀ ଦେଖି ନୀରବରେ ଅନାଇ ରହିଥାଏ। ତା' ବାପ ସମାନର ଲୋକ– କାହାକୁ କ'ଣ କହିପାରିବ?

–"ଆବେ... ଏମିତି କ'ଣ ତବତବ ଅନାଇଛୁ– ପିଲାର ସାହସ ଦେଖ? ମଦ ପିଅନା ବୋଲି ଆମକୁ କହୁଛି। ତୋ' ବାପାକୁ କହ, ଆମକୁ କ'ଣ କହୁଛୁ?" –ଏତକ କହି ତାକୁ କଟମଟ କରି ଅନାନ୍ତି, ମଦ ବୋତଲ ଧରି ଟଳିଟଳି ହାତ ଧରାଧରି ହୋଇ ଚାଲିଯାଆନ୍ତି।

ନବୀନ ସେମାନଙ୍କ ଯିବା ବାଟକୁ ଅନାଇରହିଥାଏ। ସେମାନଙ୍କ ଭର୍ତ୍ସନା ଶୁଣି ମନ ତାର ଦୁଃଖରେ ଭାଙ୍ଗିପଡେ। ସଙ୍ଗଦୋଷରେ ବାପା ଆଜି ମାତାଲ। ଏମାନଙ୍କଠୁ ତାଙ୍କୁ ଦୂରେଇ ନରଖିଲେ ସେ ଆଉ ବଂଚିବେ ନାହିଁ। ଗାଁର ବଇଦ କେତେ କଥା ନିରୋଳାରେ ତାକୁ କହିଯାଇଛନ୍ତି। ବାପାଙ୍କ ମଦୁଆ ସାଙ୍ଗକୁ ମଦ ଛାଡ଼ିଦେବାପାଇଁ କହିବାରୁ ସେମାନେ ମଦ ଛାଡ଼ିବେ କ'ଣ, ତାକୁ ମାରିଗୋଡ଼ାଇଲାଭଳି କେତେ କଥା କହିଗଲେ। ମଦନିଶାରେ ମଣିଷ ତାର ବିବେକ ହରାଇଦିଏ।

ସତରେ ମଦୁଆଙ୍କୁ ମଦ ଛାଡ଼ିବାପାଇଁ କହିଲେ, ସେ କେବେ ସହଜରେ ମଙ୍ଗିବନାହିଁ। କହିବ– "ମଦ ପିଇବା ପାପ ନୁହେଁ– ମଦୁଆଙ୍କୁ କୁ-ମାର୍ଗରୁ ନିବର୍ତ୍ତାଇବାହିଁ ପାପ।"

ଜଣେ ମାତାଲ ବ୍ୟକ୍ତି ନିଜର ଆତ୍ମଜ୍ଞାନ ଉଦୟ ନହେବା ପର୍ଯ୍ୟନ୍ତ ସେ କେବେ ମଦ ଛାଡ଼ିପାରିବ ନାହିଁ। ବନ୍ଧୁ ଭାବରେ ମନାକଲେ ତା' ଆରଦିନ

ଲୁଚାଇ ଲୁଚାଇ ସେ ମଦ ପିଇବ। ଆଉ ଏକ ଦୁର୍ଗୁଣ ବଢ଼ିଯିବ। ଯେଉଁ ଦିନ ସେ ସ୍ପଷ୍ଟ ଉପଲବ୍ଧି କରିପାରିବ ଯେ, ମଦ ତାର ସର୍ବସ୍ୱ ଲୁଟିନେଇଛି, ତାର ପୁଅଝିଅ, ସ୍ତ୍ରୀର ମୁହଁରୁ ହସଟିକକ ଲିଭାଇ ଦେଇଛି, ତାକୁ ଦିନକୁଦିନ କ୍ଷୀଣରୁ କ୍ଷୀଣତର କରିଦେଇଛି, ସମାଜ ଲୋକଙ୍କ ଦ୍ୱାରା ଉପହସିତ ହୋଇଛି, ଲୋକେ ତାକୁ ଘୃଣାକରୁଛନ୍ତି, ସେହିଦିନଠୁଁ ସେ ଆଉ ମଦର ପାଖ ମାଡ଼ିବ ନାହିଁ। ମନର ଦୃଢ଼ତାରେ ସବୁକିଛି ସମ୍ଭବ ହୋଇଥାଏ।

ନବୀନ ଏମିତି ମନେମନେ କେତେ କ'ଣ ଭାବିଚାଲିଥାଏ। ସତେ କ'ଣ ତା'ର ବାପା ହୃଦୟରେ ଏତିକି ଚିନ୍ତା ସୃଷ୍ଟି ହୋଇପାରିବ? ଏ ମାୟା ସଂସାର ଝଞ୍ଜାଳମୟ। ସଂସାରରେ ମଣିଷ ମନ ବୁଝିବା କଷ୍ଟକର। ଲୋଭମୋହ ମଣିଷକୁ ଅନ୍ଧକରିଦିଏ। ପୁଣି ସେହି ମଣିଷ ତ ମଣିଷଭଳି ବଞ୍ଚିରହୁଛି। ନବୀନ ତାର ମନକୁ ଦୃଢ଼ନିଶ୍ଚିତ କଲା। ମଦୁଆ ସାଙ୍ଗଠୁ ବାପାଙ୍କୁ ସେ ନିଶ୍ଚୟ ଦୂରେଇରଖିବ। ମନରେ ତାର ଦୃଢ଼ ସଂକଳ୍ପ ସୃଷ୍ଟି ହେଲା। ଆତ୍ମ-ବିଶ୍ୱାସରେ ମନରେ ତାର ହସ ଚହଟିଆସିଲା।

## (୪)

ଆଜିକୁ ଦଶ-ବାର ଦିନ ହେବ ଗୋବିନ୍ଦ ଖଟରେ ପଡ଼ିରହିଛି। ମଦ ଟିକିଏ ମଧ ପିଇନାହିଁ। ଅବଶ୍ୟ ଦିନେ ଦିନେ ନିଦବାଉଳାରେ ମଦ ପିଇବାପାଇଁ ପାଟିକରେ; ମାତ୍ର ତାର ପରମୁହୂର୍ତ୍ତରେ ସମସ୍ତଙ୍କୁ ଦେଖି ନୀରବ ହୋଇଯାଏ। ଏ ବେମାର ତା'ର ମଙ୍ଗଳ କରିଛି। ନବୀନ ଭାବିଲା— ଏତେଦିନ ମଦ ନ ପିଇ ବଞ୍ଚିପାରିଲେ। ମଦ ନପିଇଲେ ମରିଯିବେ ବୋଲି କେତେ ପାଟିକରୁଥିଲେ। କାହିଁ, ତାଙ୍କର ତ କିଛି କ୍ଷତି ହେଲାନାହିଁ? ଡେରି ହେଲେ ମଧ ଔଷଧ କାଟୁକଲା। ନବୀନ ମନେ ମନେ ସେହି ସର୍ବଶକ୍ତିମାନ୍ ଗାଁଦେବୀଙ୍କୁ ଦୁଇହାତ ଯୋଡ଼ି ନମସ୍କାରକଲା। ମୁଣ୍ଡ ଆପଣାଛାଏଁ ଭକ୍ତିରେ ନଇଁଆସିଲା। ଭାବବିହ୍ୱଳ ହୋଇ ତା' ତୁଣ୍ଡରୁ ବାହାରିପଡ଼ିଲା— ''ମା', ମୋ' ବାପାଙ୍କୁ ମଦରାକ୍ଷସ ହାତରୁ ବଞ୍ଚାନ୍ତୁ।''

ନବୀନ ଆଖିରୁ ଦୁଇଧାର ଲୁହ ଗଡ଼ିପଡ଼ିଲା। ଭାବାବେଗରେ ତାର ଅନ୍ତର ଭିତରେ କୋହ ଜାତହେଲା। ସେ ସକେଇ ସକେଇ କାନ୍ଦିପକାଇଲା।

ପୁଅର କାନ୍ଦ ଶୁଣି ରେଖା ପାଖକୁ ଆସି ତା'ର ଶୁଖିଲା କାନ୍ଦୁରା ମୁହଁକୁ ଅନାଇ ଆଶ୍ଚର୍ଯ୍ୟ ହୋଇ ନିଜ ପଣତକାନିରେ ପୁଅର ଆଖି ଲୁହ ପୋଛିଦେଇ ବ୍ୟାକୁଳ ହୋଇ କହିଲା— ''ଏମିତି କ'ଣ ବାୟାଙ୍କ ଭଳି ହେଉଛୁରେ? ବାପା

ତୋର କ'ଣ ଭଲହୋଇଯିବେନି ? ଜ୍ୱର ଟିକିଏ ହୋଇଛି; କମି ଆସିଲାଣି । ଏଥର ସବୁ ଠିକ୍‌ହୋଇଯିବ । ଭୟକରିବାର କିଛି ନାହିଁ ।'' —ଏତକ କହି ପୁଅକୁ ଦମ୍ଭଦେଲା— ''ବୁଝିଲୁ ବାପ, ଆମ ଗାଁ ବଇଦର ହାତଯଶ ଅଛି । ଯେଉଁଠି ସେ ମନଦେଇ ହାତଦିଅନ୍ତି, ସେଇଠି ସବୁ ମଙ୍ଗଳ ହୁଏ ।'' —ଏତକ କହି ତା' ପୁଅର ମୁଣ୍ଡ ବାଳକୁ ସାଉଁଳି ତାକୁ ସାନ୍ତ୍ୱନାଦେଲା । କହିଲା— ଏମିତି ଆଉ କେତେଦିନ ବସିରହିଥିବୁ ? ଆଜି ତୁ ଟିକିଏ ଡଙ୍ଗରକୁ ଯାଇ ବୁଲିଆ । ବାପ ଦେହ ଭଲହୋଇଆସିଲାଣି । ଡଙ୍ଗରକୁ ଗଲେ ମନ ତୋର ବଦଳିଯିବ ।

—''ନାହିଁ ମା', ମୁଁ ଆଜି ଡଙ୍ଗରକୁ ଯିବିନାହିଁ । ମୋର ଜଣେ ସାଙ୍ଗ କାଳିଆକୁ କହିଦେଇଛି, ମୋର ଗାଈଗୋଠ ସବୁ ସେ ଦେଖାରଖା କରିବ । କିଛି ଅସୁବିଧା ନାହିଁ । ବାପାଙ୍କ ଦେହ ଭଲହୋଇଗଲେ ମୁଁ କ'ଣ ମୋର କାମରେ ଯିବିନାହିଁ ?

ରେଖା ସିନା ପୁଅର ମନ ବୁଝାଇବାପାଇଁ ଏତକ କହିଦେଲା— ସତରେ ସେ ନଥିଲେ ଆଜି କ'ଣ ଏତେ କାମ କିଏ ଉଠାଇଥାଆନ୍ତା ? ବଇଦ ଡାକି ରୋଗ ନିଦାନ କରି ଔଷଧଟିକକ ଦେବା ବଡ଼ କାମ । ସେତକ ଭାଗ୍ୟରେ ପୁଅପାଇଁ ଯୁଟିପାରିଲା । ନହେଲେ ଏମିତି ଅନେକ ରୋଗୀ ଗାଁମାନଙ୍କରେ ପଡ଼ିରହିଛନ୍ତି । ତାଙ୍କପାଇଁ କିଏ ଦେଖିବାକୁ ନାହିଁ । ରୋଗରେ ସଢ଼ିଗଲେ ମଧ ଔଷଧ ଟିକିଏ ମିଳେନାହିଁ । ଏବେ ବି ସବୁ ସେହି ଦଇବ ଭରସା । ଗୁମା, ଯାନି, ଦେବତା ଉପରେ ଅଟଳ ବିଶ୍ୱାସ । ଔଷଧ ନହେଲେ ମଧ ସବୁ ଚଳିଯାଉଛି ।

ଝଡ଼ା-ଫୁଙ୍କାରେ ରୋଗ ନିଦାନ ହୋଇ, ସେଥିରେ ବିଶ୍ୱାସ କରି ରୋଗୀ ବଞ୍ଚିଯାଉଛି ଅବା ଅକାଳ ମୃତ୍ୟୁ ବରଣ କରୁଛି । ଅଭାବ ମଣିଷକୁ ଆଜି ଅନ୍ଧବିଶ୍ୱାସରେ ବୁଡ଼ାଇ ରଖିଛି । ଅଭାବ ପ୍ରଗତି ପଥରେ ବିରାଟ ଅନ୍ତରାୟ ସୃଷ୍ଟିକରିଚାଲିଛି । ଅଭାବ ଶିକ୍ଷାର ପ୍ରସାରରେ ପ୍ରତିବନ୍ଧକରୂପେ ଦେଖାଦେଇଛି । ତେଣୁ ଅଭାବଗ୍ରସ୍ତ ମଣିଷ ଆଜି ମଧ, ବିଂଶଶତାବ୍ଦୀର ଏତେ ପ୍ରଗତି ସତ୍ତ୍ୱେ, ଅନ୍ଧବିଶ୍ୱାସକୁ ମନରେ ଦୃଢ଼ ଗଣ୍ଠିଦେଇ ବାନ୍ଧିରଖିଛି । ଏଥିରୁ ମୁକ୍ତନହେଲେ ନୂଆ ଆଲୁଅର ସ୍ୱପ୍ନ ସ୍ୱପ୍ନରେହିଁ ରହିଯିବ । ବିଶ୍ୱାସକୁ ସିନା ଯୁକ୍ତିବଳରେ ବଦଳାଇହେବ, ବୁଝାଇହେବ; କିନ୍ତୁ ଅନ୍ଧବିଶ୍ୱାସକୁ ବଦଳାଇବା କଷ୍ଟକର । ଯୁଗଯୁଗଧରି ଜମାଟ ବାନ୍ଧିହୋଇ ଯାହା ମଣିଷ ମନ ଭିତରେ ରହିଯାଇଛି, ପୁରୁଷାନୁକ୍ରମେ ବାପ, ଅଜା, ଗୋସାଇଁବାପ ଅମଳରୁ ଯାହା ଚଳିଛି, ଯାହା ସେମାନେ ବୁଝିଛନ୍ତି, ତାକୁହିଁ ସେମାନେ ପୁଅ, ନାତି, ଅଣନାତିକୁ ବୁଝାଇ ଯାଇଛନ୍ତି । ମଣିଷ ମନରେ ଥରେ ଯାହା ଛାପ ରହିଯାଏ, ପିଲାଦିନରୁ ମନରେ ବସାବାନ୍ଧି ରହିଯାଇଥାଏ, ସେହି ଛାପଟିକକ ପୁରୁଷାନୁକ୍ରମେ ଗଡ଼ିଚାଲିଥାଏ ।

ମଣିଷ ଯେତେ ଯେତେ ଶିକ୍ଷିତ ହେଉଥିଲେ ମଧ୍ୟ ସେହି ଅନ୍ଧବିଶ୍ୱାସଟିକକ ଏବେ ମଧ୍ୟ ସମାଜରେ ଚେର ମାଡ଼ି ପଡ଼ିରହିଛି। ବରଗଛ ଚେର ଗଭୀରରୁ ଗଭୀରକୁ ଗଲାଭଳି ଏବଂ ବିସ୍ତାରିତ ହେଲାଭଳି ଆଜି ମଧ୍ୟ ମଣିଷସମାଜରେ ଅନ୍ଧବିଶ୍ୱାସର ଚେର ବଢ଼ିଚାଲିଛି।

ଗୋବିନ୍ଦ ମା'-ପୁଅଙ୍କ କଥା ଦୂରରେ ବସି ଶୁଣୁଥାଏ। ଦୁର୍ବଳ ଶରୀର। ସକାଳର କଅଁଳିଆ ଖରା ଦେହରେ ବାଜି ତାକୁ ଆରାମ ଲାଗୁଥାଏ। ରେଖା ତା' ପାଖକୁ ଆସି ମୁଣ୍ଡରେ ହାତ ବୁଲାଇଆଣି କହିଲା– ''ଖରାଟାରେ ବେଶୀ ସମୟ ବସିଲେ ମୁଣ୍ଡ ବୁଲାଇବ। ଚାଲ, ଭିତରେ ବସିବ।''

–''ଘରେ ବସି ବସି ମନ ଚିଟା ଲାଗୁଛି। ଏଠି ଖରାଟା ଭଲଲାଗୁଛି।'' ଗୋବିନ୍ଦ ତାର ସ୍ତ୍ରୀର ମୁହଁକୁ ଅନାଇଦେଇ ଦୁର୍ବଳ ମୁହଁରେ ହସ ଫୁଟାଇ କହିଲା– ''ଆଜି ମୋତେ ଭାତଗଣ୍ଡିଏ ଖାଇବାକୁ ଦିଅ। ଅନେକଦିନ ହେବ ଭାତଗଣ୍ଡିଏ ପେଟରେ ପଡ଼ିନାହିଁ। ଶାଗୁ, ବାର୍ଲି ଖାଇ ଖାଇ ଚିଟାଲାଗିଲାଣି।''

ରେଖାର ମୁହଁରେ ହସ ଚହଟି ଆସିଲା। ସ୍ୱାମୀ ତାର ଅନେକଦିନ ପରେ ଭାତ ଖାଇବାପାଇଁ ମନ ବଳାଇଛନ୍ତି।

–''ଆଜି ଦୋ'ରନ୍ଧା ଭାତଗଣ୍ଡିଏ ଖାଇବ; ବଇଦ କହିଯାଇଛନ୍ତି। ତା' ସହିତ ଅମୃତଭଣ୍ଡା ସିଝା ତରକାରି ଖାଇବାପାଇଁ କହିଛନ୍ତି। ଚାଲ, ତୁମେ ସେହି ଖଟରେ ଶୋଇପଡ଼ିବ। ବହୁତବେଳ ହେଲା, ଖରାଟାରେ ବସିଲଣି।''

ଏତେବେଳେ ନବୀନ ଆସି ତା' ବାପକୁ ଧରିଆଣି ଖଟରେ ଶୁଆଇଦେଲା। କହିଲା– ''ମା', ତୁ ଗଲୁ ବାପାଙ୍କପାଇଁ ଭାତ ଗଣ୍ଡିଏ ରାନ୍ଧିଆଣିଦେବୁ। ମୁଁ ବାପାଙ୍କ ପାଖରେ ବସିରହିଛି।

ନବୀନ ତାର ବାପର ଶେଥା ମୁହଁକୁ ଚାହିଁରହିଲା। ଗୋବିନ୍ଦ ତାର ପୁଅ ମୁହଁକୁ ଅନାଇ ମନରେ ଆତ୍ମତୃପ୍ତି ଲାଭକରୁଥାଏ। ବିପଦ-ଆପଦରେ ପୁଅଟିଏ ଥିଲେ ବାପ ମନରେ କେତେ ଦମ୍ଭ ଆସେ। ତା'ରି ପୁଅ, ପାରିଲା ପୁଅ; କେଡ଼େଟିଏ ହେଲାଣି। ପୁଅକୁ ପାଖରେ ବସିବାପାଇଁ କହି ସେ ତାର ମୁହଁକୁ ଅନାଇରହିଲା। ନବୀନ ବାପ ପାଖରେ ବସି ଖଟର ଚାଦର ସଜାଡ଼ିଦେଲା। ଏଇ ତା'ରି ପୁଅ। ଏ ତା'ର କୁଳପ୍ରଦୀପ; ତା'ରି ଭଲ ସେ ମନାସିଛି। ତା'ର ଆଗରେ ତା' କୁକର୍ମ କେତେ ଖୋଲିଯାଇଛି। ତା' ମା'କୁ କେତେ ଗାଳି ମାଡ଼ ଦେଇଛି। ତାକୁ ଦିନଟିଏ ମଧ୍ୟ ଶରଧାରେ ପାଖରେ ବସାଇନାହିଁ। ମଦନିଶାରେ ଭୋଳହୋଇଯାଇଥିଲି। ଛି ଅ... ଆଉ ସେ ପାପ, ନିଆଁଲଗା ନିଶା ଛୁଇଁବିନାହିଁ। ଏତେଦିନ ହେଲା ମଦନପିଇ ତ ବଞ୍ଚିପାରିଲି। ରୋଗରେ ପଡ଼ି ମରିଯିବି ବୋଲି କେତେ ଆକୁଳ ବିକଳ ହେଉଥିଲା। କାହିଁ, ତାର ତ

କିଛି ହେଲାନାହିଁ? ସେ ତ ମରିନି, ସେ ତ ବଞ୍ଚିଛି। ସେ ଆଉ ନିଶା ଛୁଇଁବ ନାହିଁ ବୋଲି ମନକୁ ଦୃଢ଼କଲା। ମନର ମୂଳେ ସବୁ। ମନ ଦୃଢ଼ହେଲେ ଆପଣା ଛାଏଁ ସବୁ ଠିକ୍ ହୋଇଯିବ।

ମନେ ମନେ ଏମିତି କେତେ କ'ଣ ଭାବିଚାଲିଲା। ସବୁ ଭାବନାକୁ ମନ ଭିତରେ ରଖି ପୁଅକୁ ତାର କୁଣ୍ଢାଇ ଆତ୍ମ-ତୃପ୍ତି ଲାଭକଲା। ଆଖିରୁ ତାର ଆନନ୍ଦାଶ୍ରୁ ଗଡ଼ିପଡ଼ିଲା। ନବୀନ ବାପର ଛାତିରେ ମୁହଁ ଗୁଞ୍ଜି କେବଳ ପ୍ରଶ୍ନିଳ ଦୃଷ୍ଟିରେ ତା' ବାପର ପାଣ୍ଡୁର ମୁହଁକୁ ଚାହିଁରହିଲା।

## (୫)

ଅନେକ ଦିନ ହେବ, କିଆ ପରିଆ ଡଙ୍ଗରକୁ ଛେଳି ଅଡ଼େଇ ଅଡ଼େଇ ଆସୁନାହିଁ। କିଆର ତ ଡଙ୍ଗରକୁ ଆସିବାରେ ଏଭଳି କେବେ ବ୍ୟତିକ୍ରମ ହୋଇନଥିଲା। ନବୀନ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା। କିଆ ଏକ ଚଳଚ଼ଞ୍ଚଳା ପାହାଡ଼ୀ କନ୍ୟା। ଝରଣାଟିଏ ସ୍ୱଚ୍ଛ, ସାବଲୀଳ ଗତିରେ କଳକଳ ନାଦରେ ବୋହିଗଲାଭଳି କିଆ ମଧ ଚଳଚ଼ଞ୍ଚଳ ଗତିରେ ବନଭୂମିରେ ନୂପୁର ବଜାଇ ଏ ପାହାଡ଼ରୁ ସେ ପାହାଡ଼କୁ ଡେଇଁବୁଲୁଥାଏ; କୌଣସି ବାଧା-ବିଘ୍ନକୁ ଭ୍ରୂକ୍ଷେପ ନକରି ଗୋଟିଏ ପଥରରୁ ଆରପଥରକୁ ଡେଇଁ ଡେଇଁ ଚାଲିଯାଉଥାଏ। ସେହି ଚଳଚ଼ଞ୍ଚଳା କିଆକୁ ଅନେକ ଦିନ ହେଲା ନବୀନ ଦେଖିନପାରି ମନ ତାର ଛଟପଟ ହେଉଥାଏ।

ସେ ମଧ ଅନେକ ଦିନ ପରେ ବଣକୁ ଆସିଛି। ତା' ମନରେ ଅନେକ ପ୍ରଶ୍ନ ଦେଖାଦେଉଥାଏ। ତାର ଦେହ କ'ଣ ଅସୁସ୍ଥ ହୋଇଯାଇଛି କି? ତା' ବାପର ସେବାଯତ୍ନ ପରେ ବଣକୁ ଆସି କିଆକୁ ନଦେଖି ମନ ତାର ଉଦ୍‌ବିଗ୍ନ ହୋଇଉଠିଲା। ମନରେ କେତେ କ'ଣ ଭାବିଚାଲିଥାଏ। ତାର ଛେଳି ମାଳତୀ ଚରାଉଥାଏ। ମାଳତୀ ତାର ପିଲାଦିନର ସାଥୀ। ସେ ତାର ଭଲମନ୍ଦ ସବୁକଥା ବୁଝେ। ସେ ନ ଆସିପାରିବା ଯୋଗୁଁ ତାର ସାଙ୍ଗ କାଳିଆ ଯେମିତି ତାର ଗାଈଗୋଠକୁ ଜଗିଦେଉଥିଲା।

ମାଳତୀକୁ ଏକୁଟିଆ ଦେଖି ନବୀନ ତାର ଅତି ନିକଟକୁ ଚାଲିଆସି ତାକୁ ପଚ଼ାରିଲା– "ତୁ ତ ଆସୁଛୁ, କିଆ କାହିଁ କି ଆସୁନାହିଁ? ତାର ଦେହପା' କ'ଣ ଭଲ ନାହିଁ କି?"

ମାଳତୀ ପ୍ରଥମେ ଆଶାକରିଥିଲା ଯେ କିଆ ତ ନାହିଁ; ନବୀନ ତା' ସହିତ ଖୁସିଗପ କରିବ, ତାକୁ କେତେ କଥା ପଚ଼ାରିବ। ସେ ମଧ ଏମିତି ଏକ ମଉକା

ଖୋଜୁଥିଲା ତା' ସହିତ ଦୁଇପଦ କଥା ହେବ ବୋଲି। କିଆ ଥିଲେ ସେତକ ସୁବିଧା ମିଳେନାହିଁ। ଏଇନେ ତା' ମନ କେତେ ଖୁସ୍ ଭଲରେ ତା' ସହିତ ଦୁଇପଦ କଥା ହେବ ବୋଲି। ନବୀନକୁ ଏକୁଟିଆ ଦେଖି ତା' ପାଖକୁ କେତେ ଆଶା ନେଇ ସେ ଚାଲିଆସିଥିଲା। ତା' ସହିତ କଥା ହେବା ଦୂରର କଥା, ନବୀନ ତାକୁ ଦେଖୁ ଦେଖୁ କିଆକଥା ପଚାରିଦେଲା; ସତେ ଯେପରି କିଆ ଏକା ଏ ଡଙ୍ଗରକୁ ଆସିଛି, ସେ ଏକା ସବୁକିଛି; ଆଉ କିଏ କିଛି ନୁହନ୍ତି।

ମାଳତୀର ମୁହଁରୁ ସରସତାଟିକକ ଲିଭିଗଲା, ମୁହଁ ଫିକାପଡ଼ିଗଲା। ପ୍ରଥମେ ତା' ମୁହଁରେ ରାଗ ଚହଟିଗଲା। ମନର ରାଗ ମନ ଭିତରେ ରଖି ସେ ପ୍ରଥମେ ଟିକିଏ ଚାହିଁଦେଇ କହିଲା– ''କିଆ ନ ଆସିଲେ ତୋ'ର କ'ଣ ଗଲା ?''

ମାଳତୀ ମୁହଁ ଝିଙ୍କାଡ଼ି ତାକୁ ଏତକ କହି ଅଭିମାନରେ ମୁହଁ ବୁଲାଇଦେଲା। ନାରୀ ସଦାବେଳେ ଅଭିମାନିନୀ। ନିଜ ଛଡ଼ା ଅନ୍ୟର ପ୍ରଶଂସା ଅବା କଥା ଶୁଣିବାକୁ ସେ ଆଗ୍ରହୀ ହୋଇନଥାଏ। ଏଭଳି ପରିସ୍ଥିତିରେ ମାଳତୀ ଅବା କିଆ କଥା ନବୀନକୁ କହି ତା' ମନର ଉତ୍‌କଣ୍ଠାକୁ କେମିତି ଲାଘବ କରନ୍ତା ? ନାରୀ ସଦାବେଳେ ଈର୍ଷାପରାୟଣା। ସେହି ଈର୍ଷା ମନୋଭାବ ମାଳତୀ ମୁହଁରେ ଫୁଟିଉଠିଲା; ମୁହଁ ଫଣଫଣ କରି ସେ ନବୀନକୁ ଅନାଇରହିଲା।

ନବୀନ ଆଶ୍ଚର୍ଯ୍ୟ ହୋଇ ମାଳତୀର ମୁହଁକୁ ଅନାଇ କହିଲା– ''ସେମିତି ପଚାରିଦେଲି ବୋଲି ମୋ' ଉପରେ ତୁ ଏତେ ଖପା ହେଉଛୁ କାହିଁକି ? ମୁଁ କ'ଣ ଭୁଲ କଥାଟାଏ ପଚାରିଦେଲି କି ? ତୋର ଏତେଦିନର ସାଙ୍ଗ। ତା' ଭଲମନ୍ଦ ପଚାରିବା କ'ଣ ଭୁଲ କି ?''

ମାଳତୀର ଚାହାଣି ଏବଂ ଉତ୍ତରରେ ନବୀନର ମୁହଁ ଝାଉଁଳିଗଲା। ମାଳତୀ ବୁଝିପାରିଲା, ତା' କଥା ଟିକିଏ ଅବାଗିଆ ହୋଇଗଲା ପରା। ନବୀନକୁ ଆଘାତ ଦେବା ତାର ଉଦ୍ଦେଶ୍ୟ ନଥିଲା, ମାତ୍ର କିଆ କଥା ଆଗ ତା' ତୁଣ୍ଡରୁ ଶୁଣୁଶୁଣୁ ସେ ଜଳିଉଠିଲା। ରାଗ, ଅଭିମାନ ଏବଂ ଈର୍ଷାରେ ସେ ପଦଟିଏ କହିଦେଲା। ସେ ଟିକିଏ ପସ୍ତାଇହେଲାଭଳି କହିଲା– ''ନାହିଁ ନାହିଁ, ମୁଁ ସେମିତି କହିଦେଲି। ତୋ' ମନରେ କଷ୍ଟ ହେଲା କି ?''

–''ମୋ ମନରେ କିଆଁ କଷ୍ଟ ହେବ– ତୁ ଜାଣିଥିବୁ ବୋଲି ପଚାରିଦେଲି। ସମସ୍ତେ ତ ଆସୁଛନ୍ତି; କିଆ କାହିଁକି ଆସୁନାହିଁ ? ତା' ଛେଳି ତୁ ଚରାଉଛୁ। ତା' ଦେହପା' କ'ଣ ଖରାପ ଅଛି କି ?''

ନବୀନର କଥାଟାକୁ ହାଲୁକା କରି ସତରେ କଥାଟା ଜାଣିବାକୁ ଚେଷ୍ଟା କଲା। ମାଳତୀଠୁଁ ସବୁକଥା ଜଣାପଡ଼ିବ, ଏହି ଆଶା ନେଇ ତାକୁ ବୁଝାଇଲା ଭଳି କହିଲା।

ନବୀନ ଭଳି ଏକ ଶାନ୍ତଶିଷ୍ଟ ମଣିଷ ସମୟେ ସମୟେ ଏଭଳି ଚୌକଣ୍ଡା କଥା କହିପାରେ, ମନକୁ ବୁଝାଇଲା ଭଳି କହିପାରେ, ମାଳତୀ ଭାବିପାରିଲା ନାହିଁ। ମନର ସମସ୍ତ ରାଗ ଅଭିମାନ ଈର୍ଷା ତା'ର ପଦେ କଥାରେ ତା' ମୁହଁରୁ କୁଆଡ଼େ ଛପିଗଲା। ଅଭିମାନରେ ସେ ଯାହା କହିଥିଲା, ନବୀନ ତାକୁ ମନରେ ନଧରି ଟିକିଏ ବି ତା' ଉପରେ ରାଗିଲାନାହିଁ। ସତେ, ନବୀନର ମନ ଏବଂ ହୃଦୟ କେତେ ଉଦାର ! ଶ୍ରଦ୍ଧାରେ ତା' ମନ ଆପଣାଛାଏଁ ତା' ଆଡ଼କୁ ଢଳିଗଲା।

ମାଳତୀ ତାର ବିଷଣ୍ଣ ମୁହଁକୁ ଚାହିଁ, ହସି କହିଲା– "ସେ ଏଇନେ କେତେଦିନ ଆସିପାରିବନାହିଁ।"

ତାକୁ ଲାଜମାଡ଼ିଆସିଲା। କିଆ କଥା ନବୀନ ଆଗରେ କହିବାକୁ ତାକୁ ସଂକୋଚ ମାଡ଼ିବସିଲା। ନବୀନକୁ କଣେଇ ଚାହିଁଲେ ହସି ହସି ଦୌଡ଼ିପଳାଇଲା।

ମାଳତୀର ଏଭଳି ଚାହାଣି ଏବଂ ହସିବା ଢଙ୍ଗ ଦେଖି ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା। ଘଟଣାର ରହସ୍ୟ କିଛି ବୁଝିପାରିଲାନାହିଁ। ଏହି ଅଳ୍ପକ୍ଷଣ ପୂର୍ବରୁ ଯେ ରାଗ ଅଭିମାନରେ ମୁହଁ ଫୁଲାଇ କଥାହେଉଥିଲା, ସେହି ଝିଅ ପୁଣି ତାର ପରମୁହୂର୍ତ୍ତରେ ଲାଜ ଲାଜ ଚାହାଣିରେ ହସି ହସି ଦୌଡ଼ିପଳାଇବା ତାକୁ କେମିତି କେମିତି ମନେହେଲା।

ସେ ଏ ରହସ୍ୟ କିଛି ବୁଝିପାରିଲାନାହିଁ। ତା' ମନରେ ନାନା ପ୍ରଶ୍ନ ଖେଳିଯାଇଥାଏ; ମାତ୍ର ତାର କୌଣସି ସୂତ୍ର ଧରିପାରୁନଥାଏ। ମନ ତାର ଚଳଚଞ୍ଚଳ ହୋଇଉଠୁଥାଏ। କିଆର ରୂପ ତା' ଆଗରେ ଝଲସିଉଠୁଥାଏ। ସତରେ ସେ ତାର କିଏ ? ସେ ତାକୁ ଏତେ ଭାବିହେଉଛି କାହିଁକି ?

ସେ ତାର କେହି ନହେଲେ ମଧ୍ୟ, ତାକୁ ଦିନଟିଏ ନଦେଖିଲେ ମନ ଛଟପଟ ହୁଏ; ଅଜାଣତରେ ତା'ରି କଥା ଭାବିହେଉଥାଏ। ସତେ ଯେପରି କିଆ ବିନା ବଣ ପାହାଡ଼ ନିଛାଟିଆ ନିଛାଟିଆ ମନେହେଉଥାଏ। କିଆର ଅନୁପସ୍ଥିତିରେ ବଣ-ପାହାଡ଼ର ରୂପରଙ୍ଗ ଭିନ୍ନେ ଭିନ୍ନେ ଜଣାପଡୁଛି। କିଆ ହାତରେ ଛୋଟ ବାଡ଼ିଟିଏ ଧରି ନାଚିନାଚି କେତେବେଳେ କେଉଁ ଗୀତ ଗାଇ ବଣ-ପାହାଡ଼ କମ୍ପାଇଦେଉଥିବ। ଗୀତ ଗାଇ ଗାଇ ଏମିତି ପାଟି କରି କରି ଆସି ମାଳତୀକୁ ଥାପୁଡ଼ାଟିଏ ମାରିଦେଉଥିବ; ମାଳତୀ ରାଗିଯାଇ ଦୌଡ଼ିଦୌଡ଼ି ତାକୁ ମାଡ଼ ଶୁଝାଉଥିବ।

କେତେବେଳେ ପବନ ଲହରୀ ସହ ତାଳ ପକାଇ ସୁ-ମଧୁର କଣ୍ଠସ୍ୱରରେ ତାର ସାଙ୍ଗମାନଙ୍କ ସହ ମିଶି ହାତକୁ ହାତ ଛନ୍ଦି, ଅଣ୍ଟାରେ ହାତ ଦେଇ ଗାଉଁଲି ଗୀତ ଗାଇଚାଲିଥିବ। ତାର ସେହି ମଧୁର କଣ୍ଠସ୍ୱରରେ ବନଭୂମି ମୁଖରିତ ହୋଇଉଠୁଥିବ। ତାର ମଧୁର ସ୍ୱର କ୍ଷଣିକପାଇଁ ସମସ୍ତଙ୍କୁ ତନ୍ମୟ କରିଦେଉଥିଲା।

ଗାଈ ଛେଳି ତାର ଏହି ମଧୁର ସ୍ୱରରେ ତନ୍ମୟ ହୋଇ ଚରିବା ଛାଡ଼ିଦେଇ ଏକଲୟରେ ତାକୁ ଚାହିଁରହିଥାନ୍ତି ।

ତା'ର ଉପସ୍ଥିତିରେ ଜଙ୍ଗଲରେ ଏକପ୍ରକାର ଜୀବନ ସଂଚାର ହୋଇଉଠେ । ବନଭୂମି ସତରେ ଯେପରି ପୁଲକିତ ହୋଇପଡ଼େ । ତାର ତନୁ ମନରେ ଭରିଯାଇଥାଏ ଯୌବନର ଜୁଆର । କିଆ ସଲଜ୍ଜ ଚାହାଣି ନବୀନ ମନରେ ସୃଷ୍ଟିକରେ ଅପୂର୍ବ ପୁଲକ । ଛେଳି ଅଡ଼େଇ ଦୌଡ଼ି ଦୌଡ଼ି ଥକିଗଲେ, ଯେତେବେଳେ ତାର ସାଙ୍ଗସାଥୀମାନେ କିଏ ନଥିବା ଦେଖି, ବନକୁସୁମ ପାଖୁଡ଼ାର ଟକିଲିକୁ ଛେପ ଲଗାଇ ମୁଣ୍ଡ କପାଳରେ ଲଗାଇ କନିଆ ରୂପରେ ନିଜକୁ ଭାବି ପୁଲକିତ ହୋଇ ଆନନ୍ଦରେ ନାଚିଉଠୁଥାଏ । ସେହି ଚଳଚଞ୍ଚଳା କିଆର ଅନୁପସ୍ଥିତି ବାସ୍ତବିକ୍ ନବୀନକୁ ଆଜି ଆଶ୍ଚର୍ଯ୍ୟ କରିଦେଇଥାଏ ।

ଏଣେ ମାଳତୀର ରହସ୍ୟଭରା ଚାହାଣି ଏବଂ ଉତ୍ତର ଶୁଣି ସେ ଆହୁରି ଭାବବିହ୍ୱଳ ହୋଇପଡ଼ିଥାଏ । ଏତେଦିନପରେ ନବୀନ ଆଜି ଉପଲବ୍ଧି କରିପାରିଲା, କିଆର ଅନୁପସ୍ଥିତି ବାସ୍ତବିକ ତା'ମନକୁ ଚହଲାଇଦେଇଛି, ତା' ମନରେ ଭାବନାର ସୁଅ ଖେଳାଇଦେଇଛି, ମନରେ ସୃଷ୍ଟିକରିଛି କେତେ ଯେ ଅଜଣା ପ୍ରଶ୍ନ ।

ଏଭଳି ଭାବି ଭାବି କେତେ ଯେ ସମୟ ବସିରହିଲା, ସେ ମଧ ଜାଣିପାରିଲା ନାହିଁ । ପାହାଡ଼ର ଆରପଟେ ସୂରୁଯଦେବତା ବୁଡ଼ିଯିବାପାଇଁ ସଜହେଲେଣି । ତାଙ୍କ ନାଲି ଟହଟହ ମୁହଁ ପାହାଡ଼ ଖୋଲରେ ଲୁଚିଯିବ । ମା' କୋଳକୁ ଫେରିଯାଉଥାନ୍ତି ବିଶ୍ରାମ ନେବାପାଇଁ । ନବୀନ ବସିବା ଜାଗାରୁ ଉଠିପଡ଼ି ଏକ ଲୟରେ ସୂରୁଯଦେବତାଙ୍କୁ ଅନାଇରହିଲା ତନ୍ମୟହୋଇ ।

(୬)

ଅଚାନକ ତା' ବାପ ଦେହ ପୁଣି ଅସୁସ୍ଥ ହୋଇପଡ଼ିବା ଫଳରେ ନବୀନ ଡଙ୍ଗରକୁ ଆସିବା ସମ୍ଭବ ହେଲାନାହିଁ । ଅନେକ ଦିନ ପରେ ବାପ ତାର ଗାଧୋଇବ ବୋଲି ଇଚ୍ଛାକଲା । ମା' ମଧ ପାଣି ନଖ-ଉଷୁମ ଗରମ ଥାଇ ବାପକୁ ଗାଧୋଇଦେଲା । ସତକୁସତ ପୁଣି ସନ୍ଧ୍ୟାବେଳକୁ ଜର ମାଡ଼ିଆସିଲା । ବୈଦ୍ୟ ଆସି ଔଷଧ ଦେବାପରେ ସବୁ ଠିକ୍‌ଠାକ୍ ହେଲା । ଦୁର୍ବଳ ଶରୀର । ଦେହରେ ବଳ ଫେରିଆସିବାକୁ ଡେରିଲାଗିବ । ଔଷଧ ନିୟମିତ ଠିକ୍ ସମୟରେ ଖାଇବାକୁ ପରାମର୍ଶ ଦେଇ ଦେହକୁ ଜଗିରଖି ଚଳିବାକୁ ବୈଦ୍ୟ କହାଇଦେଇ ଯାଇଛନ୍ତି । ତେଣୁ ନବୀନ ତା' ବାପ ପାଖରେ କିଛିଦିନ ପୁଣି ଜଗିରହିଲା ।

ବାପ ଦେହ ଭଲହୋଇଗଲା ପରେ ପୁଣି ସେ ତାର ଗାଈଗୋଠ ଧରି ବଣକୁ ଚାଲିଆସିଲା ।

ଅନେକଦିନ ହେବ ସେ ଡଙ୍ଗରକୁ ଆସିନଥାଏ । ତାର ସାଙ୍ଗ କାଳିଆ ଗାଈ ଅଡ଼େଇବାରେ ବ୍ୟସ୍ତଥାଏ । ଛେଳିପଲ ଧରି କିଆ ଧୀର ମନ୍ଥର ଗତିରେ ଛେଳି ଅଡ଼େଇ ସେହି ଗଛମୂଳରେ ପହଞ୍ଚିଗଲା । ନବୀନ ତାକୁ ଦେଖି ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା । ଅନେକଦିନ ପରେ ତାକୁ ସେ ଦେଖୁଛି; କିଆ ମଧ୍ୟ ଅନେକ ଦିନ ପରେ ନବୀନକୁ ଦେଖୁଛି ।

ନବୀନକୁ ମନେହେଲା ଆଜି ଯେପରି ସେ ନୂଆକରି କିଆକୁ ଦେଖୁଛି । ମୁହଁରେ ହଳଦୀ ମାଖିଥିବା ଯୋଗୁଁ ମୁହଁ ତାର ସତେଜ ହୋଇ ଚହଟିଉଠୁଥାଏ । ତାକୁ ସେ ଅପଲକ ନୟନରେ ଅନାଇରହିଲା ।

ନବୀନ ତାକୁ ଏମିତି ଅନାଇରହିଥିବା ଦେଖି କିଆ ଲାଜେଇଗଲା; ମୁହଁ ତଳକୁ କରିଦେଲା । ଆନନ୍ଦର ତରଙ୍ଗ ତା' ମୁହଁରେ ଚହଲିଗଲା । ଲାଜ ଲାଜ ମୁହଁ କରି ଛିଡ଼ାହୋଇରହିଲା ।

ନବୀନ କିଆ ପାଖକୁ ଲାଗିଆସି କହିଲା— ''କ'ଣ ତୋ' ଦେହପା' ଠିକ୍ ନଥିଲା କି ? ତୁ ତ କାହିଁ କେତେଦିନ ହେଲା ଆସୁନଥିଲୁ ?''

କିଆ ଟିକିଏ ତା' ମୁହଁକୁ ଚାହିଁ, ହସିଦେଇ ଟିକିଏ ଘୁଞ୍ଚିଯାଇ ଦୂରରେ ଠିଆହେଲା; କିଛି କହିଲାନାହିଁ; ମୁଣ୍ଡ ତଳକୁ ପୋତିଦେଲା । ଛିଡ଼ାହୋଇ ଗୋଡ଼ର ବୁଢ଼ା ଆଙ୍ଗୁଠିରେ ମାଟିରେ ଗାର ଟାଣିଲା । କେତେ ଲାଜକଥା; କଅଣ ସେ କହିବ ? ହେତୁକରି ଲାଜରେ ମୁହଁ ତାର ରଙ୍ଗାପଡ଼ିଗଲା । ମା' ତାକୁ କହୁଥିଲା; ଆଉ ବଣକୁ ନଯିବାପାଇଁ । ସେ ଏଥର ବଡ଼ହୋଇଗଲାଣି । ତାର ଛୋଟ ଭଉଣୀ ସେବତୀ ଛେଳି ଚରାଇବାପାଇଁ ଏଥର ବଣକୁ ଯିବ । ସେ ଏସବୁ କିଛି ନବୀନକୁ କହିପାରିଲା ନାହିଁ । ମନକଥା ମନ ଭିତରେ ରହିଯାଉଥାଏ । ମନ ତାର ଲାଜରେ ଝାଉଁଳିଗଲା । କ'ଣ ଏସବୁ କଥା ସେ ନବୀନକୁ କହିପାରିବ ? ସବୁ ଝିଅଙ୍କ ଜୀବନରେ ଯାହା ଘଟିଥାଏ ତାହା ତା' ଜୀବନରେ ମଧ୍ୟ ଘଟିଛି । ସେ ଆଉ ପିଲାଦିନର ଝିଅ ହୋଇ ରହିନାହିଁ— ସେ ବଡ଼ହୋଇଗଲାଣି । ଏଣିକି ସବୁ ଜଗିରଖି ଭଲମନ୍ଦ ବିଚାର କରି ଚଳିବ ।

ସେ ବଡ଼ହୋଇଯାଇଛି । ତା' ମନରେ କୌତୂହଳ ଖେଳିଯାଉଛି । ନବୀନ ଆଗରେ ସେ କେବେ କେଉଁ କଥା ଲୁଚାଇରଖିନଥିଲା । ଯାହା ଦେଖୁଥିଲା, ଯାହା ଶୁଣୁଥିଲା, ଗୋଟି ଗୋଟି ତା' ଆଗରେ କହିଯାଉଥିଲା । ଦୁହେଁ ଏମିତି ଗପଛଳରେ କେତେ କ'ଣ କଥାହେଉଥିଲେ । ମାତ୍ର ସେହି ନବୀନ ତାକୁ ଆଜି ପଚାରୁଛି; ଅଥଚ ସେ କିଛି କହିପାରୁନାହିଁ; କହି ବି ପାରିବ ନାହିଁ । କେତେ

ଲାଜ କଥା । ଏମିତି ସମୟେ ସମୟେ ମଣିଷ ମନର ଗୋପନ କଥାଟିକକ ଅନ୍ୟ ଆଗରେ କହିହୁଏନାହିଁ । ଆଜି ସେହିଭଳି ପରିସ୍ଥିତିରେ କିଆ ପଡ଼ିଯାଇଛି ।

ନବୀନ ତାର ଆହୁରି ନିକଟକୁ ଚାଲିଆସି ତାର ଦୂରେଇରହିବା ଢଙ୍ଗଢ଼ାଙ୍ଗକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲା – ''କ'ଣ, ମୋତେ କଥା କହିବୁ ନାହିଁକି ?''

କିଆ ତାକୁ ଥରେ ଦେଖିଦେଇ ହସିଦେଲା ଏବଂ ଲାଜରେ ଦୌଡ଼ି ଦୌଡ଼ି ସେଠୁ ପଳାଇଗଲା । ନବୀନ କାହୁଁ ବୁଝିପାରିବ ନାରୀ-ଜୀବନର ଏହି ଗୋପନ କଥାଟିକକ ! କିଆ ହସିଦେଇ ଦୌଡ଼ିପଳାଇବା ଦେଖି ସେ ମଧ୍ୟ ଦୌଡ଼ି ଦୌଡ଼ି ଯାଇ ପଛରୁ ତାକୁ ଧରିପକାଇଲା ।

ନବୀନର ହାତ ପରଶ ପାଇ କିଆ ଦେହରେ ଏକ ଶିହରଣ ଖେଳିଗଲା । ସେ ଆଗରୁ କେବେ ଏଭଳି ଅନୁଭବ କରିନଥିଲା । ଆଗରୁ କେତେ ଥର ନବୀନ ତାକୁ ଧରିପକାଇଛି; ମାତ୍ର କେବେ ଏଭଳି ଅନୁଭୂତି ତାର ହୋଇନଥିଲା । ଦେହ ତାର ଶିରିଶିରି କରିଉଠିଲା । ଛାତି ଧଡ୍‌ଧଡ୍ ହୋଇ ଏକ ଅଜଣା ଭୟ ଜାତହେଲା । ଚାରିଆଡ଼କୁ ଏକ ସତର୍କ ଦୃଷ୍ଟି ବୁଲାଇଆଣିଲା – କିଏ କେଉଁଠି ଥାଇ ଦେଖିଦେଲା କି ?

ନବୀନ ତାର ହାତଧରି ଗଛତଳକୁ ଭିଡ଼ି ଭିଡ଼ି ଆଣିଲା ଏବଂ ପଥର ଉପରେ ବସାଇଦେଲା । ଦୁହେଁ ବସିରହି ପରସ୍ପରକୁ କିଛି ସମୟ ଅନାଇରହିଲେ । ଆଜି ନବୀନ ପ୍ରଥମକରି କିଆ ମୁହଁକୁ ସତୃଷ୍ଣ ନୟନରେ ଅନାଇରହିଛି । ଅନ୍ୟଦିନଠୁଁ ଆଜିର ଦୃଷ୍ଟିରେ କେତେ ଯେ ମାଦକତା ଭରିରହିଛି ! ତାର ମନ ଏବଂ ହୃଦୟରେ ଏକପ୍ରକାର ଅପୂର୍ବ ପୁଲକ ସୃଷ୍ଟିହେଉଥାଏ । ନବୀନ ଆଜି ପ୍ରଥମକରି ଦେଖିଲା କିଆର ଅନାବୃତ ତନୁଲତା । ତୃଷାର୍ତ୍ତ ନୟନରେ ସେ କିଛି ସମୟ ଚାହିଁରହିଲା । କିଆ ତାର ଏ ଚାହାଣିକୁ ଆଜି ନୂଆକରି ଦେଖି ଲାଜରେ ଜୁବୁଥୁବୁ ହୋଇଗଲା; ମୁହଁ ତଳକୁ କରି ଦୁଇଆଣ୍ଠୁ ମଧ୍ୟରେ ଛାତି ଏବଂ ମୁହଁକୁ ଲୁଚାଇଦେଲା । ତାର ସର୍ବାଙ୍ଗ ଶରୀରରେ ଏକ ଶିହରଣ ଖେଳିଗଲା । ଛାତି ତାର ଧଡ୍‌ପଡ଼ କରିବାକୁ ଲାଗିଲା ।

ନବୀନ ଭାବବିହ୍ୱଳ ହୋଇ ତାକୁ କେବଳ ଅନାଇରହିଲା । କିଆ ଲାଜରେ କିଛିକ୍ଷଣ ମୁହଁ ପୋତି ବସିରହିଲା ପରେ ଉଠିପଡ଼ି ଦୌଡ଼ିଦୌଡ଼ି ସେଠୁ ପଳାଇଗଲା । ଲାଜରେ ମୁହଁ ତାର ରଙ୍ଗାପଡ଼ିଯାଇଥାଏ ।

ନବୀନ ମନେ ମନେ ଭାବିଲା, ତାକୁ ଏଭଳି ଅନାଇବା ତା'ପକ୍ଷେ ଠିକ୍‌ହେଲାନାହିଁ । କିଆ ମନରେ କଷ୍ଟ ହୋଇଥାଇପାରେ । ସେ ତ କେବେ ତାକୁ ଏଭଳି ଅନାଇନଥିଲା ? ଆଜି ତା'ର କ'ଣ ହେଲା ? ସତେ କ'ଣ ତା' ମୁଣ୍ଡକୁ ଭୂତ ଚଢ଼ିଗଲା ?

ଅନେକ ଦିନ ପରେ ତାକୁ ସେ ଦେଖୁଛି । ଆଜି ତାକୁ କେମିତି ନୂଆନୂଆ

ଜଣାପଡୁଥାଏ । ତାର ମନେହେଲା ଆଗ ଅପେକ୍ଷା କିଆର ଦେହଗଠନ ଆହୁରି ସୁନ୍ଦର ହୋଇଛି; ସତେ ସେ କେତେ ଲୋଭନୀୟ, କେତେ ଆକର୍ଷଣୀୟ ! ତନୁ-ମନରେ ଯୌବନର ନୂତନ ତରଙ୍ଗ ତା'ର ପ୍ରତି ଅଙ୍ଗେ ଅଙ୍ଗେ ଖେଳିଯାଇଛି। କିଆର ରୂପ-ଯୌବନ ଆଜି ତା' ମନରେ ପୁଲକ ସୃଷ୍ଟିକରୁଛି। ଆଗରୁ ଏପରି ତା' ମନରେ କେବେ ଭାବନା ସୃଷ୍ଟିକରିନଥିଲା। ଆଜି ତାକୁ କିପରି ନୂଆ ନୂଆ ମନେହେଉଥାଏ । ମନରେ ତାର ଆନନ୍ଦ-ଉଲ୍ଲାସର ତରଙ୍ଗ ସୃଷ୍ଟିକରୁଥାଏ । ସେ ଭାବବିହ୍ୱଳ ହୋଇଯାଇଥାଏ । ପାହାଡ଼ର କେଉଁ ଗଛ ଉହାଡ଼ରୁ ଏକ ଅଜଣା ଚଢ଼େଇର ମଧୁର ସ୍ୱର-ଲହରୀ ଶୁଭୁଥାଏ ।

ଘର ଭିତରେ କିଆ ଏକୁଟିଆ ବସି କେତେ କ'ଣ ଭାବିଚାଲିଥାଏ । ଆଜି ମନ ତାର ଉଚ୍ଛନ୍ନ ହୋଇଉଠୁଛି। ଭାବନାର ସ୍ରୋତରେ ସେ ଭାସିଚାଲିଛି। ଦେହମନରେ ଅପୂର୍ବ ପୁଲକ ତାର ନବଯୌବନ ଯୁବକ ନବୀନ ଆଖିରେ ପଡ଼ିଯାଇଛି। ଏମିତି ତ ନବୀନ ତାକୁ କେତେ ଥର ଦେଖିଛି; ମାତ୍ର ଆଜିର ସେହି ଦୃଷ୍ଟିରେ ଭରିରହିଛି କେତେ ଅକୁହା କଥା। ମୁହଁକୁ ଦେଖି ମଣିଷ ସବୁକଥା ଜାଣିଯାଏ; ସବୁକଥା ମୁହଁରୁ ସେ ବୁଝିପାରେ– ମୁଖହିଁ ହୃଦୟର ଦର୍ପଣ ।

ଅଳ୍ପ ଦୂରରେ ଶଂଖିବିଲେଇଟିଏ ଗୁରୁଡୁଗୁରୁଡୁ କରି ତା'ର ଲୋମଶ ଶରୀରକୁ ଫୁଲାଉଥାଏ ପୁଣି କମାଇଦେଉଥାଏ । କେତେବେଳେ ନିଶ ଫୁଲାଇ ଗୁରୁଡୁଗୁରୁଡୁ ଶବ୍ଦ କରି ଆଖିମିଟିକା ମାରି କିଆକୁ ଏକଲୟରେ ଅନାଇରହିଥାଏ ।

ତା'ର ଅଳ୍ପ ଦୂରରେ ଛେଳିମାନେ ଖୁଣ୍ଟରେ ବନ୍ଧାହୋଇ ପାଟି ପାକୁଳି କରି ତାକୁ ଅନାଇରହିଥାନ୍ତି। ଛୋଟ ଛୋଟ ଛେଳିଛୁଆମାନେ ମା' ଦୁଧ ପିଇ ଆରାମରେ ଅଗଣା ମଧ୍ୟରେ ଦୌଡ଼ାଦୌଡ଼ି କରି ନିର୍ଭୟରେ ଖେଳ ଲଗାଇଦେଇଥାନ୍ତି। କିଏ ତା' ମା' ପିଠିରେ ଚଢ଼ିଯାଉଥାଏ। ମା' ତାର ପାଟି ପାକୁଳିକରି ଆତ୍ମ-ତୃପ୍ତିରେ ଛୁଆମାନଙ୍କ ଧାଁ-ଦୌଡ଼ ଦେଖୁଥାଏ। ତାର ହଳଦିଆ ମିଶା କଳା ଆଖି ଯୋଡ଼ିକ ଆନନ୍ଦରେ ଅନାଇ ରହିଥାଏ।

ବେଳ ବଢ଼ି ବଢ଼ି ଚାଲିଛି। ସୂର୍ଯ୍ୟ ମଥାନ ଉପରକୁ ଉଠିଆସିଲେଣି। କିଆ ଚୁଲିରେ କାଠ ଲଗାଇଦେଇଛି। କାଠ ଜଳି ଜଳି ପାଉଁଶ ହୋଇଗଲାଣି। ଡେକଚିରେ ପାଣି ଗରମ ହେଉଛି। ପାଣି ଫୁଟିଲେ ଚାଉଳ ପକାଇବ, ପଖାଳ ରାନ୍ଧି ଶାଗ ଖରଡ଼ିବ। ବାପ ମା' ବିଲକୁ ଯାଇଛନ୍ତି; ଫେରିଲେ ଖାଇବେ। ମା' ଯିବା ଆଗରୁ ତାକୁ ତାଗିଦ୍ କରିଯାଇଛି– ସଜ ପଖାଳ କରି ରଖିଥିବୁ।

ସମୟ ଗଡ଼ିଚାଲିଛି ତା'ର ବାଟରେ। ଚୁଲିରେ ନିଆଁ ଜଳି ଜଳି ଶେଷ ହୋଇଗଲାଣି । ପାଣି ଫୁଟି ପୁଣି ଥଣ୍ଡାହୋଇଆସୁଛି। କିଆର ଭାବନାର ଅନ୍ତନାହିଁ– ସେ ଭାବିଚାଲିଛି। ଆଜି ତା' ମନ କେଉଁ ଅଜଣା ରାଇଜରେ ଉଡ଼ିବୁଲୁଛି।

ମନ କେତେ ହାଲକା ଲାଗୁଛି। ତାର ଆଜି ବେଶି ନବୀନ କଥା ମନେପଡ଼ିଯାଉଛି– ତାକୁ ସେ କେମିତି ଲୋଭିଲା ଆଖିରେ ଅନାଇ ରହିଥାଏ; କ୍ଷଣିକପାଇଁ ଆଖିରେ ଆଖି ମିଶିଗଲା। ଅଜାଣତରେ ତା'ର ଦେହରୁ ଅଧା ଲୁଗା ଖସିଯାଇଥାଏ। ନବୀନର ଚାହାଣୀରେ କେତେ ମଧୁରତା ଭରିରହିଥାଏ।

ତା' ଜୀବନର ସେ ଏକ ନୂଆ ଅନୁଭୂତି। ସେଭଳି ଅନୁଭୂତି ଆଗରୁ କେବେ ଆସିନଥିଲା। ମଣିଷର ବୟସ ହେଲେ ମନ ଆପଣାଛାଏଁ ଉଡ଼ିବୁଲେ। ଅଜଣା ରାଇଜର ରାଜକୁମାରକୁ ଭେଟିବାକୁ ମନ ଛନଛନ ହୁଏ। କୁଆଁରୀ ଜୀବନର ପହିଲି ମିଳନ କେତେ ମଧୁମୟ, କେତେ ଆନନ୍ଦଦାୟକ!

ଆଜି ସତେ ସେ କେତେ ଭାବବିହ୍ୱଳ ହୋଇପଡୁଥାଏ। ଦିନକୁଦିନ ତା' ଦେହରେ ପରିବର୍ତ୍ତନ ଘଟିଚାଲିଥାଏ। ସବୁ ଝିଅଙ୍କ ଜୀବନରେ ଏଭଳି ମୁହୂର୍ତ୍ତ ଆସି ପହଞ୍ଚେ। ଦେହର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ମନରେ ତରଙ୍ଗ ସୃଷ୍ଟିକରିଚାଲିଥାଏ।

ନବୀନ ଯେତେବେଳେ ତାର ଅନାବୃତ ଶରୀରକୁ ଲୋଭିଲା ଆଖିରେ ଚାହିଁରହିଥାଏ ସେତେବେଳେ ତା' ଦେହରେ ଏକପ୍ରକାର ଶିହରଣ ଖେଳିଯାଇଥିଲା। ତାର ସର୍ବାଙ୍ଗ ଥରିଉଠିଥିଲା। ତାର ଅଜାଣତରେ ଦେହରୁ ଅଧାଲୁଗା କେତେବେଳେ ଖସିଗଲା, ସେ କିଛି ଜାଣିପାରିଲାନାହିଁ।

ସେହି ମୁହୂର୍ତ୍ତର କଥା ଭାବି ଭାବି ଲାଜରେ କିଆ ସଢ଼ିଯାଉଥାଏ। ଅଜାଣତରେ ତାର ପାଟିରୁ ବାହାରିପଡ଼ିଲା– କେଡ଼େ ଲାଜ କଥା, ନବୀନ ତାକୁ କ'ଣ ବୋଲି ଭାବିଥିବ? ହେଲେ ସେ ତାକୁ ଏଭଳି ଅନାଇବା ତାର ଭୁଲ ନୁହେଁ କି? ନିଜେ ଠିକ୍ ଭାବରେ ଲୁଗାପିନ୍ଧିଥିଲେ ତାର ଛାତିରୁ ଲୁଗା ଖସିଯାଇନଥାନ୍ତା; ଲୁଗା ଖସିନଥିଲେ ନବୀନ ତାକୁ ଏଭଳି ଅନାଇନଥାଆନ୍ତା। ତାର ଚାହାଣି କେତେ ସ୍ୱଚ୍ଛ ଏବଂ ସରଳ। ନଥିଲା ତା'ଠାରେ ଆସକ୍ତି; ମାତ୍ର ମନରେ ଥିଲା କୌତୂହଳ।

ତାର ଅନାସକ୍ତ ପ୍ରେମ କିଆ ମନରେ ଏକ ଅପୂର୍ବ ପୁଲକ ସୃଷ୍ଟିକଲା। ପରକ୍ଷଣରେ ନିଜର ଭୁଲ ପାଇଁ ସେ ଅନୁତପ୍ତ ହେଲା। ମନକୁ ସେ ଦୃଢ଼ କଲା– ନା, ଏଥର ଭଲକରି ଲୁଗା ପିନ୍ଧି ଯିବ। ଝିଅ ବଡ଼ହୋଇଗଲେ ସଂଯତ ହୋଇରହିବା ପ୍ରତ୍ୟେକ ଝିଅର କର୍ତ୍ତବ୍ୟ।

ଏମିତି କେତେ କ'ଣ ସେ ଭାବନା-ରାଇଜରେ ଘୂରିଚାଲିଥାଏ। ତା' ବାପା କେତେବେଳୁ ଆସି ହଳ ଲଙ୍ଗଳ ରଖି ବଳଦଙ୍କୁ ଖୁଣ୍ଟରେ ବାନ୍ଧି ପାଳ ଖାଇବାକୁ ଦେଉଥାଏ। ମା' ତାର ଘର ଭିତରକୁ ଚାଲିଆସିଲାଣି। ସେଥିପ୍ରତି ତା'ର ନଜର ନାହିଁ। ମା' ଅତି ପାଖକୁ ଚାଲିଆସି କିଆ ମୂକଙ୍କଭଳି ବସିରହିଥିବା ଦେଖି ଚିଡ଼୍‌ଚିଡ଼୍ ହୋଇ ପାଟିକଲା– ବେଳ ଆସି କେତେ ହେଲାଣି, ଏତେବେଳଯାଏ

ଭାତ ରାନ୍ଧି ଗଣ୍ଡିଏ ପଖାଳ କରିପାରିଲୁ ନାହିଁ ?''

କିଆ ମନର ସ୍ୱପ୍ନ ଉଭେଇଗଲା । ତା' ମା' ପାଟି ଶୁଣି ସେ ଚମକିପଡ଼ିଲା ।

—''ହଇଲୋ, ବସି ବସି କେଉଁ ସପନ ଦେଖୁଥିଲୁ ? ଚୁଲିରେ କାଠ ଜଳି ପାଉଁଶହେଲାଣି । ଏତେବେଳହେଲା ପଖାଳ ଗଣ୍ଡିଏ କରିପାରିଲୁନାହିଁ ? ଲାଜ ସରମ ନାହିଁ ଲୋ ତତେ ।'' ରାଗ ଗରଗର ହୋଇ ତା'. ମା' ପୁଣି କହିଲା— ''ତେଣେ ଭୋକରେ ତୋ' ବାପର ହଂସାଉଡ଼ିଯାଉଛି; ଏଣେ ଝିଅ ଆମର ସପନ ଦେଖିବସିଛି ।'' ପାଟି କରି କରି ରେବତୀ ଚୁଲି ଲଗାଇ, ପାଣି ଫୁଟାଇ ଚାଉଳପକାଇଲା ।

ଲୁଗା ବଦଳାଇ ବାହାରେ ମଦନ ଖଟ ପାରି ବସିରହିଲା । କାମ କରିକରି ଭୋକରେ ପେଟ ଜଳିଯାଉଥାଏ । ଡେରି ହେବା ଦେଖି ମଦନା ପାଟିକରି ଉଠିଲା— ''କ'ଣ ଖାଇବାକୁ ମିଳିବ ?''

—''ଟିକିଏ ଥୟ ଧର । ଏଇନେ ବସି ରାନ୍ଧୁଛି । ଝିଅ ତୁମର ବସି ସପନଦେଖୁଥିଲା । ରାନ୍ଧିଥିଲେ ସିନା ଖାନ୍ଥାନ୍ତ !''

ରେବତୀ ପାଟି କରି କରି ଚୂଲି ଫୁଙ୍କୁଥାଏ । ନିଆଁ ଜଳିଲେ ଶୀଘ୍ର ଭାତ ଗଣ୍ଡିକ ଉତାରିଦେବ ।

ଲାଜରେ ଏବଂ ଭୟରେ କିଆ ପାଟିରୁ କଥା ବାହାରୁନଥାଏ । ସତେ ସେ କେତେ ଅଲାଜୁକୀ ? ଭାବି ଭାବି ସମୟ ବିତିଗଲା; ସେ କିଛି ଜାଣିପାରିଲା ନାହିଁ । ମା' ତା'ର କଥାଟା ନେଇ କେଉଁଠି ପହଞ୍ଚାଇଦେବ । ବାପ ଜାଣିଲେ ରାଗିବ ।

କିଆ ତରତର ହୋଇ ଶାଗ କାଟିଚାଲିଛି । ଭୟରେ ସେ ତା' ମା' ମୁହଁକୁ ଅନାଇପାରୁନଥାଏ । ତା'ରି ଅବହେଳା ଯୋଗୁଁ ଭାତଗଣ୍ଡିଏ ତା' ମା' ବାପ ଆସିବା ଆଗରୁ ରାନ୍ଧିପାରିଲା ନାହିଁ । କେବେ ତ ଏମିତି ଭୁଲ ତାର ହୋଇନଥିଲା— ଆଜି ସତେ କ'ଣ ହେଲା ? ଛି, ଏ କି ଅଲାଜୁକ କଥା ? ତା' ମୁଣ୍ଡକୁ କ'ଣ ନା କ'ଣ ଢୁକିଗଲା । କ'ଣ ସେ ଭାବିବସିଲା, ସେ କିଛି ଜାଣିପାରିଲା ନାହିଁ । ମା' ଜାଣିଲେ ରାଗିବ । ସେ ରାଗିଲେ ପାଟିତୁଣ୍ଡ କରିବ, ସାଇପଡ଼ିଶା ଜାଣିବେ— କେତେ ଲାଜସରମ କଥା ।

ଏଭଳି ଭାବି ଭାବି ମନ ତାର ସଙ୍କୁଚିତ ହୋଇଗଲା । ରନ୍ଧାବଢ଼ା ସରିବାପରେ ରେବତୀ ଖାଇବାକୁ ଡାକଦେଲା । ଘରଣୀର ଡାକ ଶୁଣି ମଦନ ବସିବା ସ୍ଥାନରୁ ଘର ଭିତରକୁ ଚାଲିଆସିଲା । ରେବତୀ ପଖାଳ କଂସାଟା ଆଣି ତା' ଆଗରେ ଥୋଇଦେଲା । ଗରମ ଶାଗ ଖରଡ଼ା ସହ କଂଚା ଲଙ୍କାମରିଚ୍ ଲୁଣ ପିଆଜ । ଭୋକରେ ତା' ପେଟ ଜଳୁଥିଲା । ପଖାଳକଂସାକ ଖାଇଦେଇ ଢକ୍‌ଢକ୍ କରି ତୋରାଣିତକ ପିଇଦେଲା ପେଟ ଭର୍ତ୍ତିକରି ।

ପେଟ ଭରିଗଲା ପରେ ମନ ତାର ଫୁର୍ତ୍ତି ଲାଗିଲା; ମୁହଁରେ ହସ ଚହଟି ଆସିଲା। ହାକୁଟି ମାରି ଖାଇବା ଜାଗାରୁ ଉଠିଆସିଲା ହାତ ଧୋଇବାପାଇଁ। ହାତ ମୁହଁ ଧୋଇ, ଗାମୁଛାରେ ପୋଛି ଆରାମରେ ଖଟରେ ଯାଇ ବସିପଡ଼ିଲା। ଖରାରେ ଶୁଖାଇ ରଖିଥିବା ଶର୍ଗି ପତର ଆଣି ପିକାବଳିବସିଲା। ଖାଇସାରିଲା ପରେ ପିକା ନଟାଣିଲେ ମନ ଫୁର୍ତ୍ତି ହୁଏନାହିଁ। ଲଙ୍ଗଳ ଆକୃତିର ପତର ପିକା ବଳି ଧୂଆପତ୍ରକୁ ଗୁଣ୍ଡକରି ତହିଁରେ ଭର୍ତ୍ତିକରି ମୁହଁ ବନ୍ଦକରି, କାଠ ନିଆଁ ଫୁଙ୍କି ନିଆଁଲଗାଇଲା। ଆନନ୍ଦରେ ପିକା ଟାଣି ଧୂଆଁ ଛାଡୁଥାଏ।

କିଛିକ୍ଷଣ ପରେ ପିକା ଲିଭାଇଦେଇ ଖଟରେ ଗଡ଼ିପଡ଼ିଲା। ହାଲିଆ ହୋଇପଡ଼ିଥା; ପଖାଳଗଣ୍ଡିଏ ପଡ଼ିଗଲାପରେ ନିଦ ଆପଣାଛାଏଁ ଚାଲିଆସିଲା। ଏମିତି କିଛିକ୍ଷଣ ନିଦରେ ଶୋଇପଡ଼ିଲା।

ମଦନ ଖାଇସାରିଲା ପରେ ମା' ଝିଅ ଖାଇବସିଲେ। ଖାଇବସିବା ଭିତରେ ରେବତୀ ଥରେ କିଆକୁ ଅନାଇଦେଲା। ଝିଅ ଆସି କେତୁଟିଏ ହେଲାଣି; ଅନାଇହେଉନାହିଁ। ଝିଅ ବଢ଼ିଲେ ଚଞ୍ଚଳ ବଢ଼ିଯାଏ। ତା' ମନରେ କେତେ ଚିନ୍ତା ପଶିଗଲା। ଝିଅ ବଡ଼ହୋଇଗଲେ ମା' ମନରେ ସଦା ଆଶଙ୍କା ବସା ବାନ୍ଧି ରହିଥାଏ – ଝିଅ ଉପରେ କିଏ ଆଖି ପକାଇଦେବ କି ?

କିଆ ଥରେ ତା' ମା' ଆଡ଼କୁ ଅନାଇଦେଇ ତୁନିତାନି ଖାଇବାରେ ଲାଗିଥାଏ। ଝିଅଆଡ଼କୁ ପୁଣି ଥରେ ଆଖି ବୁଲାଇଆଣି ରେବତୀ କହିଲା – ''ବୁଝିଲୁ ଝିଅ, ତୁ ଆଉ ଛୋଟ ଝିଅ ହୋଇ ରହିନାହୁଁ; ବଡ଼ହେଲୁଣି। ଲୁଗାପଟା ଜଗିରଖି ପିନ୍ଧିବୁ। ସଦାବେଳେ ବଢ଼ିଲାଝିଅକୁ ଜଗିରଖି ଚଳିବାକୁ ପଡ଼ିଥାଏ – କିଏ କେତେବେଳେ ଆଖିପକାଇଦେବ, କିଏ ପାପ ଆଖିରେ ଦେଖିବ। ସେଥିପାଇଁ ନିଜେ ସାବଧାନ ରହିବାକୁ ପଡ଼ିବ। ନିଜେ ଭଲ ତ ଦୁନିଆ ଭଲ। ବାଳୁଙ୍ଗା, ଛତରାମାନଙ୍କର କେତେବେଳେ କେଉଁ କଥା। ମାନମହତକୁ ତାଙ୍କର ଭୟନଥାଏ।''

ମା' କଥା ଶୁଣି ଭୟରେ ଦୁଲୁକି ଉଠିଲା କିଆର ଛାତି। ରେବତୀ ଝିଅକୁ ଆଟକକଲାଭଳି ପୁଣି କହିଲା – ''ଝିଅ ବଡ଼ହେଲେ ସବୁବେଳେ ଜଗିରଖି ଚଳିବାକୁପଡ଼େ। ଇଜ୍ଜତ ମହତକୁ ଜଗିରଖି ଚଳିଲେ ଏ ସଂସାରରେ ମଣିଷ ଚଳିପାରିବ। ମାନମହତ ଗଲେ ସବୁ ଗଲା।''

ମା'ଠୁ ଏତକ ଶୁଣି କିଆ ମନରେ ଏକ ଅଜଣା ଆଶଙ୍କା ଖେଳିଗଲା। ତାର ଫୁଙ୍ଗୁଳା ତନୁଲତାରେ ନବୀନର ଆଖିପଡ଼ିଯାଇଛି। ତା'ର ଅନାବୃତ ଶରୀରକୁ ସେ ଅପଲକ ନୟନରେ କିଛିକ୍ଷଣ ଅନାଇଦେଇଛି। ସେଇଟା ତାର ଅନ୍ୟାୟ ହୋଇନି କି ?

ମନରେ ସେ ନବୀନ ଉପରେ ରାଗିଉଠିଲା। ପରମୁହୂର୍ତ୍ତରେ ପୁଣି ସେ

ଭାବିଲା – ତା'ର ଦୋଷ କ'ଣ ? ଅଜାଣତରେ ତା'ର ବକ୍ଷରୁ ଲୁଗା ଖସିଗଲା । ସେତକ ସେ ଆଗରୁ ସତର୍କ ହେବାକଥା । ମା' ତାର ସବୁକଥା ଜାଣିଯାଇଛି କି ? କିଏ ତାକୁ କ'ଣ କହିଦେଲା କି ? ପାପ ମନ ସଦା ଶଙ୍କି ରହିଥାଏ । ଏମିତି ନାନା ଦୁଃଶ୍ଚିନ୍ତା ତା' ମନରେ ଖେଳିଯାଉଥାଏ ।

ରେବତୀ ତାକୁ ଏମିତି ନିତିଦିନିଆ ମା' ଝିଅକୁ ଯାହା କହିବା କଥା କହିଦେଇ ଖାଇସାରି କେତେବେଳୁ ଉଠିଗଲାଣି । କିଆ ପଖାଳ କଂସାରେ ହାତ ରଖି କେତେ କ'ଣ ଭାବି ଭାବି ବସିରହିଥାଏ । କିଆ ଏମିତି ବସିରହିଥିବା ଦେଖି ଘର ଭିତରୁ ରେବତୀ ପାଟିକଲା – "ଆଲୋ ଏମିତି କ'ଣ ବସିରହିଛୁ ?" ବାସନକୁସନ ଉଠାଇ ମାଜିପକା । ଅଇଁଠା ବାସନ ଆଉ କେତେବେଳଯାଏଁ ପଡ଼ିରହିଥିବ ?"

ମାଆ କଥା ଶୁଣି କିଆ ତରତରରେ ଅଇଣ୍ଠା ବାସନ ଉଠାଇନେଇ କୂଅଁମୂଳକୁ ଚାଲିଗଲା । କିଛିକ୍ଷଣ ପୂର୍ବରୁ ବର୍ଷାହୋଇଯାଇଛି । ଅଦିନିଆ ବର୍ଷା । ଧୀରେ ଧୀରେ ଆକାଶରୁ ମେଘ ଘୁଞ୍ଚିଯାଇଛି । ସୂର୍ଯ୍ୟକିରଣ ଚତୁର୍ଦ୍ଦିଗରେ ବିଛେଇହୋଇ ପଡ଼ିଛି । କଅଁଳିଆ ଘାସରେ ବର୍ଷାପାଣିର ବିନ୍ଦୁ ଲାଗିରହିଛି । ତା' ଉପରେ ସୁନେଲି ସୂର୍ଯ୍ୟକିରଣ ବିଛେଇହୋଇ ପଡ଼ିଥିବା ଯୋଗୁଁ ପାଣିବିନ୍ଦୁ ଚକ୍‌ଚକ୍ କରୁଥାଏ ।

ଆକାଶରେ ଅଗଣିତ ଚଢ଼େଇ ଉଡ଼ିଯାଉଥାନ୍ତି ଏକ ମଧୁର ଝଙ୍କାର ସୃଷ୍ଟିକରି – ମୁକ୍ତ ଆକାଶରେ ମୁକ୍ତ ବିହଙ୍ଗ । କେତେ ଆନନ୍ଦରେ ଡେଣା ମେଲାଇ ଦୂରକୁ ଦୂରକୁ ଉଡ଼ିଯାଉଥାନ୍ତି ତାଙ୍କ ଖାଦ୍ୟ ଅନ୍ୱେଷଣରେ । ଏବେ ମଧ୍ୟ ଗଛପତ୍ରରୁ ବର୍ଷା ପାଣି ଥପ୍‌ଥପ୍ ହୋଇ ତଳେ ପଡ଼ି ଏକ ମଧୁର ଝଙ୍କାର ସୃଷ୍ଟିକରୁଥାଏ ।

ହାତରେ ଛୋଟ ବାଡ଼ିଟିଏ ଧରି ଛେଳିପଲ ପଛେ ଅଣ୍ଟା ଦୋହଲାଇ କିଆ ଆଗକୁ ଆଗକୁ ଚାଲିଯାଉଥାଏ । ପଛରେ ରହିଯାଉଥିବା ଛେଳିକୁ, ପୁଣି ସେ ପଛକୁ ଫେରିଆସି ଆଗକୁ ତଡ଼ି ନେଉଥାଏ ଛେଳିପଲ ସଙ୍ଗେ ମିଶାଇଦେବାପାଇଁ । ଛେଳିପଲ ଗଲାବେଳକୁ ଗାଁ ଦାଣ୍ଡ ପାଟିତୁଣ୍ଡରେ କ୍ଷଣିକପାଇଁ କଂପିଉଠୁଥାଏ । ଛୋଟ ଛୋଟ ଛେଳିଛୁଆମାନେ ମା' ପଛରେ ଦୌଡୁଥିବାର ଦୃଶ୍ୟ ଅତି ମନୋହର । ମା'କୁ ଛାଡ଼ି ଛେଳିଛୁଆମାନେ ଘରେ ରହିଯାଉଥିବାରୁ ଛେଳିମାନଙ୍କ ଏବଂ ଛୁଆମାନଙ୍କ ପାଟି ଶବ୍ଦରେ ଗାଁ-ଦାଣ୍ଡ କଂପିଯାଉଥାଏ । କେଉଁ ଛେଳିଛୁଆ ତା' ମା' ଦୁଧ ଚର୍‌ଚ଼ର୍ କରି ପିଇଯାଉଥାଏ । ମାଈଛେଳି ଆତ୍ମତୃପ୍ତିରେ ତା' ଛୁଆକୁ ଦୁଧ ପିଆଇ ଗୋଡ଼ ଟେକି ତାକୁ ଛାଡ଼ିଦେଇ ପୁଣି ଛେଳିପଲ ମଧ୍ୟେ ମିଶିଯାଉଥାଏ । ଆଗକୁ ଯାଉଥାଏ, ପୁଣି ପଛକୁ ଫେରି ତା' ଛୁଆକୁ ଅନାଉଥାଏ । ପୁଣି କିଆର ଡାକ ଶୁଣି ତା' ପଲମଧ୍ୟେ ମିଶିଯାଇ ବଣକୁ ଚାଲିଯାଉଥାଏ ।

ଆଗରୁ ନବୀନ ତାର ଗାଈଗୋଠ ଧରି ଆସିଯାଇଥାଏ। ଗାଁର ଅନ୍ୟ ଗାଈଚରିଆ ପିଲାମାନେ ମଧ୍ୟ ଗୋଟି ଗୋଟି କରି ଆସିଯାଇଥାନ୍ତି। ଧୀରେ ଧୀରେ ଜଙ୍ଗଲ ଚତୁର୍ଦ୍ଦିଗରେ ଗାଈ, ବଳଦ, ଛେଳି ସମାବେଶରେ ଭରପୂର ହୋଇ ଗହଳି ହୋଇଉଠୁଥାଏ।

କିଆ ଛେଳି ଅଡ଼େଇ ଗଛମୂଳକୁ ଚାଲିଆସିଲା। ମୁହଁରେ ଲାଖିରହିଥାଏ ଏକପ୍ରକାର ଲାଜ ଲାଜ ଭାବ; ମାତ୍ର ମନରେ ଥାଏ ଆଗ୍ରହ ନବୀନ ସହ ବସି କଥାହେବାପାଇଁ।

ତାର ଆସିବା ବାଟକୁ ନବୀନ ଅନାଇରହିଥାଏ। ପାଖକୁ ଆସିଲାପରେ ନବୀନ ତାକୁ ସତୃଷ୍ଣ ନୟନରେ ଅନାଇରହିଲା। କିଛିକ୍ଷଣ ପରେ ତା' ମୁହଁରେ ହସ ଚହଟିଆସିଲା। କିଆ ପାଖକୁ ଚାଲିଆସି ସଲଜ୍ଜ ଚାହାଣି ପକାଇ ପାଖରେ ବସିପଡ଼ିଲା। ତାକୁ ଦେଖି ନବୀନର ମୁହଁରେ ହସ ଚହଟିଯିବାଯୋଗୁଁ ସେ ଟିକିଏ ଅପ୍ରସ୍ତୁତ ହୋଇଗଲା। ମନେମନେ ଭାବିଲା– ଗତକାଲି କଥାକୁ ହେତୁକରି ସେ ଆଜି ହସିଦେଲା।

କିଆ ତାକୁ ଅନାଇ ପଚାରିଲା– ''ହସିଲୁ ଯେ!''

ନବୀନ ହସି ହସି କହିଲା– ''ତୋତେ ଦେଖିଦେଲା ପରେ ମନରେ ହସ ଆପେ ଆପେ ଚହଟିଆସିଲା।'' –ଏତକ କହି ନବୀନ ତାକୁ ଚାହିଁରହିଲା। ମନରେ କିନ୍ତୁ ଆତ୍ମତୃପ୍ତି ଅନୁଭବ କରୁଥାଏ।

–''ମୋ'ଠି କ'ଣ ଦେଖିଲୁ ଯେ, ତୋର ହସ ଆପେ ଆପେ ଚହଟିଆସିଲା?'' କିଆ ତା' ମୁହଁକୁ ଚାହିଁଦେଇ ଖତେଇ ହୋଇ ଏତକ ପଚାରିଦେଲା।

ନବୀନ କଥାଟାକୁ ଟିକିଏ ବାଗେଇଦେଇ କହିଲା– ''ନାହିଁ ଲୋ, ସେମିତି ହସିଦେଲି। ସତ କହୁଛି, ତୋତେ ଦେଖିଲେ ମନଟା କେମିତି ଖୁସି ଲାଗେ।''

–''ସତେ! ଏତେ କଥା ତ ମୁଁ ଜାଣିନଥିଲି।'' କିଆ ତା' ମୁହଁକୁ ଚାହିଁ ହସିଦେଲା।''

–''ହଁ ଲୋ ସତେ, ତୋ' ମୁହଁଟି କେଡ଼େ ସୁନ୍ଦର, ତୋ' କଥା କେଡ଼େ ମଧୁର।'' ନବୀନ ସରଳଭାବରେ ତାକୁ ଉତ୍ତରଦେଲା।

କିଆ ନବୀନର ଖୋଲା ହୃଦୟର ମନକଥାତକ ଜାଣିପାରି ମନ ତାର ପୁଲକିତ ହୋଇଉଠିଲା। ତା' ଦେହରେ ନୂତନ ତରଙ୍ଗ ସୃଷ୍ଟିହେଲା। ସେ କିଛିକ୍ଷଣ ନବୀନର ମୁହଁକୁ ଅପଲକ ନୟନରେ ଚାହିଁରହିଲା।

ସତେ, ଆଜି ନବୀନର କଥା ଶୁଣିବାକୁ କେତେ ମଧୁର ଲାଗୁଛି! ବାରମ୍ବାର ତା'ରି କଥା ଶୁଣିବାକୁ କାନ ତାର ଅଧୀର ହୋଇଉଠୁଛି, ମନ ବ୍ୟାକୁଳ ହୋଇଉଠୁଛି।

ନବୀନ ତାକୁ ବାରମ୍ବାର ଏମିତି ମିଠାକଥା କୁହନ୍ତା ଆଉ ସେ ପାଖରେ ବସି ଶୁଣୁଥାନ୍ତା ।

ପ୍ରତ୍ୟେକ ନାରୀ ତା'ର ପ୍ରିୟଜନ୍‌ଠୁଁ ମିଠା କଥା, ନିଜ ପ୍ରଶଂସା କଥା ଶୁଣିବାକୁ ଲାଳାୟିତ । ସେଥିରୁ କିଆ ଅବା ବାଦ୍ ଯାଆନ୍ତା କିପରି ? ଏଭଳି କିଛିକ୍ଷଣ ତନ୍ମୟ ହୋଇ ଦୁହେଁ ଦୁହିଁଙ୍କୁ ଅନାଇରହିଲେ । ସେହି ଚାରିଚକ୍ଷୁର ମଧୁର ମିଳନ ମନରେ ପୁଲକ ସୃଷ୍ଟିକରୁଥାଏ । ଦୁହେଁ କିଛିକ୍ଷଣପାଇଁ ଆତ୍ମହରା ହୋଇପଡ଼ିଲେ ।

ଏମିତି କିଛିକ୍ଷଣ ବିତିଗଲାପରେ ଭାବନା-ରାଜ୍ୟରୁ ଫେରିଆସି କିଆ କହିଲା – ''ତୋ' ପାଇଁ ଆଜି ଗରମ ମୁଢ଼ି ଆଣିଦେଇଛି । କଥାଳହସରେ ଭୁଲିଯାଇଥିଲି – ଥଣ୍ଡା ହୋଇଯିବ, ଖାଇଦେ ।''

କିଆ ତାର ଲୁଗା ପଣତକାନିରୁ କାଢ଼ି ଅଧେ ମୁଢ଼ି ନବୀନକୁ ଖାଇବାକୁ ଦେଲା । ନବୀନ ଆଗ୍ରହରେ କିଆଠୁ ମୁଢ଼ି ନେଇ ମୁଠାଏ ପାଟିରେ ପକାଇଦେଲା । ଗରମ ମୁଢ଼ି ଖାଇବାରେ ବିଶେଷ ତୃପ୍ତିଦାୟକ । ସେହି ମୁଢ଼ି ଦୁହେଁ ତୃପ୍ତିରସହ ଖାଇଚାଲିଥାନ୍ତି । ଆନନ୍ଦରେ ସତୃଷ୍ଣ ନୟନରେ କିଆ ତାର ଖାଇବା ଢଙ୍ଗ ଦେଖୁଥାଏ ।

–''ଆଲୋ ! ତୁ ମୋତେ ଏମିତି କ'ଣ ଅନାଇରହିଲୁ ?'' ହସହସ ମୁହଁରେ ମୁଢ଼ି ଚୋବାଇ ଚୋବାଇ ନବୀନ ପଚାରିଦେଲା ।

–''କ'ଣ ମୋ' ଆଖିପଡ଼ିଯିବ ବୋଲି ଡରୁଛୁ କି ?'' –କିଆ ତାକୁ ଚାହିଁ କହିଲା ।

–''ତୋ' ଆଖି ମୋ ଉପରେ ପଡ଼ିଲେ ମୁଁ କେତେ ଖୁସି ହୁଅନ୍ତି ! ସେତକ ଭାଗ୍ୟ କଅଣ ମୋର ଅଛି କି ?'' ନବୀନ ଏହାକହି ତା' ମୁହଁରୁ କିଛି ଶୁଣିବ ବୋଲି ସତୃଷ୍ଣ ନୟନରେ ଚାହିଁରହିଲା । କିଆ କ'ଣ ବା ଉତ୍ତର ଦେବ ? କେବଳ ଥରେ ତା' ମୁହଁ ଉପରେ ଆଖି ବୁଲାଇ ଆଣିଲା । ମୁହଁରେ ହସ ଚହଟିଗଲା । ତାର ସେହି ହସିଟିକକ ନବୀନର ଅନ୍ତରକୁ ଚହଲାଇଦେଲା ।

ପିଲାଟିଦିନରୁ ଦୁହେଁ ଏମିତି ହସଖୁସିରେ ଖେଳିକୁଦି ଏକାଠି କେତେ ଦିନ ଅତିବାହିତ କରିଦେଇଆସିଛନ୍ତି । ଏମିତି କେତେଥର ଲୁଚ଼ାଇ ଲୁଚ଼ାଇ କୋଳି ଓ ଆମ୍ବ ଆଚ଼ାର ଆଣି ସେ ନବୀନକୁ ଖାଇବାକୁଦେଇଛି । ପାଖରେ ଥିଲେ ମାଳତୀକୁ ମଧ୍ୟ ଖାଇବାକୁ ଦେଇଛି ।

ନବୀନ ମଧ୍ୟ ଅନେକଥର ତାଙ୍କ ବାଡ଼ିର କୋଳି, ଆମ୍ବ, ପିଜୁଳି ଆଣି କିଆକୁ ଶରଧାରେ ଖାଇବାକୁ ଦେଇଛି । ସେହି ଆମ୍ବ ଗଛମୂଳେ ବସି ହସଖୁସିରେ ତାକୁ ଖାଇଥାନ୍ତି । ଖାଇବା ଭିତରେ କେତେକଥା ପଡ଼ିଯାଏ । କା' ଗଛର ପିଜୁଳି ଭଲ, କା' ଗଛର ଆମ୍ବ ସୁଆଦିଆ, ଏମିତି କେତେ ଅସରନ୍ତି ଗପ, ଯାହାର

ମୂଳ ନାହିଁ କି ଶେଷ ନାହିଁ, ସବୁ ଗୋଟି ଗୋଟି ପଡ଼ିଯାଏ ।

ପିଲାଦିନର ସେହି ମଧୁର ସ୍ମୃତି ଆଜି ଉଭୟଙ୍କ ମନକୁ ଚହଲାଇଦେଇଛି । ପିଲାଦିନର ଖୋଲା ମନ, ଅନାବିଳ ହସ ଆଜି ନାହିଁ । ସେଦିନ ଓ ଆଜି— କେତେ ତଫାତ୍ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ମନରେ ଏକ ଅଜଣା ଲାଜ ଢାଙ୍କିରହିଛି । ଅଜଣା ଆଶଙ୍କାରେ ମନ ଛନଛନ ହେଉଛି ।

ସତେ, ନବୀନ ତା' ପାଖେ ପାଖେ ଥିଲେ କିଆ ମନରେ କେତେ ଆନନ୍ଦ ! ଯେଉଁ ଦିନ ସେ ନବୀନକୁ ନଦେଖିବ, ସେଦିନ ତା' ମନ ତାକୁ ଖୋଜିହେଉଥିବ । ଅନେକଦିନ ନବୀନ ତା' ବାପ ବେମାର ପଡ଼ିଥିଲାବେଳେ ଡଙ୍ଗରକୁ ନଆସିବାଯୋଗୁଁ ସେ ତାକୁ କେତେ ଖୋଜିଥିଲା । ନବୀନର ଅନୁପସ୍ଥିତିରେ ମନ ତାର ଛଟପଟ ହେଲା । ଲାଜରେ କାହାକୁ ନକହିଲେ ମଧ୍ୟ ତାର ସାଙ୍ଗ ମାଳତୀ ଆଗରେ କଥାଟା ଆଉ ଲୁଚିରହିଲାନାହିଁ । ସେ ତା' ମନକଥା ଜାଣିଯାଇ କେତେ କଥା କହିଯାଏ ।

ନାରୀର ମନକଥା ଆଉ ଜଣେ ନାରୀ ପାଖରେ ସହଜରେ ଛପିଯାଏ ନାହିଁ; ଆପେ ଆପେ ଧରାପଡ଼ିଯାଏ— ''ଆଲୋ, ଆଜି କ'ଣ ତୋ' ମନ ଆଉ କାହାକୁ ଖୋଜୁଛି ? ସେ କ'ଣ ଆଜି ଆସିନାହିଁ କି ?''

କିଆ ଲାଜେଇଯାଇ ମୁହଁରେ ହସ ଫୁଟାଇ କହେ— ''ମୁଁ କିଆଁ କାହାକୁ ଖୋଜିବି; ତୁ ଖୋଜୁଥିବୁ ନା ?''

—''ହଁ ଲୋ, ମୁଁ ଖୋଜିଲେ ମଧ୍ୟ ସେ କଅଣ ମୋର; ସେ ପରା ତୋର . . .'' —ଏମିତି କେତେ କଅଣ କହିଯାଏ ।

ମାଳତୀ ପେଟରେ କେଉଁ କଥା ଛପିରହିପାରେନାହିଁ । ଯାହା ଦେଖିଥିବ, ଯାହା ଶୁଣିଥିବ ଏମିତି ଗୋଟି ଗୋଟି ସଭିଙ୍କ ଆଗରେ ଡବଡବ କହିଯିବ । ତେଣୁ ଗାଁଲୋକ ତାକୁ 'ଡବଡବୀ' ବୋଲି କେତେ ଚିଡ଼ାନ୍ତି । ତାକୁ ଏମିତି ଚିଡ଼ାଇଲେ ମଧ୍ୟ ସେ କେବେ ଚିଡ଼ିଯାଏନାହିଁ । ହସି ହସି କା' ଉପରେ ରାଗ ନରଖି ସେଇଠୁ ଚାଲିଯାଏ; ମାତ୍ର ମନ ଭିତରେ ରାଗ ଶୁଝାଇବାପାଇଁ ସମୟ ଉଣ୍ଡିବସେ । ଯାହା ଦେଖିଥାଏ, ଯାହା ଶୁଣିଥାଏ, ସେଥିରେ ଦି'ପଦ ଅଧିକ ଖଞ୍ଜି ସେ କହିପକାଏ; ସେଥିର ଭଲ କି ମନ୍ଦ ବିଚାର କରିପାରେନାହିଁ ।

ସମୟେ ସମୟେ କିଆ ମନରେ ମଧ୍ୟ ମାଳତୀ ପ୍ରତି ଭୟ ସଂଚାର ହୋଇଥାଏ । କେତେବେଳେ କେଉଁ କଥା— କଅଣ ତାକୁ ବିଶ୍ୱାସ ଅଛି ? ମାଳତୀ ତା' ନାଁରେ ଆଉ କାହା ଆଗରେ କ'ଣ କହିଦେବନାହିଁ ତ ? ଏମିତି ସେ କେତେ କଥା ଭାବିଚାଲିଛି । ସେତିକିବେଳେ ମାଳତୀ ଛେଳି ଅଡ଼େଇ ସେଇଠି ଆସି ପହଞ୍ଚଯାଇଛି । କିଆ ଆଉ ନବୀନର ମଧୁର ଆଳାପ ବନ୍ଦ ହୋଇଯାଇଛି ।

ହଠାତ୍ ମାଳତୀକୁ ଦେଖି କିଆ ଟିକିଏ ଶଙ୍କିଯାଇଛି। ମୁହଁର ସରସତା ଟିକକ ଲିଭିଯାଇଛି। ମୁଢ଼ିଖିଆ ବନ୍ଦହୋଇଯାଇଛି। ନବୀନ ପାଖରୁ ଉଠିପଡ଼ି ମାଳତୀ ନିକଟକୁ ଚାଲିଆସିଛି। ମାଳତୀକୁ ଟାଣିଟାଣି ଗୋଟିଏ ଗଛ ଉହାଡ଼କୁ ନେଇ ତାକୁ ମଧ୍ୟ ମୁଢ଼ି ଖାଇବାକୁ ଯାଚିଛି।

—"ଆଲୋ, ମୋତେ ଦେଖିଦେଲାକୁ ଏମିତି ଉଠିଆସିଲୁ କାହିଁକି ? ଦୁହେଁ ମିଶି କେତେ ଖୁସିରେ ଖାଉଥିଲ, ମୋତେ ଦେଖିଲାକୁ ଛାନିଆ ହୋଇ ଏମିତି ପଳାଇଆସିଲୁ କାହିଁକି ? ମୁଁ କ'ଣ ତୋର ଦରବକୁ ନେଇ ପଳାଉଛି କି ?"

ତା' କଥା ଶୁଣି କିଆ ଲାଜେଇଗଲା; ମାତ୍ର ପରମୁହୂର୍ତ୍ତରେ ଏକ ଅଜଣା ଆଶଙ୍କା ଖେଳିଗଲା। ମାଳତୀ ସବୁ ଦେଖିଦେଇଛି। ଘରକୁ ଯାଇ ମା' ଆଗରେ ସବୁକଥା ଖୋଲିଦେବ ନାହିଁ ତ ? କହିଦେଉ, କ'ଣ ବା ହେଲା ? ଦୁହେଁ ବସି ମୁଢ଼ିଖାଉଥିଲୁ— ସେଥିରେ କ'ଣ ଦୋଷଟା ହୋଇଗଲା ଯେ ? ଏମିତି କେତେ କଥା ଭାବିଚାଲିଥାଏ।

ମାଳତୀ କିଆକୁ ଭିଡ଼ିଆଣି ନବୀନ ପାଖରେ ପହଞ୍ଚାଇଦେଇ କହିଲା— "ହେଇଟି, ଦୁହେଁ ବସି କେତେ ଖୁସିରେ ମୁଢ଼ିଖାଉଥିଲ। ସେଥିରେ ପୁଣି ମୋତେ ଭାଗ ଯାଚୁଛି। କେତେ ମୁଢ଼ି ଯେ, ମୋତେ ଭାଗଦେଉଛି।"

ନବୀନ ତାକୁ ପାଖକୁ ଡାକିଲା— "ଆ, ସାଙ୍ଗହୋଇ ଖାଇବା।" —ଏତକ କହି ମୁଠାଏ ମୁଢ଼ି ତା' ଆଡ଼କୁ ବଢ଼ାଇଦେଲା।

—"ମୋର ସରୁନାହିଁ ଯେ— ତୋର ଅଇଁଠା ମୁଢ଼ିକୁ ମୁଁ ଖାଇଯାଉଛି; ନହେଲା ନାହିଁ। ମୋର ଗରଜ ପଡ଼ିନି।" —ଏତକ କହି ମାଳତୀ ତାକୁ କଟମଟ କରି ଅନାଇଲା।

—"ମୁଢ଼ିଟା ଅଇଁଠା ହୋଇନି ଲୋ, ଏମିତି କେତେ ଥର ଖାଇଛୁ। ମୋ'ଠୁ ନଖାଇଲେ କ'ଣ ହେଲା; କିଆ କେତେ ଶରଧାରେ ତୋତେ ମୁଢ଼ି ଯାଚୁଛି। ସେତକ ନନେଲେ ତା' ମନରେ କଷ୍ଟ ହେବନି ?"

—"ମୁଢ଼ି ସେ ମୋ' ପାଇଁ ଆଣିନଥିଲା। ଯାହା ପାଇଁ ଆଣିଥିଲା ତାକୁ ସେ ଖୁଆଇଲା; ସେଥିରେ ମୋର ଭାଗ ନଥିଲା।" —ଏତକ କହି ଅଭିମାନରେ କିଆକୁ ଅନାଇଲା।

କିଆ ନୀରବରେ ତା' କଥା ଶୁଣି ତାକୁ ଅନାଇରହିଲା। କହିଲା— "ସତ ଲୋ, ମୁଁ ତୋ' ପାଇଁ ବି ଆଣିଥିଲି। ତୁ ନଥିଲୁ ବୋଲି ଦେଇନଥିଲି।"

—"ମିଛ କଥା।" —ମାଳତୀ ମୁହଁ ଫଣଫଣ କରି କହିଲା।

କିଆ ତାକୁ ବୁଝାଇବାପାଇଁ ଚେଷ୍ଟାକଲା, ରାଣପକାଇଲା; ମାତ୍ର ମାଳତୀ ମନ ବୁଝିଲାନାହିଁ। ରାଗ ତମତମ ହୋଇ ଦୌଡ଼ିପଳାଇଲା।

ନବୀନ ହସି ହସି କହିଲା – ସଦାବେଳେ ରାଗ ଅଭିମାନ ତାର ଭରିରହିଛି।

ଦୁଇ ସାଥୀଙ୍କ ମଧ୍ୟରେ ସେହି ପ୍ରଥମ ମନ ଫଟାଫଟି ଆରମ୍ଭହୋଇଗଲା। ସେ ଫାଟର ଆକାର ବାହାରକୁ ଜଣାପଡୁନଥିଲେ ମଧ୍ୟ କିଆ ମନରେ ଏକ ଅଜଣା ଆଶଙ୍କା ଖେଳିଗଲା। ତିଳକୁ ତାଳ କରି କଥା କହିବାରେ ମାଳତୀ ଧୁରନ୍ଧର। ଆଜିକା କଥା କାହା ଆଗରେ କହିଦେଲେ ମିଛଟାରେ ଲୋକହସା ସାର ହେବ। ସେମାନଙ୍କ ପିଲାଦିନର ଅନ୍ତରଙ୍ଗତା ଭିତରେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମନର ଫାଟ ମଧ୍ୟ ବଢ଼ିଚାଲିବ। ମାଳତୀ ମୁଢ଼ି ଖାଇବାକୁ ମନାକରିବା ସଙ୍ଗେ ସଙ୍ଗେ ମନ ଭିତରେ କେତେ କ'ଣ ଭାବି ରାଗ ତମତମ ହୋଇ ଦୌଡ଼ିପଳାଇଛି। ଈର୍ଷାରେ ତାର ଅନ୍ତରାତ୍ମା ଜଳିଯାଇଛି।

ନବୀନ କିଆକୁ ଭଲପାଉଛି। ତା' ସହିତ ବସି ଖୁସି ଗପ ହେବାକୁ ତାକୁ ଭଲଲାଗୁଛି। ସେ ଦିନଟିଏ ମଧ୍ୟ ମାଳତୀ ସହିତ ଭଲରେ କଥା ଦୁଇପଦ ହେଲାନାହିଁ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ମାଳତୀ ମନର ଈର୍ଷା ମଧ୍ୟ ବଢ଼ିଚାଲିଛି। ଈର୍ଷା ନାରୀର ଏକ ସହଜାତ ପ୍ରବୃତ୍ତି। ଗୋଟିଏ ନାରୀ ଅନ୍ୟ ଏକ ନାରୀକୁ ସହଜରେ ଦେଖିପାରେନାହିଁ। ଠିକ୍ ସେହି ଭାବରେ ମାଳତୀ; ଦିନକୁଦିନ କିଆପ୍ରତି ତାର ମନର ରାଗ ବଢ଼ିଚାଲିଛି।

କିଆ ମନେ ମନେ ଭାବୁଥାଏ – ମାଳତୀ ତ ଆଗେ ଏମିତି ନଥିଲା ? ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାର ପ୍ରତି କଥାରେ କେମିତି ରାଗ ଅଭିମାନ ଭରିରହିଲାଭଳି ମନେହେଉଛି। କିଆ ଏମିତି କେତେ କ'ଣ ଭାବିଚାଲିଥାଏ। ମାଳତୀ କଥା ଆଜି ତାକୁ କେମିତି କେମିତି ମନେହେଲା। ଉପରେ କିଛି ନକହିଲେ ମଧ୍ୟ ମନରେ ତାର ଆଶଙ୍କା ଖେଳିଗଲା। ବନେଇଚୁନେଇ କଥାଟାକୁ ନେଇ ମାଳତୀ କେଉଁଠି ଥୋଇଦେଲେ କଥା ସରିଲା। ବାପ ମା' ଶୁଣିଲେ ଘରେ ଆଉ ତାକୁ ରଖେଇଦେବେନାହିଁ। ବଣକୁ ଛେଳି ଚରାଇବାପାଇଁ ଆଉ ପଠେଇବେନାହିଁ। ଦିନଟିଏ ନବୀନକୁ ନ ଦେଖିଲେ ସେ ଥୟ ଧରି ରହିପାରିବନାହିଁ। ଏତେ ଆଶଙ୍କାରେ ମଧ୍ୟ ନବୀନର କଥା ଭାବି ତାର ମନ ପୁଲକିତ ହୋଇଯାଉଥାଏ। ତଥାପି ଭୟ-ଆଶଙ୍କାରେ ମନ ତାର ଉଦାସ ହୋଇଯାଉଥାଏ।

## (୭)

ଦାଣ୍ଡର ଦୁଇପାଖରେ ଲଗାଲଗି ଅନେକ ଚାଳଘର; ଛପର ଛାଆଣି ଘର। ଗାଁମୁଣ୍ଡରେ ପୋଖରୀ। ଗାଁର ସଭିଏଁ ସେହି ପୋଖରୀକୁ ଭରସା କରି ସବୁ

କାମ ଚଳାଇନିଅନ୍ତି। ମାଇପିଙ୍କ ତୁଠ ଏବଂ ପୁରୁଷଙ୍କ ତୁଠ ଦୂରରେ ଦୂରରେ। ଗାଁର ଅତି ନିକଟରେ ବୁଦୁବୁଦୁକିଆ ଜଙ୍ଗଲ।

ଗାଁଟିକୁ ଛୋଟ ବଡ଼ କେତେକ ପାହାଡ଼ ଘେରି ରହିଛି। ଛୋଟ ଗାଁଟି। ଗାଁର ବିକାଶ ଯେତେ ହେବା କଥା, ସେତେ ହୋଇପାରିନାହିଁ। ଗାଁ ରାସ୍ତାରେ ପଥର ପଡ଼ିବାପାଇଁ ଟଙ୍କା ଆସୁଛି; ମାତ୍ର ସେଥିରୁ ଯେ ଲାଭ ଉଠାଇବା କଥା, ସେ ଲାଭ ଉଠାଇନେଉଛି। ଗାଁ ଦାଣ୍ଡ ଏବର୍ଷ ଯାହା ଥିଲା; ଆରବର୍ଷକୁ ତାହାହିଁ ହୋଇ ରହିଯାଉଛି।

ଗାଁ ପୋଖରୀରୁ ମାଛମରାହେଉଛି। ସେହି ଟଙ୍କାରେ ଗାଁର ଉନ୍ନତି କରାଯିବ ବୋଲି ଗାଁଲୋକେ ମନପ୍ରାଣ ଦେଇ ପୋଖରୀର ମାଛ ବଢ଼ିବାରେ ସହଯୋଗ କରୁଛନ୍ତି। ମାତ୍ର ମାଛ ପୋଖରୀରୁ ମରାଯାଇ ବିକ୍ରିବଟା ହୋଇ ସେହି ଟଙ୍କା ପଞ୍ଚାୟତ ପାଣ୍ଠିକୁ ଯାଉନାହିଁ; ଲୋକପ୍ରତିନିଧି ଏବଂ କେତେ ଅମଲା ଅଫିସରଙ୍କ ପକେଟ୍‌କୁ ଚାଲିଯାଉଛି।

ଦେଶରେ ଅସଂଖ୍ୟ ଗାଁ ଅଛି। ଗାଁର ଉନ୍ନତି ନହେଲେ ଦେଶର ଉନ୍ନତି ହେବନାହିଁ ବୋଲି ସଭିଏଁ ଜାଣନ୍ତି। ଦେଶଟା ସିନା ବିରାଟ; ମାତ୍ର ଗାଁଟା ତ ଛୋଟ। ଏମିତି ଛୋଟ ଛୋଟ ଗାଁକୁ ନେଇ ଏ ଦେଶଟା ଗଢ଼ାହୋଇଛି। ଏମିତି ଛୋଟ ଛୋଟ ଗାଁମାନଙ୍କର ଉନ୍ନତି ହେଲେ ସମଗ୍ର ଦେଶଟାର ଉନ୍ନତି ହୋଇଯିବ। ଏ ତ ସହଜ କଥା, ସରଳ କଥା; ତଥାପି ଏତେ ସହଜ ଏବଂ ସରଳ କଥାଟାକୁ ଯିଏ ବୁଝିବାକଥା ସେହିମାନେ କିମିତି ବୁଝିପାରୁନାହାନ୍ତି ?

ଦେଶରେ ଅସଂଖ୍ୟ ଗାଁ ଅଛି, ଯେଉଁଠି ଆଜି ବି ମୁନ୍ଦେ ପିଇବା ପାଣି ମିଳେନାହିଁ। ଚିକିତ୍ସାର ସାମାନ୍ୟ ସୁବିଧା ନଥିବାରୁ ଗାଁଗଣ୍ଡାରେ ରୋଗ ହେଲେ ଔଷଧ ଟିକିଏ ଅଭାବରେ ଲୋକେ ପୋକ ମାଛି ପରି ମରିପଡ଼ନ୍ତି। ଚିକିତ୍ସାର ସାମାନ୍ୟ ସୁବିଧା ପାଇବାକୁ ହେଲେ ଦଶ-ପନ୍ଦର କିଲୋମିଟର ଦୂରକୁ ଯିବାକୁ ପଡ଼ିଥାଏ। ରୋଗୀକୁ ଖଟିଆରେ ବୋହିନେବା ଛଡ଼ା ଅନ୍ୟ ଉପାୟ ନାହିଁ। ରାସ୍ତାରେ ବସ୍ ଚାଲୁଥିଲେ ସେତକ ସୁବିଧା ହୁଅନ୍ତା; ତା' ମଧ୍ୟ ନାହିଁ। ଶିକ୍ଷାର ସୁବିଧାପାଇଁ ଗାଁଲୋକଙ୍କ ଉଦ୍ୟମରେ ଯାହା ହୋଇଛି, ସେତକ। ଗାଁଲୋକଙ୍କ ଉଦ୍ୟମ ନଥିଲେ ଲୋକେ ସେହି ତିମିରରେ ପଡ଼ିରହିଥାନ୍ତେ।

କାଳ କାଳଧରି ଅଜଣା ଅଶୁଣା ଭାବରେ ଅନେକ ଗାଁ ବଞ୍ଚିଛି ଏବଂ ବଞ୍ଚି ରହିଥିବ ମଧ୍ୟ। ସେମାନଙ୍କ କଥା କିଏ କହନ୍ତିନାହିଁ। ସେମାନଙ୍କ କଥା କିଏ ବୁଝନ୍ତିନାହିଁ। ଯେଉଁମାନେ ବୁଝିବା କଥା, ନିଜ ସ୍ୱାର୍ଥ ପାଇଁ ଗାଁକଥା ଟିକକ ସେମାନେ ଭୁଲିଯାଆନ୍ତି। ଏଭଳି ଅଜଣା ଅଶୁଣା ଭାବରେ ଅନେକ ଗାଁ ଯୁଗ ଯୁଗ ଧରି ନିଜ ସୁଖ-ଦୁଃଖରେ ବଞ୍ଚିରହିଛି। କଦବା ଥରେ ଉପର

ହାକିମ ଆସି ବୁଲି ଦେଖିଯାଆନ୍ତି। ଗାଁରୁ ଫେରି ସହରରେ ପାଦ ପଡ଼ିଗଲେ ଗାଁକଥାକୁ ଭୁଲିଯାଆନ୍ତି ପାଣିରେ ଗାର ପଡ଼ିଲାଭଳି– ଲିଭିଯାଏ ସ୍ମୃତିପଟରୁ।

ଦାରିଦ୍ର୍ୟ, ବେକାରୀ, ସାମାଜିକ ବୈଷମ୍ୟ, ଅନ୍ଧବିଶ୍ୱାସ ଗାଁଲୋକଙ୍କ ଚିର ସାଥୀ। ଆଜି ସଭିଏଁ ଗାଁର ଉନ୍ନତି ପାଇଁ ଲାଗିପଡ଼ିଛନ୍ତି। ଦାରିଦ୍ର୍ୟ ଦୂରୀକରଣ ପାଇଁ ନୂତନ ଉଦ୍ୟମ କରାଯାଉଛି; ମାତ୍ର ତାର ସୁଫଳ ମିଳିପାରୁନାହିଁ। ଦିନକୁଦିନ ଲୋକଙ୍କ ଭିତରେ ତାରତମ୍ୟ ବଢ଼ି ବଢ଼ି ଚାଲିଛି। ଜନସଚେତନତା ମାଧ୍ୟମରେ ଲୋକାଭିମୁଖୀ ଯୋଜନା ଜରିଆରେ ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ମଧ୍ୟରେ ଦାରିଦ୍ର୍ୟ ଦୂରୀକରଣ ପାଇଁ ବାସ୍ତବ ପଦକ୍ଷେପ ଆଜି ଅପରିହାର୍ଯ୍ୟ ହୋଇପଡ଼ିଛି। ଟଙ୍କା ଖର୍ଚ୍ଚ ହେଲେ ସବୁ ହୋଇଯାଏନାହିଁ। ସେଥିପାଇଁ ଲୋକଙ୍କ ମଧ୍ୟରେ ଚେତନା ଜାଗ୍ରତ ହେବା କଥା। କର୍ତ୍ତବ୍ୟରେ ନା ଅଛି ନିଷ୍ଠା, ନା ଅଛି ଆନ୍ତରିକତା; ତେଣୁ କୌଣସି ସୁଫଳ ମିଳିପାରୁନାହିଁ– ସବୁ ଫସରଫାଟିଯାଉଛି। ଯେଉଁମାନଙ୍କ ଉପରେ ଏ ଦାୟିତ୍ୱ ଅର୍ପିତ ହୋଇଛି, ସେମାନଙ୍କ ଆନ୍ତରିକତାର ଅଭାବ ଫଳରେ ଗାଁଗଣ୍ଡାର ଆଜି ଏହି ଅବସ୍ଥା। ସମସ୍ତେ ସବୁ କଥା ଜାଣୁଛନ୍ତି। ବିରାଡ଼ି ଆଖି ବନ୍ଦକରି ଦୁଧ ପିଇଲାଭଳି ସେମାନେ ଆଖି ବନ୍ଦକରିଦେଇଛନ୍ତି। ମୂକଙ୍କ ଭଳି ତୁଣ୍ଡରୁ କଥା ଫିଟୁନାହିଁ। ବଧୀରଙ୍କ ଭଳି ସବୁ ଶୁଣି ନଶୁଣିଲାଭଳି ରହୁଛନ୍ତି। ଶଠତା ଆଜି ସେମାନଙ୍କୁ ଜଡ଼ରେ ପରିଣତ କରିଦେଇଛି। ସ୍ଥାଣୁତା ଆମ ପ୍ରଗତିର ଏକ ବିରାଟ ପ୍ରତିବନ୍ଧକ ରୂପେ ଦେଖାଦେଇଛି। ତେଣୁ ଆଜି ଏକ ଆମୂଳଚୂଳ ପରିବର୍ତ୍ତନ ଆବଶ୍ୟକ। ସେ ଯେତେ କଷ୍ଟସାଧ୍ୟ ହେଉପଛେ, ଜଡ଼ତାର ମହାନିଦ୍ରାକୁ ଭାଙ୍ଗିବାକୁ ପଡ଼ିବ।

ଗାଁଟି ସାରା ଖାଇପିଇ ସମସ୍ତେ କେତେବେଳୁ ଶୋଇପଡ଼ିଲେଣି। ମଫସଲ ଗାଁ। ବେଳ ବୁଡୁବୁଡୁ ଅନ୍ଧାର ଘୋଟିଆସିଲେ ଲୋକେ ଖାଇପିଇ ଶୋଇଯାଆନ୍ତି। କିଏ ଚିମିନି ଆଲୁଅରେ କାମଟା ସାରିଦିଏ, କିଏ ସେତକ ମଧ୍ୟ ଯୁଟାଇ ପାରେନାହିଁ। କିଏ ଚୁଲି ନିଆଁରେ ମଧ୍ୟ ଖାଇବା କାମ ସାରିଦିଏ। ଦିନତମାମ ପରିଶ୍ରମ; ବିଲରେ ଖଟି ଖଟି ହାଲିଆ ହୋଇ ଘରକୁ ଫେରିଥାନ୍ତି। ଖାଇସାରି ଖଟ ଧରିଦେଲେ ଆପଣାଛାଏଁ ନିଦମାଡ଼ିଆସେ।

ରାତିର କଳା ପରଦା ଗାଁଟି ସାରା ଢାଙ୍କିଦେଇଛି। ଧୀରେ ଧୀରେ ରାତି ବଢ଼ିଚାଲିଛି। ନିଶା ଗର୍ଜୁଛି, ଝିଙ୍କାରିର ଝିଁ-ଝିଁ ଶବ୍ଦ ଶୁଭୁଛି। ମାତ୍ର ଆଜି କିଆ ଆଖିରେ ନିଦ ଆସୁନାହିଁ। ପାଖ କୋଠରିରେ ତାର ବାପ ମା' ଶୋଇଯାଇଛନ୍ତି। ଅନ୍ୟ ଏକ ଛୋଟ କୋଠରିରେ ସେ ଆଉ ତାର ଛୋଟ ଭଉଣୀ ସେବତୀ ଶୋଇଛନ୍ତି। ଆଠ-ଦଶ ବରଷର ଛୋଟ ଝିଅ ସେବତୀ କେତେବେଳୁ ଶୋଇପଡ଼ିଲାଣି। ପିଲାଟାଏ; ଖାଇସାରିଲେ ନିଦ ଘାରିଯାଏ।

କିଆ ମନରେ କେତେ କଥା ଖେଳିଯାଉଛି । ଯୌବନର ପହଲି ପରଶରେ କୁଆଁରୀ ମନରେ କେତେ ଆଶା ମନଗହନରେ ଉଙ୍କି ମାରି ଚାଲିଛି । କୁଆଁରୀ ମନ ଛନଛନ ହୋଇଉଠୁଛି । ଉଚ୍ଛୁଳା ଯୌବନର ପୁଲକ ମନରେ କେତେ ଆଶା ଜଗାଇଦେଇଛି । ଭାବନାର ସ୍ରୋତରେ ମନ କେତେ ଆଡ଼େ ଘୁରିଯାଉଛି । ନବୀନ, କେଡ଼େ ସୁନ୍ଦର ଯୁବକଟି । ବଳିଲା ବଳିଲା ବାହୁ, ଓସାରିଆ ଛାତି, ମୁହଁ ନାକ ତଳେ ଗଜୁରିଉଠୁଥିବା ନିଶ ତାର ମନକୁ ଆଲୋଡ଼ିତ କରିଦେଉଥାଏ । ତା' ମୁହଁକୁ ବାରବାର ଅନାଇ ରହିବାକୁ ମନ ହେଉଥାଏ; ମାତ୍ର ଲାଜରେ ସେ ଅନାଇପାରୁନଥାଏ ।

କିଆ ମନରେ କେତେ ଭାବନା ଖେଳିଯାଉଛି । ନବୀନ ସହିତ କଥାବାର୍ତ୍ତାରେ ତାକୁ କେତେ ଆନନ୍ଦ ଲାଗେ । ତା'ର କଥାରେ ସତେ କେତେ ମାଧୁର୍ଯ୍ୟ, କେତେ ମାଦକତା । ତା'ର ଚାହାଣିରେ ଭରିରହିଛି କେତେ ପୁଲକ । ମିଠା ମିଠା କଥା ତା'ଠୁଁ ଶୁଣିବାକୁ କେତେ ମଜାଲାଗେ । ସେହି କଥା ଆଜି ଗୋଟି ଗୋଟି ମନେପଡ଼ିଯାଉଛି । ନବୀନ ତାକୁ କେତେ ଶରଧାରେ କହୁଛି– "ତୋ' ମୁହଁଟି କେଡ଼େ ସୁନ୍ଦର, ତୋ'ର କଥା କେଡ଼େ ମଧୁର ।" ତା'ର ଏହି ମିଠାକଥା ପଦକ ଶୁଣୁ ଶୁଣୁ କିଆ ମନରେ ପୁଲକ ସୃଷ୍ଟି ହେଉଥିଲା । ତା' ମୁହଁରେ ହସ ଚହଟିଯାଇଥିଲା ।

ଏମିତି କେତେ କ'ଣ ସେ ଭାବିଚାଲିଛି । ଏତିକିବେଳେ ପାଖ କୋଠରିରୁ ତାର ମା'ର କଥା ଶୁଭିଲା । ସେ ପ୍ରଥମେ ଚମକିପଡ଼ିଲା । ମା' ଏତେବେଳ ହେଲା ଶୋଇନାହିଁ? ସେ ଏତେବେଳଯାଏ କ'ଣ ଭାବିଚାଲିଛି ? ନୀରବରେ ଖଟରେ ଶୋଇରହି କାନ ଡେରି ଶୁଣିବାକୁ ଚେଷ୍ଟାକଲା । ମନରେ କେତେ ଆଶଙ୍କା ଖେଳିଯାଉଥାଏ । ଆଜି ଏତେବେଳ ହେଲା ମା' ତା'ର ଶୋଇନାହିଁ; କ'ଣ ବାପାକୁ କହୁଛି ।

ସେ ଉତ୍‌କଣ୍ଠାର ସହ କାନ ଡେରି ନିଶ୍ୱାସ ରୁନ୍ଧି ଶୁଣିବାକୁ ଚେଷ୍ଟାକଲା । ମା' ତାର ବାହାଘର କଥା ପକାଇଛି; ବର ଠିକ୍ କରି ଶୀଘ୍ର ବାହାକରିଦେବାପାଇଁ ବାପାଙ୍କୁ କହୁଛି ।

କିଆ ମନ ଚଞ୍ଚଳ ହୋଇଉଠିଲା । ତା'ର କାନମୁଣ୍ଡ ଝାଇଁ ଝାଇଁ ହୋଇଗଲା । ବାହାଘର କଥା ଶୁଣି ସେ ପ୍ରଥମେ ଚମକିପଡ଼ିଲା । ତାର ସାରା ଦେହ ରୋମାଞ୍ଚିତ ହୋଇଉଠିଲା ।

କିଆ ମୁହଁ ଉଠାଇ କବାଟ ଫାଙ୍କରେ ବାହାରକୁ ଅନାଇଲା । କେଉଁ ଅଜଣା ତିଥିର ଜହ୍ନ ବାଦଲ ସହ ଲୁଚକାଳି ଖେଳଲଗାଇଦେଇଛି– କେତେବେଳେ କଳା ମେଘ ଭିତରେ ଲୁଚିଯାଇ ଅନ୍ଧକାର କରିଦେଉଥାଏ ତ କେତେବେଳେ

ମୁହଁ ଦେଖାଇ ଧରିତ୍ରୀକୁ ଆଲୋକିତ କରିଦେଉଥାଏ। କିଆ ସତର୍କତାର ସହ ନିଶ୍ୱାସ ବନ୍ଦକରି ଖଟରେ ପଡ଼ିରହିଲା।

ବାପ ତାର କଡ଼ ଲେଉଟାଇଲା। କଡ଼ ଲେଉଟାଇଲା ବେଳକୁ ତାର ଶୋଇବା ଖଟ କଟ୍‌କଟ୍ ଶବ୍ଦ ହେଉଛି। କିଆର ମନ ଅଜଣା ଆଶଙ୍କାରେ ଥରିଉଠୁଥାଏ ବାପ ତାର କ'ଣ କହିବ ଶୁଣିବ ବୋଲି। ବାପଠୁଁ ଉତ୍ତର ନଶୁଣି ମା' ତାର ବ୍ୟସ୍ତ ହୋଇ କହୁଛି– ''ମୁଁ ପଚାରୁଛି, କିଛି କହୁନ ଯେ।''

କିଛିକ୍ଷଣ ପରେ ବାପ ତାର କହିଲା– ''ଏତେ ତରତର କିଆଁ ?''

ସତେ ଯେପରି ବାପର ଉତ୍ତରକୁ ସେ ଅପେକ୍ଷା କରିଥିଲା। ମା' ଟିକିଏ ରାଗ ଅଭିମାନ କଲାଭଳି କହିଲା– ''କଅଣ କହିଲ ? ଝିଅ ଆସି କେତ୍ରୁଟିଏ ହେଲାଣି, କେତେବେଳେ କେଉଁ କଥା। ତମେ କହୁଛ କ'ଣନା, ଏତେ ତରତର କିଆଁ। ଝିଅ, ପରଦରବ; ଆମେ ତାକୁ ବେଳ ଦେଖି ଉଠାଇଦେବା କଥା। ଭଲ ଅଛି, ମନ୍ଦ ଅଛି। ବୟସ ହେଲେ ସବୁ ଝିଅ ବାହାହୋଇପଡ଼ନ୍ତି। ଯେତେ ଭାଇକୁ ସେତେ ଘର, ଯେତେ କନିଆକୁ ସେତେ ବର। ଏ ତ ଚାଲିଛି, ଚାଲିଥିବ। ମୋ' କଥା ତୁମକୁ ଶୁଭୁଛି ନା ନାହିଁ?''

ବାପ ପୁଣି କହିଲା– ''ତୋ' ମନ ସଦାବେଳେ ପାପ ଭରିରହିଛି।''

''ତମେ କ'ଣ ଜାଣିବ...'' –ମା' ମନ ସଦାବେଳେ ଝିଅ ଉପରେ ଆଖି ପଡ଼ିରହିଥାଏ। ତାକୁ ଭଲ ବର ଦେଖି ବିଦାୟ ନକଲାଯାଏ ମା' ମନରେ ଶାନ୍ତିନାହିଁ।''

ଏତକ ଶୁଣି କିଆର ଛାତି ଧଡ୍‌ଧଡ୍ ହେଲା। ଝିଅଜନମ କ'ଣ ପରଘରକୁ? ସବୁ ମା' କ'ଣ ନିଜ ଝିଅକୁ ପରଘରକୁ ବିଦାୟ ନକଲା ପର୍ଯ୍ୟନ୍ତ ଶାନ୍ତିରେ ରହିପାରନ୍ତି ନାହିଁ? ମୋ' ପାଇଁ ମା' ମନରେ କେତେ ଯେ ଶଙ୍କା ଭରିରହିଛି। ମୁଁ ତ ଏଭଳି କୌଣସି କାମ କରିନାହିଁ, ଯା' ପାଇଁ ତା' ମନରେ ଶଙ୍କା ଦେଖାଦେବ? ଝିଅ ବଡ଼ହୋଇଗଲେ ସବୁ ମା' ମନେମନେ ଝିଅକୁ ସଦା ସଜାଗ ଦୃଷ୍ଟିରେ ଦେଖିଥାନ୍ତି। ଝିଅ କେତେବେଳେ କେଉଁଠି କିଛି ଭୁଲ କରିପକାଇବ କି? କିଆ ମନରେ କେତେ ଅଜଣା ଭୟ ଆଶଙ୍କା ଖେଳିଗଲା।

ବାପ ତାର କହୁଛି– ''ଏଇନେ ପାଖରେ ଟଙ୍କା ନାହିଁ। ଯାହା ସଂଚୟ କରିଛି, ଏ ବର୍ଷ ନୂଆ ହଳ ନକିଣିଲେ ନଚଳେ; ଚାଷ ଉଠିବ ନାହିଁ। ଯେଉଁ ହଳ ଥିଲା ସେ ଅକାମୀ ହୋଇଗଲାଣି; ଲଙ୍ଗଳ ଟାଣିପାରୁନାହାନ୍ତି। ଆଉ ବର୍ଷଟିଏ ଅପେକ୍ଷା କରିଯାଅ; ତା'ପରେ ଝିଅ ବାହା କଥା ଚିନ୍ତା କରିବା।''

କିଆ ତାର ମା' ବାପାଙ୍କ କଥା ଆଉ ବେଶୀ ଶୁଣିବାକୁ ଚେଷ୍ଟାକଲାନାହିଁ। କିଆ ନୀରବ ନିଶ୍ଚଳ ହୋଇ ଆଖି ବନ୍ଦକରି ଭାବିଚାଲିଲା ନବୀନକୁ। ନବୀନ

ଏତେବେଳେ କ'ଣ କରୁଥିବ ? ସେ କ'ଣ ମୋ' କଥା ମନେପକାଉଥିବ ? ଦିନତମାମ ଗାଈ ଅଡ଼େଇ ହାଲିଆ ହୋଇ ଶୋଇଯାଇଥିବ। ଖରାରେ ସିଝି ବର୍ଷାରେ ଭିଜି, ଗାଈ ଅଡ଼େଇବା ତାର ନିତିଦିନିଆ କାମ। ନବୀନର ମନ କେତେ ସରଳ। ଦେଖିବାକୁ କେଡ଼େ ସୁନ୍ଦର ସେ। ତା'ଠି ଛନ୍ଦ କପଟ କିଛିନାହିଁ। ସରଳ ତାର ଚାହାଣି। ତାର ଚାହାଣି କେତେ ସୁନ୍ଦର। ତାର କଥା ଶୁଣିବାକୁ ଲାଗେ କେତେ ମଧୁର। ଏମିତି ଭାବି ଭାବି ଭାବବିହ୍ୱଳ ହୋଇ ତା' ଆଖିକୁ କେତେବେଳେ ନିଦ ଆସିଯାଇଛି; ଶୋଇପଡ଼ିଛି ଅଚେତ ହୋଇ।

ସ୍ୱାମୀ ମଦନର କଥା ଶୁଣି ରେବତୀ ମୁହଁରେ ବିଷାଦର ଛାୟା ଖେଳିଗଲା। ଅନ୍ଧାରରେ କିଛି ଜଣାନଗଲେ ମଧ୍ୟ ମଦନର କଥାରୁ ତା' ମନରେ ରାଗ ଚହଟିଆସିଲା। ବିରକ୍ତ ହୋଇ କହିଲା– "ତମେ କ'ଣ କିଛି ଜାଣିପାରୁନାହଁ ? ଝିଅ ବଅସ ବଢ଼ି ବଢ଼ି ଯାଉଛି; ଷୋହଳ ପୂରି ସତର ଚାଲିଲାଣି। ଆମ କୁଳରେ ଏତେ ବଅସରେ ଝିଅ ବାହାନହୋଇ କିଏ ଅଛି ? ସଭିଏଁ ବାହାହୋଇ-ଗଲେଣି। ଆମେ ଆଉ କେତେଦିନ ପରଦରବକୁ ଘରେ ସାଇତି ରଖିଥିବା ? ଝିଅ ଘିଅ, ବେଶୀଦିନ ରଖିଲେ ଭଲ ନୁହେଁ।"

– ରେବତୀ ଏହାକହି ତା' ସ୍ୱାମୀଠୁଁ କିଛି ଶୁଣିବ ବେଲି ଅପେକ୍ଷା କଲା।

–"ହଁ, ମୁଁ ସବୁ ବୁଝୁଛି ଯେ। ବାହାଘର କ'ଣ ପିଲାଙ୍କ ଖେଳଘର। ଜୀବନ ସଉଦାଟି। ସେଥିପାଇଁ ଥୟଧର।

ମଦନ ଟିକିଏ କ'ଣ ଭାବି କହିଲା– "ଝିଅପାଇଁ କିଛି ସୁନା ଗହଣା ଦରକାର। ସେଥିପାଇଁ ଯୋଗାଡ଼ କରିବାକୁ ପଡ଼ିବ ? ଏତକ କରିବାକୁ ସମୟ ଦରକାର। ତା'ପାଇଁ ଟଙ୍କା ଦରକାର। ଏତେ ଟଙ୍କା ଆମଠି କେଉଁଠି ଅଛି ? ଏ ବର୍ଷ ଧାନ ଅମଳ କଲା ପରେ ତାକୁ ବିକି ସୁନା କିଣି ଝିଅପାଇଁ ଗହଣା କରିବାକୁ ପଡ଼ିବ। କିଛି ନହେଲେ ତ କମ୍ ପକ୍ଷେ କାନରେ ସୁନାଫୁଲ ଯୋଡ଼ି, ନାକରେ ଗୁଣା, ଜ୍ୱାଇଁ ପାଇଁ ମୁଦିଟିଏ। ଏତକ କରିବାପାଇଁ ଅଧ ଭରିରୁ ଅଧିକା ଲାଗିଯିବ। ମୁଁ କ'ଣ ଝିଅକୁ ଏମିତି ସେମିତି ବିଦାକରିଦେବି ?"

ରେବତୀ ନୀରବରେ ସବୁ ଶୁଣୁଥାଏ।

–"ଭୋଜିଭାତ ପାଇଁ କେତେ ଯୋଗାଡ଼ ଦରକାର। ଗାଁଲୋକଙ୍କୁ ଭଲ ଭୋଜିଟିଏ ନଦେଲେ କ'ଣ ଆମକୁ କହିବେ ? ଗାଁଲୋକେ କ'ଣ ଆମକୁ ସହଜେ ଛାଡ଼ିବେ ?"

ବିବାହର ତପ୍ତ-ବୈତରଣୀ ପାରହେବାପାଇଁ ରେବତୀର ମନ ଛଟପଟ ହେଉଥାଏ। ବାହାଘର ଶୀଘ୍ର ସାରିଦେଲେ ମୁଣ୍ଡରୁ ବୋଝ ଖସିଯିବ। ମା' ହିସାବରେ ଏବର୍ଷ ସେତକ ତା'ରି କାମ।

ରେବତୀ ମନରେ ଆଶଙ୍କା କରିବା କିଛି ଭୁଲ ନୁହେଁ। କାଲି ଗାଁ ସାରା ରାଷ୍ଟ୍ରହୋଇଯାଇଛି। ସୋମବାରୀ ବାହାହୋଇ ତିନିମାସ ହୋଇଛି; ମାତ୍ର ତା' ପେଟରେ ଛଅମାସର ଛୁଆ ଖେଳୁଛି। କଥାଟା ଲୁଚି ରହିଲାନାହିଁ। ଲାଜ ଶରମକୁ ଘୋଡ଼ାଇଲେ ସହଜରେ କ'ଣ ଘୋଡ଼ାଇହୁଏ ? ନିଆଁକୁ ପଣତକାନିରେ ବାନ୍ଧିଲେ କ'ଣ ବାନ୍ଧିହୁଏ ? ଲୁଚିବା ଜିନିଷ ହେଲେ ସିନା ଲୁଚନ୍ତା ! କଥାଟା ପ୍ରଘଟ ହୋଇଗଲା। ତାକୁ ପଅରଦିନ ରାତାରାତ୍ ତା' ଶାଶୁଘର ଲୋକ ତାକୁ ଆଣି ତା' ବାପଘରେ ଛାଡ଼ିଦେଇ ଯାଇଛନ୍ତି। ଏଭଳି ଦୋଚାରୁଣୀକୁ ସେମାନେ ଆଉ ଘରେ ପୂରାଇବେନାହିଁ। ଏଇଭଳି କେତେ ଯେ ଘଟଣା ଘଟିଯାଉଛି। କଥାଟାକୁ ଲୁଚାଇବାପାଇଁ ଚେଷ୍ଟା ହୁଏ, ମାତ୍ର ଲୁଚିରହେନାହିଁ। ପାପ ଆଜି ନହେଲେ କାଲି ପ୍ରଘଟ ହେବହିଁ ହେବ।

ରେବତୀ ଏମିତି କେତେ କ'ଣ ଭାବି ମନ ତାର ଆଶଙ୍କାରେ ଭରିଯାଇଥାଏ। ତେଣୁ ଝିଅ ବାହାଘର ଶୀଘ୍ର ସାରିଦେବାପାଇଁ ମନ ତାର ବ୍ୟାକୁଳ ହୋଇଉଠୁଥାଏ।

ସ୍ୱାମୀକଥା ମଧ୍ୟ ତା' ମନକୁ ପାଉଥାଏ। ସେ ମନେ ମନେ କେତେ କଥା ଭାବିଚାଲିଥାଏ। ମଦନା ପାଟିକରି ପୁଣି କହିଲା– ''ମୋ କଥାସବୁ ଶୁଣୁଛୁ ନା ଶୋଇପଡ଼ିଲୁଣି ?''

ରେବତୀ ମଦନାର ପାଟି ଶୁଣି ତୁନି ତୁନି କହିଲା– ''ଏତେ ପାଟି କରୁଛ; ପାଖ କୋଠରିରେ ଝିଅ ଶୋଇଛି ପରା ?''

–''ସେ କ'ଣ ଏତେବେଳଯାଏ ଆମ କଥା ଶୁଣିବାପାଇଁ ଚେଇଁରହିଥିବ ?'' ମଦନା ସ୍ୱର କମାଇ ତୁନି ତୁନି ଏତକ କହିଲା।

–''ତୁମର ପାଟି ଶୁଣିଲେ ଶୋଇଲା ଲୋକ ବି ଚେଇଁଉଠିବ।'' ରେବତୀ ଅନ୍ଧାରରେ ମୁହଁରେ ହସ ଫୁଟାଇ ଏତକ କହିଲା।

–''ତୁ କାହିଁକି ଏତେ ଦୂରରେ ଶୋଇଛୁ ଯେ, ପାଖକୁ ଟିକିଏ ଲାଗି ଶୋଇଲେ ମୁଁ ଆସ୍ତେ ଆସ୍ତେ କୁହନ୍ତିନାହିଁ କି ?''

ଅନ୍ଧାରରେ କିଛି ଦେଖାଗଲାନାହିଁ ସତ, ମାତ୍ର ମଦନ କଥା ଶୁଣି ରେବତୀ ଓଠରେ ହସ ଫୁଟିଉଠିଲା। କିଛି ସମୟ ଚୁପ୍‌ରହି ରେବତୀ ଲାଜେଇଯାଇ କହିଲା– ''ମୁଁ ପାଖକୁ ଲାଗିଗଲେ ତୁମେ କ'ଣ ତୁନିରହିବା ମଣିଷ ! ମନଦର କଥା ପଦକର କେଉଁ ଆକର୍ଷଣବଳରେ ରେବତୀ ଦୂରରୁ ପାଖକୁ ଘୁଞ୍ଚିଆସିଲା।

ମଦନ ହାତ ବୁଲାଇ ତାକୁ ପାଖକୁ ଆଣିଲା। ରେବତୀର ସମଗ୍ର ଶରୀର ରୋମାଞ୍ଚିତ ହୋଇଉଠିଲା। ଆନନ୍ଦରେ ମନ ପୁଲକିତ ହୋଇଗଲା। ଫିସ୍‌ଫିସ୍ କରି ରେବତୀ କହିଲା– ''ଆରେ, କଥା କୁଆଡ଼େ ଗଲାଣି। ତୁନିହୋଇ ଶୋଇପାରୁନାହଁ କି ?''

ମଦନ ଭାବବିହ୍ୱଳ ହୋଇ କହିଲା– ''ସତ ରେବୀ, ତୁ ଯେମିତି ମୋ'ରି ଏକା . . .''

ଗୋଟିଏ ନୀଡ଼ରେ ବସାବାନ୍ଧିଥିବା ବିହଙ୍ଗମିଥୁନ ଭଳି ଭାବବିହ୍ୱଳରେ ଦୁହେଁ ପରସ୍ପରର ସାନ୍ନିଧ ପାଇଁ ବ୍ୟାକୁଳ ହୋଇଉଠିଥିଲେ। ମୁହୂର୍ତ୍ତକ ମଧ୍ୟରେ ଏକାକାର ହୋଇଗଲେ ଦୁଇଟି ପ୍ରାଣୀ। ବାହୁବନ୍ଧନ ଭିତରେ ଉଭୟେ ଆତ୍ମ-ବିସ୍ମୃତ ହୋଇଗଲେ। ଅର୍ଦ୍ଧ-ନିମିଳିତ ହୋଇଗଲା ଚକ୍ଷୁଯୁଗଳ। କାହାରି ତୁଣ୍ଡରୁ କଥା ପଦଟିଏ ମଧ୍ୟ ବାହାରିଲାନାହିଁ। ତନୁ ମନ ଏକ ଉଚ୍ଛୁଳା ପ୍ରବାହରେ ଚହଲି ଯାଉଥାଏ। ପ୍ରାଣର ପ୍ରତ୍ୟେକ ତନ୍ତ୍ରୀରେ ବୀଣାର ମଧୁର ଗୁଞ୍ଜନର ସ୍ୱର-ଲହରୀ ସୃଷ୍ଟିହୋଇ ମନ ଏବଂ ତନୁକୁ ପୁଲକିତ କରିଦେଉଥାଏ। ନୀରବ ନିଶ୍ଚଳରେ ଦୁଇପ୍ରାଣୀ ଶୋଇପଡ଼ିଲେ। ଆତ୍ମତୃପ୍ତିରେ ମନ ଉଲ୍ଲସିତ ହୋଇଯାଇଥାଏ। ମୁହଁରେ ଫୁଟିରହିଥାଏ ପ୍ରଫୁଲ୍ଲତାର ଚିହ୍ନ।

(୮)

ତହିଁ ଆରଦିନ କିଆ ତା'ର ବାପ ଆଗକୁ ଆସିବାକୁ ତାକୁ କେମିତି ଲାଜମାଡ଼ିଆସିଲା। ବାପ ମା'ଙ୍କ ମୁହଁକୁ ଚାହିଁପାରିଲାନାହିଁ। ସେ ମନେମନେ କେତେ କଥା ଭାବିଚାଲିଥାଏ। ସେ ଏଇନେ ବଡ଼ହୋଇଗଲାଣି; ସେଦିନର ଛୋଟ ଝିଅ ହୋଇ ସେ ଆଉ ରହିନାହିଁ। ବୟସ ତାର ବଢ଼ିବଢ଼ି ଯାଉଛି। ଲୁଗା ତଳେ ତାର ବଢ଼ନ୍ତା ଦେହର ଯୌବନକୁ ଆଉ ଲୁଚାଇ ରଖିହେଉନାହିଁ। ଦେହର ଯେଉଁ ଯେଉଁ ଅଂଶରେ ମାଂସ ଲାଗିଲେ ଝିଅମାନେ ଲାବଣ୍ୟମୟୀ ହୋଇଉଠନ୍ତି, ସେଭଳି ତା' ଦେହରେ ମାଂସ ଲାଗିବା ଫଳରେ ସେ ମଧ୍ୟ ଲାବଣ୍ୟମୟୀ ହୋଇଉଠୁଛି।

ଦେହର ଗଠଣ ମଧ୍ୟ ଦିନକୁଦିନ ବଦଳିଯାଉଛି। ଦେହର ମେଦ ମାଂସ ବୃଦ୍ଧି ସଙ୍ଗେ ସଙ୍ଗେ ମନର ଭାବନା ମଧ୍ୟ ବଢ଼ି ବଢ଼ି ଚାଲିଛି। ମାଆ କହୁଥିଲା, ତାର ବାହା ହେବା ବୟସ ହୋଇଗଲାଣି। ତାଙ୍କ କୁଳରେ ଝିଅ ବଢ଼ିଗଲେ ବାହା ବୟସ ଆପେ ଆପେ ଚାଲିଆସେ। ସେ ବାହାପାଇଁ ଯୋଗ୍ୟାହୋଇଯାଏ। ଘରେ ସେ ଆଉ ରହେନାହିଁ; ଶାଶୁଘରକୁ ବିଦାୟ ହୋଇଯାଏ। ପ୍ରମିଳା, ଚଞ୍ଚଳା, ନୂଆଦେଈ, କମଳୀ ସଭିଏଁ ବାହାହୋଇ ଶାଶୁଘରକୁ ଚାଲିଗଲେଣି। ଏଇ ତ କାଲିଭଳି ମନେହେଉଛି। ପ୍ରମିଳା ଶାଶୁଘରୁ ଆସିଛି; କାଖରେ ଛୁଆଟିଏ ଧରି ଗାଁଦାଣ୍ଡରେ ହସି ଖେଳି କେତେ କଥା କହିଯାଉଛି। ଶାଶୁଘରୁ ବାପଘରକୁ

ଆସିଲେ ସତେ ଯେପରି ସେମାନଙ୍କ ବୋହୂପଣିଆ କୁଆଡ଼େ ଲୁଚିଯାଏ; ବାପଘରେ ସତେ ଯେପରି ପୁଣି ଅଭିଆଡ଼ୀ ଝିଅ ପାଲଟିଯାଆନ୍ତି। ଏଇମିତି ଭାବିଭାବି କିଆମୁହଁରେ ହସ ଚହଟିଆସିଲା।

କିଆ ଘରଭିତରୁ ଢାଳଟାରେ ପାଣି ଆଣି ବାପ ଆଗରେ ଥୋଇଦେଇ ଲାଜ ଲାଜ ହୋଇ ଚଞ୍ଚଳ ଘର ଭିତରକୁ ଚାଲିଗଲା। ମଦନ ଅପଲକ ନୟନରେ ଝିଅକୁ ଚାହିଁରହିଥାଏ। ମନରେ ତାର କେତେ କଥା ଖେଳିଗଲା– ସତେ ତ ଝିଅ ତାର ଆସି କେଡୁଟିଏ ହେଲାଣି; ସେ କଥା ଖିଆଲ ନଥିଲା। ମୁଁ ତ ଟିକି ଝିଅଟିଏ ବୋଲି ଭାବିନେଇଥିଲି। ସତେ ତା' ମା' ରାତିରେ ମୋତେ ଏତେ କଥା କହିନଥିଲେ, ମୁଁ ତ ତଥାପି କିଆ ଆମର ସେହି ଗେଲବସରର ସାନ ଝିଅ ବୋଲି ଭାବୁଥାନ୍ତି।

ଝିଅ ମୋର କେତେ ବଡ଼ ହୋଇଗଲାଣି; ତା' ମା' ସମାନ ହୋଇଗଲାଣି। ଫ୍ରକ୍‌ପିନ୍ଧା ଛାଡ଼ି ଶାଢ଼ିପିନ୍ଧା ଆରମ୍ଭକଲାଣି, କେତେ ବଦଳିଗଲାଣି। ସମୟ ଗଡ଼ିଚାଲିଯାଉଛି, ମୁଁ କିଛି ଜାଣିପାରିଲି ନାହିଁ। ଝିଅ ମୋର ବାହାହେବ, ଘର-ସଂସାର କରିବ। ତା'ରି କୋଳରେ ମଧ୍ୟ ପୁଅ ଝିଅ ଖେଳିବେ। ନାତି, ନାତୁଣୀକୁ ଧରି ମୁଁ ଗେହ୍ଲାକରିବି। ସତେ ମୋତେ କେତେ ମଜା ଲାଗିବ। ତାର କୁନା କୁନି ପୁଅଝିଅ ମୋ' ପିଠିରେ ଲାଉହେଉଥିବେ। ମୋ' ମୁଣ୍ଡର ବାଳ ଟାଣୁଥିବେ। ମୋତେ କେତେ ମଜା ଲାଗୁଥିବ... ଏମିତି କେତେ କ'ଣ ଭାବିଚାଲିଥାଏ। ଭାବନା ଭିତରେ ତା' ମୁହଁରେ ହସର ଲହରୀ ଖେଳିଗଲା। ଆନନ୍ଦରେ ସେ ହସିଉଠିଲା ଏକ ମନଖୋଲା ହସ।

ସ୍ୱାମୀର ହସ ଶୁଣି ରେବତୀ ଘର ଭିତରୁ ତାର କାମ ଛାଡ଼ିଦେଇ ଦୌଡ଼ିଆସିଲା। ମଦନ ହସି ହସି ଗଡ଼ିଯାଉଥାଏ। ସ୍ୱାମୀକୁ ଏଭଳି ହସୁଥିବା ଦେଖି ରେବତୀ ପାଟିକଲା– ''କ'ଣ ତୁମକୁ ଭୂତ ଲାଗିଲା କି? ଏମିତି ହସୁଛ କିଆଁ?''

କିଆ ମଧ୍ୟ ଦୌଡ଼ିଆସି ତା' ବାପ ଏଭଳି ହସୁଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ବାପମୁହଁକୁ ଅନାଇରହିଲା।

ରେବତୀ ପାଟିକରୁଥାଏ– ''ସକାଳୁ କୁଆଡ଼େ ଯାଇ ଭାଙ୍ଗ ଖାଇ ଆସିଛ କି?''

ମଦନ ତାର ସ୍ତ୍ରୀର ପାଟିରେ ନିଜକୁ ସମ୍ଭାଳିନେଇ କହିଲା– ''ସତେ ତ, ମୋ' ଝିଅ କେଡ଼େଟିଏ ହୋଇଗଲାଣି। ମୋତେ କ'ଣ ଜଣାଥିଲା?''

ରେବତୀ ଚିଡ଼୍‌ଚିଡ଼୍ ହୋଇ କହିଲା– ''ଆହା... ଲୋ, ମୋ ଭୋଳାନାଥ, ଏଇନେ ସତେ ହେତୁ ହେଲା।''

ମଦନ ତା' ଝିଅକୁ ଦେଖିନେଇ କହିଲା– ''ଆଲୋ ମା' କିଆ, ଅଇଲୁ ମୋ ପାଖକୁ।''

ବାପର ଏଭଳି କଅଁଳିଆ ଶରଧା ଡାକ ଶୁଣି କିଆ ଶଙ୍କି ଶଙ୍କି ପାଖକୁ ଚାଲିଆସିଲା।

–''ତୋ' ମା' କହୁଛି, ତୁ ବଡ଼ହୋଇଗଲୁଣି ବୋଲି। ଦୁନିଆ ବି ସେ କଥା କହୁଛି। ହେଲେ ମଧ୍ୟ ତୁ ମୋର ସେହି ଗେଲବସରର କୁନିଝିଅ।

ତାକୁ ସ୍ନେହରେ ପାଖକୁ ଟାଣିଆଣି ଶରଧାରେ ତା' କପାଳରେ ଚୁମା ଦେଲା। ଆଖିରୁ ତା'ର ଆନନ୍ଦାଶ୍ରୁ ଗଡ଼ିପଡ଼ିଲା। ରେବତୀ ସବୁ ଦେଖୁଥାଏ, ସବୁ ଶୁଣୁଥାଏ। ଘର ଝାଡୁ କରୁ କରୁ କହିଲା– ''ନାହିଁ ନାହିଁ, ତୁମ ଝିଅ ଏଇନେ ବି ପାଞ୍ଚବରଷର ସେହି ଗେହ୍ଲା ଝିଅ ହୋଇ ରହିଛି।''

ମଦନ ହସି ହସି କହିଲା– ''ବାପ ଆଗରେ ଝିଅ ସଦାବେଳେ ଗେହ୍ଲା ଝିଅ ହୋଇ ରହିଥାଏ। ଯେତେ ବଡ଼ ହେଲେ ମଧ୍ୟ ତା' ଆଗରେ ସେହି ଛୋଟ ଟିକି ଝିଅ ଭଳି ଦେଖାଯାଉଥାଏ।''

–''ତୁମକୁ ସତେ ଭୂତ ଚଢ଼ିଛି; ନହେଲେ ଏମିତି କହୁଥାଆନ୍ତ କେମିତି ?''

କିଆ ଲାଜରେ ବାପ ପାଖରୁ ଦୌଡ଼ି ପଳାଇଯାଇ ତା' ମା' ପଛରେ ଲୁଚିଗଲା। ସେ ଆତ୍ମସ-ଚେତନ ହୋଇଉଠିଲା। ସେ ଆଉ ସାନ ଝିଅ ହୋଇ ରହିନାହିଁ; ବଢ଼ିଲାଝିଅ। କେତେ ବଡ଼ ହୋଇଗଲାଣି। ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେହର ଗଢ଼ଣ, ଉଚ୍ଚତା ମଧ୍ୟ ବଢ଼ିଚାଲିଛି। ଝିଅ ବଢ଼ିଗଲେ କେତେ ଶୀଘ୍ର ବଢ଼ିଯାଏ, କାହାକୁ କିଛି ଜଣାପଡ଼େନାହିଁ। ସମୟ ବଢ଼ିଗଲାଭଳି ଝିଅ ମଧ୍ୟ ବଢ଼ିଚାଲିଥାଏ।

## (୯)

ପରିଆ ଡଙ୍ଗର ପାଦଦେଶରେ ଛୋଟ ଝରଣାଟିଏ କୁଳୁକୁଳୁ ନାଦରେ ବୋହିଯାଉଛି। ସ୍ୱଚ୍ଛ ନିର୍ମଳ ଜଳଧାର। ଝରଣାଟି ଶିଳାବନ୍ଧୁର ପଥ ଦେଇ କଳକଳ ନାଦରେ ବୋହିଯାଉଥାଏ। କେତେବେଳେ କଣ୍ଟକମୟ ଗୁଳ୍ମପଥ ଦେଇ ଧୀର ମନ୍ଥର ଗତିରେ ଲାଜକୁଳି ଭୂଆସୁଣୀଟିଏ ଭଳି ପାଦ ଛପି ଛପି ବୋହିଯାଉଥାଏ ତ କେତେବେଳେ ପଥଭ୍ରାନ୍ତ ହୋଇ ଇତସ୍ତତଃ ହୋଇ ବୋହିଯାଉଥାଏ– ସତେ ଯେପରି ମନ ତାର ଅସ୍ଥିର। ସେହି ଗୋଟିଏ ଝରଣା; ବିଭିନ୍ନ ପରିବେଶରେ ତାର ଗତିର ମଧ୍ୟ ପରିବର୍ତ୍ତନ ଘଟିଚାଲିଥାଏ।

ସେହି ଝରଣାଟି ଗାଁର, ପାଖଆଖ ଗାଁର ଡଙ୍ଗରକୁ ଆଶ୍ରାକରି ରହୁଥିବା ଗାଈଗୋରୁ, ମଣିଷ ସର୍ଭିଙ୍କ ଆଦରଣୀୟ ହୋଇଯାଇଥାଏ। ତା'ରି କୋଳରେ କେତେ ଗାଈଗୋରୁ ନିଜ ମୁହଁକୁ ତାର ସ୍ୱଚ୍ଛ ନୀରରେ ଦେଖି ଆତ୍ମବିଭୋର ହୋଇପଡୁଥାନ୍ତି। ଝରଣା କୂଳକୁ ଆସି ତା'ରି ମଧୁର ଜଳ ପାନ ନକଲେ ମନ ଏବଂ ଆତ୍ମା ଶାନ୍ତିହୁଏନାହିଁ। ମନ ତାଙ୍କର ଥୟ ଧରି ରହିପାରେନାହିଁ। ଗଛଡ଼ାଳରୁ ଉଡ଼ିଆସି କେତେ ଯେ ପକ୍ଷୀ ତା'ର କୂଳରେ ଘୁରିବୁଲୁଥାନ୍ତି; ସେମାନଙ୍କ ଆହାର ଗୋଟାଇଚାଲିଥାନ୍ତି।

ପାଣିକୂଳରେ ଧ୍ୟାନମଗ୍ନ ରହି ଧଳା ବଗଟିଏ ପାଣିଧାରକୁ ଅନାଇ ରହିଥାଏ। ଏହି ପ୍ରତୀକ୍ଷା ମଧ୍ୟରେ ଛୋଟ ମାଛଟିଏ ଟପ୍‌କିନା ପାଣି ଭିତରୁ ଉଠାଇନେଇ ଗିଳିଦେଉଥାଏ, ପୁଣି ଧ୍ୟାନମଗ୍ନ ହୋଇଯାଉଥାଏ। ଦୂରରେ ଟେଁ-ଟେୟା ଚଢ଼େଇ ଟେଁ-ଟେଁ ଶବ୍ଦକରି ବନଭୂମିକୁ ଚହଲାଇଦେଉଥାଏ। ସେ ଶବ୍ଦ ବନଚାରୀମାନଙ୍କ ମନରେ ଆଗ୍ରହ ସୃଷ୍ଟିକରୁଥାଏ। ବଣରୁ କାଠ ସଂଗ୍ରହ କଲାବେଳକୁ ଏହି ଶବ୍ଦ ସେମାନଙ୍କର ଅତି ପ୍ରିୟ ଶବ୍ଦ।

ସେ ଦିନ ଡଙ୍ଗର ଆଡ଼କୁ ଛେଳି ଅଡ଼େଇଦେଇ କିଆ ଆସି ଗଛମୂଳରେ ବସିପଡ଼ିଲା। ଦୂରରୁ ଝରଣାର କୁଳୁକୁଳୁ ନାଦର ମଧୁର ଲହରୀ ପବନରେ ଭାସିଆସୁଥାଏ। ଡଙ୍ଗରରେ ସେତେ ଗହଳି ହୋଇନଥାଏ। ଅନେକ ଗାଈଆଳ ଗାଈଗୋରୁ ଧରି ଆସିନଥାନ୍ତି। କିଏ ଦୂରରେ ରହିଯାଇଥାଏ; ଗାଈ ଧରି ଆସିବାକୁ ସଜ ହେଉଥାଏ।

ଆଜି କିଆକୁ ନିଛାଟିଆ ନିଛାଟିଆ ଜଣାପଡୁଥାଏ। ଚାରିଆଡ଼କୁ ଅନାଇ ମନେମନେ ଭାବୁଥାଏ – କେହି ଆସିନାହାନ୍ତି ନା କ'ଣ ?

ଦୂରରେ ଗଛ ଉହାଡ଼ରୁ କାହାର ପାଟି ଶୁଭୁଥାଏ। ଡଙ୍ଗର ଭିତରେ ଡାକହାକରେ ନୀରବତା ସମୟେ ସମୟେ ଭାଙ୍ଗୁଥାଏ। କେହି ଜଣେ ନିଜ ମନରୁ ସଂଶୟ ଦୂରକରିବାପାଇଁ ଡଙ୍ଗର ଭିତରେ ଡାକଛାଡ଼ିଥାଏ। ଦୂରରେ ଥାଇ କିଏ ତାର ପ୍ରତ୍ୟୁତ୍ତର ଦେଉଥାଏ। ଡାକହାକ ଦେଇ ଜଙ୍ଗଲ ଭିତରେ ନିଜର ଉପସ୍ଥିତି ଜଣାଇଦେଉଥାନ୍ତି। ଏ ହେଉଛି ଜଙ୍ଗଲ ଭିତରେ କାମ କରିବା ଲୋକଙ୍କ ଚାଲିଚଳଣ।

ମାଳତୀର ଆଜି ଦେଖାଦର୍ଶନ ନାହିଁ। ଅନେକ ଦିନ ହେବ ତାକୁ ମଧ୍ୟ କିଆ ଦେଖିନାହିଁ। ସେ ଦୀର୍ଘ ସମୟ ହେଲା ଅପେକ୍ଷା କରିଥାଏ ଜଣଙ୍କର କଣ୍ଠସ୍ୱର ଶୁଣିବ ବୋଲି– ତାର ସେହି ପରିଚିତ କଣ୍ଠସ୍ୱର। ଯେଉଁ ସ୍ୱରଟିକକ ଶୁଣିଲେ ତା' ମନରେ ଜୁଆର ସୃଷ୍ଟିକରେ। ନବୀନ ମୁହଁରେ 'କିଆ' ଡାକଟା ତା' ମନରେ ସବୁଠୁ ବଡ଼ ଦୁର୍ବଳତା ସୃଷ୍ଟିକରେ; ତା'ର ଅନ୍ତରରେ ମୃଦୁ ଗୁଞ୍ଜନ ସୃଷ୍ଟିକରେ, ଉତ୍ତେଜନା ଖେଳାଇଦିଏ। ସେହି ନବୀନକୁ ଦେଖିବାପାଇଁ ଛନଛନ

ହୋଇ କିଆ ଚାରିଆଡ଼କୁ ଅନାଇଦେଉଥାଏ ।

ପୁଣି ମନରେ ନାନା କଥା ଖେଳିଯାଉଥାଏ – ସତେ ସେ ତା'ର କିଏ ? ତା'ମନରେ ବିଭିନ୍ନ ପ୍ରଶ୍ନ ଉଙ୍କିମାରୁଥାଏ । ସେ ତ ତା'ର କେହି ନୁହେଁ ! କେହି ନୁହେଁ ତ, ତା' ପାଇଁ ମନ ଏତେ ଛଟପଟ ହୁଏ କାହିଁକି ? ତା'ରି କଥାପଦକ ଶୁଣିବାପାଇଁ ଏତେ ଅଥୟ ହୋଇପଡ଼େ କାହିଁକି ? ଏମିତି କେତେ କ'ଣ ଭାବିଚାଲିଥାଏ । ଏତିକିବେଳେ ନବୀନ ଆସି ସେଠି ପହଞ୍ଚିଗଲା । ନବୀନକୁ ଦେଖି କିଆ ମନରେ ଆନନ୍ଦର ଲହରୀ ଖେଳିଗଲା – ସତେ ଯେମିତି ବହୁଦିନରୁ ହଜିଯାଇଥିବା ଜିନିଷ ଆଜି ତା' ହାତମୁଠାକୁ ଆସିଯାଇଛି । ଭାବବିହ୍ୱଳ ହୋଇ ତା' ପାଖକୁ ଦୌଡ଼ିଆସି କହିଲା – "ମୁଁ ତୋତେ କେତେବେଳୁ ଅପେକ୍ଷା କରିଛି ।" ମାତ୍ର ପରମୁହୂର୍ତ୍ତରେ ନିଜକୁ ସମ୍ଭାଳିନେଇ ତାକୁ ଅନାଇ ତୁନିହୋଇ ଛିଡ଼ାହୋଇଗଲା । ସତେ ଯେପରି ତା' ମନରେ ସଂଚିତ ହୋଇଥିବା ଲାଜଟିକକ ତା' ମନର ଉତ୍‌କଣ୍ଠାକୁ ଅଟକାଇଦେଲା ।

ନବୀନ ପାଖକୁ ଆସି ଆଶ୍ଚର୍ଯ୍ୟ ହୋଇ ତାକୁ ଅପଲକ ନୟନରେ ଚାହିଁରହି କହିଲା – "ହଠାତ୍ ତୁନିପଡ଼ି ଛିଡ଼ାହୋଇପଡ଼ିଲୁ ଯେ ।" ନବୀନର ଏଭଳି ଚାହାଣିରେ କିଆର ମୁହଁ ଲାଜରେ ଲାଲ୍ ପଡ଼ିଗଲା । ତା'ମନରେ କେତେ ଯେ ଭାବନା ଖେଳିଗଲା । ଆଜିକାଲି ନବୀନର ଚାହାଣି ତା'ମନରେ ପୁଲକ ସୃଷ୍ଟିକରେ । ବୟସ ବଢ଼ିଲେ ସତେ କ'ଣ ସବୁ ତରୁଣୀ ମନରେ ଏଭଳି ତରଙ୍ଗ ସୃଷ୍ଟି ହୁଏ ?

କିଆ ମୁହଁରେ ହସ ଫୁଟାଇ ନବୀନକୁ ଚାହିଁଲା; ଟିକିଏ ଲାଜେଇଯାଇ କହିଲା – "ତୋତେ ଦେଖିଲେ ମୋତେ କାହିଁକି ଲାଜମାଡୁଛି ।" –ଏତକ କହି ହସି ଦୁଇହାତରେ ତାର ମୁହଁକୁ ଲୁଚାଇଦେଲା ।

କିଆର ଏଭଳି କଥା ଏବଂ ଭଙ୍ଗିରେ ସତକୁ ସତ ନବୀନ ଆଶ୍ଚର୍ଯ୍ୟ ହୋଇଗଲା । ଆଜି ପ୍ରଥମକରି କିଆ ତୁଣ୍ଡରେ ତାକୁ ଦେଖି ଲାଜମାଡୁଥିବା କଥା ଶୁଣି ମନ ତା'ର କେଜାଣି କାହିଁକି ଚଳଚଞ୍ଚଳ ହୋଇଗଲା । ନବୀନ କହିଲା – "କାହିଁ, ତୁ ତ କେବେ ମୋ' ଆଗରେ ଲାଜ କରୁନଥିଲୁ – ଆଜି କାହିଁକି ହଠାତ୍ ଲାଜ ମାଡ଼ିଆସିଲା ?"

କିଆର ଗତ ରାତି କଥା ମନେପଡ଼ିଯାଉଛି – ତାର ବାହାଘରପାଇଁ ମା' ବାପକୁ କହୁଥିଲା । ସେ ଏଇନେ ବାହାହେବାପାଇଁ ଯୋଗ୍ୟା ହୋଇଗଲାଣି । ବାହାହେବା ବୟସ ତାର ହୋଇଗଲାଣି । ସେଥିପାଇଁ ମନ ତାର ସଦା ଛନଛନ ହେଉଛି । ଆଗେ ତ ଏମିତି ହେଉନଥିଲା । ବୟସ ହେଲେ ସମସ୍ତଙ୍କ ମନରେ ଡେଣା ଲାଗେ; ଉଡ଼ିବୁଲିବାକୁ ମନ ହାଇଁପାଇଁହୁଏ । ନବୀନକୁ ଦେଖିଲେ ତା'ମନରେ କେତେ ଯେ ଭାବନା ସୃଷ୍ଟି ହୁଏ । ଆଖିରେ ଆଖି ମିଶିଗଲେ ମନରେ ପୁଲକ

ସୃଷ୍ଟି ହୁଏ। ପାଟି ଖଜବଜ ହୁଏ କେତେ କଥା କହିବାକୁ। ଆଖିର କଥା ସବୁ ଆଖିରେ ରହିଯାଉଥାଏ। ନବୀନକୁ ନେଇ ତା'ମନରେ କେତେ ଯେ ଗୋପନ ଭାବନା ଖେଳିକଯାଇଛି– ତା' କଥା ଭାବିଲେ ମନରେ ରୋମାଞ୍ଚ ଖେଳିଯାଏ; ଦେହ ଏବଂ ମନରେ ଶିହରଣ ସୃଷ୍ଟିକରେ।

ହଠାତ୍ କିଆ ମନରେ ଗୋଟିଏ ପ୍ରଶ୍ନ ଉଙ୍କିମାରିଲା। ମୁହଁରେ ଆପେଆପେ ହସ ଚହଟିଆସିଲା। ନବୀନକୁ ପଚାରିବ ପଚାରିବ ବୋଲି ପାଟି ତାର ଖଜବଜ ହେଲା। ନବୀନ ପାଖକୁ ଘୁଞ୍ଚିଆସି, ତା' ମୁହଁକୁ ଥରେ ସତୃଷ୍ଣ ନୟନରେ ଅନାଇ କହିଲା– ''ତୋତେ ଗୋଟିଏ କଥା ପଚାରିବି ପଚାରିବି ବୋଲି ଭାବିହେଉଛି; ହେଲେ ପଚାରିପାରୁନାହିଁ।''

ପ୍ରଥମେ ସେ ଭାବିପାରିଲା ନାହିଁ କେଉଁଠୁ କଥା ଆରମ୍ଭ କରିବ। ତା'ର ଏପରି କଥା ଶୁଣି ନବୀନ ତାକୁ କ'ଣ ଭାବିବ? ସେ ସିନା ତାକୁ ଏତେ ଭଲ ପାଉଛି; ତା'ରି କଥା ଏତେ ଭାବୁଚି, ତା' ସହିତ କଥା ହେବାକୁ ଏତେ ଖୁସି ଲାଗୁଛି। ଘଣ୍ଟା ଘଣ୍ଟା କଥା ହେଲେ ମଧ ମନସାଧ ମେଣ୍ଟେ ନାହିଁ; ଆହୁରି ବସି ଗପିବାକୁ ମନହେଉଥାଏ। ତା' ମନରେ କଅଣ ଅଛି କେଜାଣି? ସେ ମୋତେ ଏତେ ଭଲପାଏ କି? ତା' ମନରେ ଆଉ କ'ଣ ଛପିରହିଛି କି? କେଜାଣି, ପୁରୁଷ ମନ; କେତେବେଳେ କେଉଁ କଥା। ଏମିତି କେତେ କ'ଣ ସେ ଭାବିଚାଲିଥାଏ। ତାକୁ ଲାଜ, ସରମ, ସଙ୍କୋଚ ମାଡ଼ିବସିଲା। କହିବାପାଇଁ କଥା ପାଟି ପାଖକୁ ଆସି ପୁଣି ସଙ୍କୋଚରେ ବନ୍ଦହୋଇଯାଉଥିଲା।

ନବୀନ ତାର ଏଭଳି ଭାବ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲା– ''କ'ଣ ପଚାରିବୁ ବୋଲି କହୁଥିଲୁ; କହୁନୁ? ତୁନି ହେଲୁ କାହିଁକି?''

ନବୀନ ଆଗ୍ରହରେ ତା'ର ସଜଫୁଟା ଗୋଲାପ ଫୁଲ ଭଳି ମୁହଁଟାକୁ ଅନାଇରହିଲା। ଦୁହେଁ ପାଖାପାଖି ବସିରହି ଏକ ଆରେକର ମୁହଁକୁ ଅନାଇ ରହିଥାଆନ୍ତି। ଏଭଳି ନୀରବରେ କିଛିକ୍ଷଣ କଟିଗଲା। ନବୀନ ଭାବବିହ୍ୱଳ ହୋଇ କିଆର ହାତପାପୁଲିକୁ ଧରିନେଇ ତା'ର ମୁହଁକୁ ଆତୁର ନୟନରେ ଅନାଇ ରହିଲା ତା'ଠୁ କିଛି ଶୁଣିବ ବୋଲି। ନବୀନର ମଧୁର ସ୍ପର୍ଶରେ କିଆ ମନରେ ପୁଲକ ସୃଷ୍ଟିହେଲା। ଚାରିଚକ୍ଷୁ ପୁଣି ଏକ ହୋଇଗଲା। ଦୁହିଁଙ୍କ ରକ୍ତକଣିକା ଉଦ୍‌ବେଳିତ ହୋଇ ହୃଦୟର ଶିରାପ୍ରଶିରାରେ ପ୍ରବାହିତ ହେବାକୁ ଲାଗିଲା।

କିଆ ମୁହଁରେ ଫଗୁ ବିଞ୍ଛିହେଲାଭଳି ହସ ଚହଟିଆସିଲା। କୁଆଁରୀ କିଆ ମନରେ ସୃଷ୍ଟି କଲା କୌତୂହଳ। ସତୃଷ୍ଣ ନୟନରେ ନବୀନର ହସ ହସ ମୁହଁକୁ ଅନାଇନେଇ ଥରିଲା କଣ୍ଠରେ ଧୀରେ ଧୀରେ କହିଲା– ''ତୁ ମୋତେ ଭଲପାଉ, ନା?''

କିଆ ଏତକ କହି ନବୀନକୁ ଭାବବିହ୍ୱଳ ହୋଇ ଅନାଇରହିଲା । ନବୀନ ତାର ଏଭଳି ସରଳ ଅଥଚ ମଧୁର ପ୍ରଶ୍ନରେ ଚମକିଉଠିଲା । ତାର ହୃଦୟରେ ଏକପ୍ରକାର ପୁଲକ ସୃଷ୍ଟିକଲା । ସେ ପ୍ରଥମେ ଥଙ୍ଗଥଙ୍ଗ ହୋଇପଡ଼ିଲା । ମନରେ ଆନନ୍ଦର ଲହରୀ ଖେଳିଗଲା । ଭାବବିହ୍ୱଳ ହୋଇପଡ଼ିଲା । ତା' ତୁଣ୍ଡରୁ କଥା ସ୍ଫୁରିଲା ନାହିଁ । ସେ କେବଳ ଅପଲକ ନୟନରେ କିଆ ମୁହଁକୁ ଚାହିଁରହିଲା ।

ତାର ନୀରବତା ଦେଖି କିଆ ମନରେ ଆଶଙ୍କା ଖେଳିଗଲା । ମନର କଥା ତୁଣ୍ଡରୁ ବାହାରିପଡ଼ିଲା ସିନା; ସେ କ'ଣ ଭୁଲ କଲା କି? ଏଭଳି ପଚାରିବା ଠିକ୍ ହେଲା କି? ସେ ତାକୁ କ'ଣ ଭାବିଥିବ? ଛି... କେଡ଼େ ଲାଜ କଥା ତା'ରି ତୁଣ୍ଡରୁ ବାହାରିପଡ଼ିଲା । ନାରୀର ଏକମାତ୍ର ଭୂଷଣ ହେଉଛି ଲଜ୍ଜା; ସେତକ ଚାଲିଗଲେ ନାରୀର ଆଉ ରହିଲା କ'ଣ ?

ସେ ଥୟ ଧରି ରହିପାରିଲାନାହିଁ । ମନର କଥାକୁ ମନରେ ଧରିରଖିଥାନ୍ତା । ମନର କଥା ଖୋଲିଗଲେ ସେ ଅଣଲେଉଟା । ଏଭଳି କେତେ କ'ଣ କଥା ତା' ମନରେ ଖେଳି ଆଶା-ଆଶଙ୍କା ଭିତରେ ବୁଡ଼ିଯାଇଥାଏ ।

ନବୀନ କିଆର ଦୁଇହାତ ପାପୁଲିକୁ ତାର ଦୁଇ ହାତରେ ମୁଠେଇ ଧରି ଅପଲକ ନୟନରେ ତା'ର ମୁହଁକୁ ଚାହିଁରହିଲା । ଆଖିରେ ଆଖି ମିଶିଗଲା, ନୀରବ ସେ ଭାଷା । ଲଜ୍ଜାରେ କିଆ ମୁହଁ ତଳକୁ ନଇଁଗଲା ।

ନବୀନ ତୁଣ୍ଡରୁ ଥରିଲା କଣ୍ଠରେ ବାହାରି ପଡ଼ିଲା – ''କି ... ଆ ...''

ସେହି ଡାକଟିକକ ଶୁଣିଲେ ତା' ମନରେ ପୁଲକର ଏକ ବିଦ୍ୟୁତ୍ ଖେଳିଯାଇଥାଏ । ନବୀନ ମୁହଁରେ କିଆ ଡାକଟା ତାର ସବୁଠୁଁ ବଡ଼ ଦୁର୍ବଳତା । ତଥାପି ଆଜି ଭୟ ଆଶଙ୍କାରେ ତାରି ମୁହଁକୁ କିଆ ଅନାଇରହିଲା । ଉତ୍‌କଣ୍ଠା ସହ ଅପେକ୍ଷା କରି ରହିଲା ନବୀନ କ'ଣ କହୁଛି ଶୁଣିବ ବୋଲି ।

ନବୀନର ଓଠ ଦୁଇଟି ଥରିଉଠିଲା । ଆବେଗଭରା କଣ୍ଠରେ କହିଲା – ''କି ... ଆ ..., ତୁ ମୋର – ସବୁଦିନ ତୁ ମୋର ।''

କିଆର ଆଖି ଦୁଇଟି ପୁଲକରେ ଚହଲିଗଲା । ଆନନ୍ଦରେ ମୁହଁ ତା'ର ସତେଜ ହୋଇଉଠିଲା । ତା'ର କଥାପଦକ ଦେହରେ ଏକ ଶିହରଣ ଖେଳାଇଦେଲା । ଆଉ ତା' ତୁଣ୍ଡରୁ କଥା ଶୁଣିବାପାଇଁ କିଆ ମନରେ ଧୈର୍ଯ୍ୟ ନଥିଲା । ତା' ମୁହଁରେ ହସର ଲହରୀ ସୃଷ୍ଟିକଲା । ମନ ଏବଂ ହୃଦୟରେ ପୁଲକ ସୃଷ୍ଟିକଲା । ତାର ଶରୀରରେ ରୋମାଞ୍ଚ ସୃଷ୍ଟିହେଲା । ତାର ଚଳଚଞ୍ଚଳ ମୁହଁ ଆନନ୍ଦରେ ଅଧୀର ହୋଇପଡ଼ିଲା । ଲାଜରେ ତାର ଗୋରା ମୁହଁ ନାଲିପଡ଼ିଗଲା । ପୁଣି ଚାରିଆଖିର ମଧୁର ମିଳନ । ଲଜ୍ଜାରେ ସେ ମୁଣ୍ଡ ତଳକୁ କଲା ।

ସେ ତାର ହାତପାପୁଲିକୁ ନବୀନର ହାତମୁଠାରୁ ଆସ୍ତେ ଖସାଇନେଇ

ଏକ ତୃପ୍ତିର ହସ ହସି ଦୌଡ଼ି ଦୌଡ଼ି ସେଠୁ ପଳାଇଗଲା। କିଆ ଦୌଡ଼ି ପଳାଇବା ଭଙ୍ଗିକୁ ନବୀନ ସତୃଷ୍ଣ ନୟନରେ ଅନାଇରହିଥାଏ। ତା'ମନର କଥା କହିଦେଇଥିବା ଯୋଗୁଁ ଛାତି ତାର ଧଡ଼୍‌ଧଡ଼୍ କଲାଭଳି ମନେହେଉଥାଏ। ତାର ହସହସ ମୁହଁଟିକକ ଦେଖି ତା' ମୁହଁରେ ଆନନ୍ଦ ସଞ୍ଚାରିଯାଇଥାଏ। ତା' କଥା ଶୁଣିବାପାଇଁ ସେ ତନ୍ମୟ ହୋଇ ତା'ରି ମୁହଁକୁ ଅନାଇ ରହିଥାଏ। କିଆକୁ ନେଇ ତା'ମନରେ କେତେ ଯେ ଭାବନା ଖେଳିଯାଉଥାଏ। ତାର ସୁନ୍ଦର କଳାକଳା ଆଖି, ସେଥିରେ ଭରିରହିଥାଏ ମାୟାଭରା ଚାହାଣି। ସତେ ତାକୁ ଦେଖିଲେ ମନରେ କେତେ ମାୟା ସଞ୍ଚରୁଥିଲା। ତାର ସେହି ଭସା ମେଘ ଭଳି ଆଖି ସହିତ ମୋ' ଆଖି ମିଳିଗଲେ ମନରେ ପୁଲକ ସୃଷ୍ଟିକରେ। ତା'ର ଦୁଇପଦ କଥା, ଚୋରା ଚାହାଣି ମୋ ମନରେ ଆନନ୍ଦର ଜୁଆର ସୃଷ୍ଟିକରିଥାଏ। ମୁହଁରେ ଭରିରହିଥାଏ ସଦା ସେହି ଖିଲିଖିଲି ହସ। ତା' ଚାଲିରେ, ତା' ଚାହାଣିରେ ଭରିରହିଥାଏ ମଧୁର ଛନ୍ଦ। ନବୀନ ତାର ଯିବା ବାଟକୁ ଅପଲକ ନୟନରେ ଅନାଇରହିଥାଏ। ମନ ତାର ପୁଲକିତ ହୋଇଉଠିଲା।

ସେ କେତେ କଥା କିଆକୁ କହିବ ବୋଲି ଭାବିହେଉଥିଲା; ମାତ୍ର କିଛି କହିପାରିଲାନାହିଁ। ତାକୁ କେମିତି ଲାଜ ମାଡ଼ିବସିଲା ଭଳି ମନେହେଲା। ମନରେ କିପରି ଏକ ଅଜଣା ଭୟ ସଞ୍ଚରିଗଲା। କାଳେ କିଆ ତାକୁ ଖରାପ ଭାବିପାରେ ? ମାତ୍ର କିଆର ପଦକ କଥା ସେ ମନେମନେ ହେଜିହେଉଥାଏ, ''ତୁ ମୋତେ ଭଲ ପାଉ, ନା ?'' କେତେ ମିଠା ତାର ସେହି କଥାପଦକ। ତାର ସେ ଚାହାଣିଟିକକ କେତେ ଆନନ୍ଦଦାୟକ। ତାର କଣ୍ଠସ୍ୱର କେତେ ମଧୁର। ତାର ସ୍ନେହ ସୋହାଗ ସବୁ ଗୋଟି ଗୋଟି ମନେପଡୁଛି। ତାର ମନ ଏବଂ ହୃଦୟ କେତେ ଖୋଲା, କେତେ ଆପଣାର। ଯାହାକୁ ଯିଏ ଭଲପାଏ, ତା' ସହିତ କପଟ ଆଚରଣ କରିପାରେନା।

ପ୍ରେମ ବାସ୍ତବିକ ବଡ଼ ଅଦ୍‌ଭୁତ। ତାହାରି କାଉଁରି ପରଶରେ ମନ ପୁଲକିତ ହୋଇଉଠେ। ପ୍ରେମରେ ପଡ଼ିଲେ ମଣିଷ ଆତ୍ମବିଭୋର ହୋଇପଡ଼େ। କେତେବେଳେ କେଉଁ ଭାବ ମନରେ ଜାଗ୍ରତକରେ। କେତେବେଳେ ଅତୀତର କେଉଁ ମନଲଗା ସ୍ମୃତି ମନରେ ଖେଳିଯାଇ ମନକୁ ଆନନ୍ଦବିଭୋର କରିପକାଏ। ପ୍ରେମ ମଣିଷର ତନୁ ମନକୁ ଆତ୍ମବିଭୋର କରିଦେଇଥାଏ।

ନବୀନ ତନ୍ମୟ ହୋଇ କିଆ କଥା ଭାବିଚାଲିଥାଏ। ତାର ଚାଲିଚଳନ, କଥା କହିବା ଢଙ୍ଗ କେଡ଼େ ସୁନ୍ଦର। ତାର ଉପସ୍ଥିତି ତା'ମନରେ ସୃଷ୍ଟିକରେ ଅପୂର୍ବ ପୁଲକ। ସେ ଆଗରୁ ଆମ୍ବଗଛର କଅଁଳ ଆମ୍ବପତ୍ର କେତେ ଥର ସ୍ପର୍ଶ କରିଛି; ମାତ୍ର ଆଜି ସେହି ଆମ୍ବପତ୍ର କେତେ ମନୋରମ– ଠିକ୍ ପ୍ରଥମ

ପ୍ରେମର ପରଶଭଳି ତାକୁ ମନେହେଉଛି।

ନବୀନ ଏମିତି ଭାବି ଭାବି ମଧୁର ସ୍ୱପ୍ନରେ ବୁଡ଼ିଯାଇଥାଏ। ମୁହଁରେ ଖେଳିଯାଇଥାଏ ଆନନ୍ଦର ତରଙ୍ଗ। ସତେ କି ସେ ଆଜି ଏକ ଦୁର୍ଭେଦ୍ୟ ଗଡ଼ ଜୟକରି ଆତ୍ମବିଭୋର ହୋଇପଡ଼ିଛି।

## (୧୦)

ଚିମିନିର ସ୍ତିମିତ ଆଲୋକରେ ଘରର ଆସବାବ ସବୁ ଦେଖିନେଇ ରନ୍ଧାଘର କବାଟ ବନ୍ଦକଲା ରେବତୀ। ଘରକାମ ସାରି କବାଟ ଦେଇ ଆସି ମଦନ ପାଖରେ ବିଛଣା ବିଛାଇ ଶୋଇପଡ଼ିଲା।

ଚିମିନି ଲିଭାଇଦେଲା ପରେ ଘରଭିତରଟା ଅନ୍ଧାର ମାଡ଼ିବସିଲା। ରାତି ଅନ୍ଧାର ହେଲେ ମନଗହନର ଅନେକ କଥା ମନରେ ଖେଳିଯାଏ। ମନର ମଣିଷ ପାଖରେ ଥିଲେ ପାଟି ଖଜବଜ ହୁଏ ଦୁଇପଦ କଥାହେବାପାଇଁ। ଦିନତମାମ କାମରେ ମାତିଗଲେ କଥା ହେବାପାଇଁ ବେଳ ମିଳେନାହିଁ। ନିରୋଳା ରାତିରେ ମନଖୋଲା କଥା ହେବାପାଇଁ ସମୟ ମିଳେ। ରେବତୀ ପାଖରେ ଶୋଇ ଅନ୍ଧାରରେ ତାର ସ୍ୱାମୀକୁ ଅନାଇଲା। ପଚାରିଲା – ''ହଇଏ, ଶୋଇପଡ଼ିଲଣି ନା କ'ଣ ?''

ମଦନ ଖଟରେ ପଡ଼ିରହି ଆଖି ବନ୍ଦକରି କହିଲା – ''ଶୋଇନି।''

ମଦନଠୁଁ ଉତ୍ତର ଶୁଣିଲା ପରେ ମନରେ ତା'ର ହସ ଚହଟିଆସିଲା। ପାଟିରୁ ତାର ବାହାରିପଡ଼ିଲା – ''ମୋ କଥା କ'ଣ ବୁଝିଲ ?''

ମଦନ କଡ଼ ଲେଉଟାଇ ପଚାରିଲା – ''କେଉଁ କଥା ?''

–''ଆଉ କେଉଁ କଥା, ସେହି ଗୋଟିଏ କଥା, ଝିଅ ବାହାଘର . . .''

ରେବତୀ ଟିକିଏ ଚିଡ଼୍‌ଚିଡ଼୍ ହୋଇ ତରତରରେ ଏତକ କହିଦେଲା। ସେ ଠିକ୍‌ରୂପେ ଜାଣିଛି, ଭଲକରି ନଧରିଲେ ସେ କିଛି ବୁଝିବେନାହିଁ। ରେବତୀ ମନ ଟିକିଏ ଅଶାନ୍ତ ହୋଇଉଠିଲା ତାର ସ୍ୱାମୀର ବେପରୁଆ ମନୋଭାବ ନେଇ। ଝିଅ-ଜନମ ପରଘରକୁ, ସଭିଏଁ ଜାଣନ୍ତି। ସବୁ ମା'ଙ୍କର ଗୋଟିଏ ଇଚ୍ଛା, ଝିଅ ତାର ଯୋଗ୍ୟ ବରଟିଏ ପାଇ ସୁଖରେ ଘର-ସଂସାର କରି ଚଳୁ। ମାତ୍ର ସେତକ ପାଇବାକୁ ହେଲେ ଧାଁ-ଧପଡ଼, ଯୋଡ଼୍‌ତୋଡ଼ କରିବାକୁ ପଡ଼ିବ। ସେତକ ନକଲେ ଏମିତି ସେମିତି ବରଟିଏ ମିଳିଯିବ। ମାତ୍ର ଯୋଗ୍ୟ ବରଟିଏ ପାଇବାପାଇଁ ଯେଉଁ କଷ୍ଟଟିକକ ଦରକାର, ଉଦ୍ୟମ ଦରକାର, ତାହା ନହେଲେ ସବୁ ହାତଛଡ଼ା ହୋଇଯିବ। ମୋର ଏତେ ଅଲିଅଳ ଝିଅ; ତାକୁ ତ ଯେନତେନ

ପ୍ରକାରେ ଉଠାଇଦେବିନି ? ମା' ମନ ସେଥିପାଇଁ ସଦା ଛଟପଟ ହେଉଥାଏ ।

ଏଣେ ମଦନ ଝିଅବାହାଘର କଥା ଉଠାଇଲେ, ଆଳ ଦେଖାଇ ଟାଳିଦେଉଥାଏ । ମଦନ କହିଲା– ''ଆଗେ ହଳ କିଣିସାରିଲା ପରେ ବାକୀ ଯେଉଁ କଥା । ଏଇନେ ତ ଟଙ୍କା ନାହିଁ; ମହାଜନଠାରୁ ଟଙ୍କା କରଜ ଆଣିଲେ ଶୁଝିଲାବେଳକୁ ଜମିଖଣ୍ଡିକ ହାତରୁ ଚାଲିଯିବ । ଭାତଥାଳି ଚାଲିଗଲେ ଚାଷୀର ସବୁ ସରିଲା । ଜମି ବନ୍ଧା ନପକାଇ କାମ ଉଠାଇଲେ ତେଣିକି ଯାହା ହେଇପାରିବ ।''

ରେବତୀ ଏତକ ତା' ସ୍ୱାମୀଠୁଁ ଶୁଣି ମନର ରାଗ ମନଭିତରେ ରଖି କହିଲା – ''ତାହାହେଲେ ତୁମେ ବାହାଘରକଥା ମନରୁ ପାଶୋରିଦେଲଣି ?''

–''ତୁ ଏମିତି ତରତର କିଆଁ ହେଉଛୁ ? ପିଲା ଯୋଗାଡ଼ ହୋଇଯାଉ; ବଳେ ସବୁ ଠିକ୍‌ହୋଇଯିବନି କି ?'' ମଦନ ପୋଖତ ଅଭିଜ୍ଞଲୋକ ଭଳି ତା' ସ୍ତ୍ରୀକୁ ସାନ୍ତ୍ୱନା ଦେବାପାଇଁ ଏତକ କହିଲା ।

ଝିଅପାଇଁ ସବୁ ବାପ-ମା'ଙ୍କ ମନରେ ଚିନ୍ତା ପଶେ । ପୁଅ ପାଇଁ ଝିଅଟିଏ ଦରକାର । ପୁରୁଷ ବିନା ନାରୀର ସ୍ଥିତି ଅସମ୍ଭବ । ପୁରୁଷ ଏବଂ ନାରୀ ଉଭୟେ ସଂସାରର ସୃଷ୍ଟି ପାଇଁ ଅଭିପ୍ରେତ । ବଂଶରକ୍ଷା ପାଇଁ ନାରୀର ଆବଶ୍ୟକତା ରହିଛି । ଏହା ଏକ ପବିତ୍ର ବନ୍ଧନ । ସୃଷ୍ଟିର ଏ ଏକ ଘଟସୂତ୍ର । ସେଥିପାଇଁ ତରତର ହେବା ଆବଶ୍ୟକ ନାହିଁ । ଯେଉଁଠି ଯାହାପାଇଁ ଖଞ୍ଜାଯାଇଛି ସେଇଠି ତା' ପାଇଁ ଯୋଗାଡ଼ ହୋଇଯାଏ । ଯା' ହାଣ୍ଡିରେ ଯେ ଚାଉଳ ପକାଇଛି ସେ ତାର ହେବ । –ଏତକ ଭାବି ଭାବି ମଦନ ଆଖି ବନ୍ଦକରି ଖଟରେ ପଡ଼ିରହିଲା ।

ସେ ପୁଣି ଭାବିଚାଲିଥାଏ – ଭଲ ବରଟିଏ ପାଇବାପାଇଁ ତାକୁ ଯୋଗାଡ଼ କରିବାକୁ ପଡ଼ିବ । ଭଲ ଘର, ଭଲ ଚାଲିଚଳନ, ମେହନତ୍ କରି ରୋଜଗାର କରିପାରୁଥିବ– ଏତକ ହୋଇଗଲେ ସଭିଙ୍କ ମନ ଖୁସି । ଏମିତି କେତେ କ'ଣ ତା' ମନରେ ଖେଳିଚାଲିଥାଏ ।

ରେବତୀ ନଛୋଡ଼ବନ୍ଧା; ଝିଅ ବାହାଘର କଥା । ସହଜରେ ଏଡ଼ାଇବାକୁ ନାରାଜ । ସ୍ୱାମୀଠୁଁ ପକ୍କା ଜବାବ ଶୁଣିବାକୁ ଚାହେଁ । ଭୋଳା ମଣିଷ, କେତେବେଳେ କେଉଁ କଥା । ରେବତୀ ମୁଣ୍ଡରେ ଝିଅ ବାହାଘର କଥା ବସା ବାନ୍ଧି ରହିଛି । ମା' ମନରେ ସଦାବେଳେ ଝିଅ ବାହାଘର ବଡ଼ ବୋଝ; ତେଣୁ ସେ ମଦନକୁ ବାରମ୍ବାର ଉଖାରି ବାହାଘର କଥା ପକ୍କା କରିବାକୁ ଚାହୁଁଛି । ମଦନ ତେଣେ ହଳ ନକିଣିଲେ ତାର ଚାଷ ଉଠୁନାହିଁ, ସେହି ଚିନ୍ତାରେ ବ୍ୟସ୍ତ; ଏଣେ ସ୍ତ୍ରୀ ତାର ଝିଅ ବାହାଘର ପାଇଁ ବ୍ୟସ୍ତ । ଏଭଳି ଦ୍ୱନ୍ଦ୍ୱ ଭିତରେ ମଦନ କିଛି ଠିକ୍‌କରିନପାରି ସ୍ତ୍ରୀର କଥା ଆଡ଼େଇ ଆଡ଼େଇ ଚାଲିଛି ।

ରେବତୀ ତାର ସ୍ୱାମୀ ନିକଟକୁ ଘୁଞ୍ଚିଆସି ହାତବଢ଼ାଇ ତାର ପିଠିରେ

ହାତ ରଖି କହିଲା– ତମେ ଚାହିଁଲେ କାହାଠୁ କିଛି ଟଙ୍କା କରଜ କଲେ କ'ଣ ମିଳିବ ନାହିଁ କି ? ଏମିତି ସଭିଏଁ ଧାର-ଉଧାର କରି କାମ ଚଳାଇନିଅନ୍ତି। କାହାଠି କ'ଣ ସବୁବେଳେ ଟଙ୍କା ଥାଏ କି ? ମାଗିଯାଚି କାମ ସଭିଏଁ ଚଳାଇନିଅନ୍ତି। ସୁବିଧା ଅସୁବିଧା ତ ଫେର୍ ଅଛି।

ମଦନ ତାର ସ୍ତ୍ରୀର କଥା ମନଦେଇ ଶୁଣୁଥାଏ। ସେ କହିଲା– ମୁଁ କ'ଣ ବୁଝୁନି କି ? ସମସ୍ତେ ଟଙ୍କା କରଜ ଦେବାକୁ ହାତ ଟେକି ବସିଛନ୍ତି। ସେଦିନ ଜଗନ କହୁଥିଲା ଟଙ୍କା ଦରକାର ଥିଲେ ଆସି ନେଇଯିବାପାଇଁ।

ରେବତୀ ଏତକ ଶୁଣୁଶୁଣୁ ଆଗ୍ରହରେ କହିଲା– ତୁମକୁ ଜଗନ ଟଙ୍କା ଦେବାପାଇଁ କହିଛି। ଯାଚିକରି ଜଣେ ଦେଉଛି; ଏଣେ ତୁମେ ଟଙ୍କା ନେବାପାଇଁ ମନାକରୁଛ ?

ମଦନ ଆହୁରି ପାଖକୁ ଘୁଞ୍ଚିଆସି ରେବତୀ ଚିବୁକରେ ହାତମାରି କହିଲା– ନା ଲୋ, ତୁ ବୁଝୁନୁ; ଏମାନେ ମୁହଁରେ ଚିକ୍‌ଣିଆ କଥା କହି କାଗଜରେ ଲେଖେଇନେବେ; ସୁଧ କସିଦେବେ କେତେ ନା କେତେ। ମୋର ଜୀବନକାଳରେ ମୂଳସୁଧ ଶୁଝିପାରିବିନାହିଁ। ତେଣୁ ଋଣ ନକରି କେମିତି କାମ ଉଠାଇଦେବି, ସେଥିପାଇଁ ମୁଁ ନାହିଁ କରୁଛି ନା।

ରେବତୀ ତାର ସ୍ୱାମୀ କଥାରେ ଶାନ୍ତ ହୋଇ ପାରିଲାନାହିଁ। ପରଘରୁ ଟଙ୍କା ନଆଣିଲେ କାମ କେବେ ଉଠାଇ ହେବନାହିଁ– ସେତକ ସେ ଠିକ୍ ରୂପେ ଜାଣିଛି। ଘରେ ତାର ଟଙ୍କା ନାହିଁ। ଅଭାବ ଗୋଟିଏ ପରେ ଗୋଟିଏ ଗୋଡ଼ାଇ ଚାଲିଥାଏ। କେତେ କାମ କରିବାକୁ ଅଛି। ମନ ତାର ଉଚ୍ଛନ୍ନ ହୋଇଉଠୁଥାଏ। ବଢ଼ିଲା ଝିଅ କେତେ ଦିନ ଆଉ ଘରେ ରଖିଥିବ। ଏଣେ ବାପ ବର ଯୋଗାଡ଼ର ନାଁ ଧରୁନାହିଁ। ସାଇପଡ଼ିଶାରେ ପୁଟୁରୁପାଟର କଥା ପଡ଼ିଲାଣି। ବଢ଼ିଲା ଝିଅ ଘରେ ଥିଲେ ସଭିଁଙ୍କ ଆଖି ଲାଖିରହିଥାଏ। ଘରେ କେତେ ଦିନ ଆଉ ସାଇତି ରଖିଥିବ ? ସେଦିନ ବନ୍ଧତୁଠରେ ମାଇପିମାନେ କେତେ କ'ଣ କଥା ହେଉଥିଲେ; ତାକୁ ଦେଖିଲା ପରେ ସବୁ ତୁନିହୋଇଗଲେ। ସେ ତ କିଛି ବୁଝିବାକୁ ନାହିଁ; ମୋତେ ସିନା ସବୁକଥା ଶୁଣିବାକୁ ପଡୁଛି, ତାଙ୍କର ଚିନ୍ତା କ'ଣ ? ସେ ଟିକିଏ ଅଭିମାନ କରି କହିଲା– ତୁମର ଢଙ୍ଗଢାଙ୍ଗ ମୋତେ କାହିଁ ଭଲଲାଗୁନାହିଁ।

ରେବତୀର ଅଭିମାନମିଶା ଅଭିଯୋଗର ସ୍ୱର ଆଜି ତା' କାନକୁ ଅସ୍ୱାଭାବିକ ଭଳି ମନେହେଲା। ମୁହଁ ଟେକି ତା' ମୁହଁକୁ ଅନ୍ଧାରରେ ଅନାଇଲା; ମାତ୍ର କିଛି ଦେଖିପାରିଲା ନାହିଁ। କିନ୍ତୁ ତାର ନିଶ୍ୱାସ-ପ୍ରଶ୍ୱାସ ବାରି ଅନୁମାନ କଲା ଏବଂ କହିଲା– ହେଲା, ତୋ' କଥା ରହିଲା। ମୁଁ ତା' ପାଇଁ ଭଲ ପିଲାଟିଏ

ଯୋଗାଡ଼କରେଁ। ସେତକ କରିବାପାଇଁ ସମୟ ଦରକାର। ମୋର କ'ଣ ଦାୟିତ୍ୱ ନାହିଁ? ଖାଲି କ'ଣ ଏକା ତୋ'ରି . . .

ମଦନଠୁଁ ଏତକ ଶୁଣି ତା' ମନରେ ଆଶାର ଆଲୋକ ଖେଳିଗଲା। ଏତେଦିନକେ ତା' ସ୍ୱାମୀଠୁଁ ମର୍ଦାନି କଥାପଦେ ଶୁଣିବାକୁ ପାଇଲା। ଏହି ପଦକ ଶୁଣିବ ବୋଲି ସେ ତା' ସହିତ ଏତେଦିନ ହେଲା ଲାଗିଥିଲା; ଆଜି ସେ କଥାପଦକ ତା'ମନରେ କେତେ ସାନ୍ତ୍ୱନା ଆଣିଦେଲା। ମଣିଷର କଥାପଦକ ହିଁ ମନରେ ସାନ୍ତ୍ୱନା ଦିଏ। ସେହି ମଣିଷର କଥାଟିକକ ଅବାଗିଆ ହୋଇଗଲେ ମନରେ ଅଶାନ୍ତି ଝଡ଼ ସୃଷ୍ଟିକରେ। କଥାର ମୂଳେ ରହିଲା ସବୁ। ସେହି ମଣିଷର କଥାପଦକ ଅନ୍ୟ ମନରେ ଆଶା ବିଶ୍ୱାସ ସଂଚାର କରେ।

ମଦନ ତାର ସ୍ତ୍ରୀକୁ ପାଖକୁ ଟାଣିଆଣି କହିଲା— ଏଥର ତୋ' ମନ ବୁଝିଲା ତ? ଆନନ୍ଦରେ ତାର ମନରୁ ଏକ ବୋଝ ଖସିଗଲାଭଳି ମନେହେଲା। ସତରେ, ତା' ବାପ ମନରେ ଝିଅପାଇଁ ଚିନ୍ତା ରହିଛି— ନରହିବ ଅବା କେମିତି? ଯେତେହେଲେ ତ ବାପ। ଟିକିଏ ଭୋଳା ମଣିଷ ବୋଲି ସିନା। ବୁଝନ୍ତି ସେହି କଥା, ମାତ୍ର ଟିକିଏ ଡେରିରେ। ଏତକ ବୁଝିଗଲାପରେ ରେବତୀ ଗୋଟିଏ ଆଶ୍ୱସ୍ତିରେ ନିଶ୍ୱାସ ମାରିଲା। ଆନନ୍ଦରେ ମଦନକୁ କୁଣ୍ଢାଇ ପରମ ତୃପ୍ତିରେ ଆଖି ବନ୍ଦକରି ତାର ଓସାରିଆ ଛାତିରେ ମୁହଁଗୁଞ୍ଜି ଶୋଇପଡ଼ିଲା।

## (୧୧)

କୁଆ କା କରିବାବେଳକୁ ମଦନ ବିଛଣାରୁ ଉଠିପଡ଼ିଲା। ଚାରିଆଡ଼େ ତଥାପି ମାଛି-ଅନ୍ଧାର ରହିଛି। ଦେହର ଅଳସ ଭାଙ୍ଗି ଉଠିପଡ଼ି ବିଛଣାପତ୍ର ଗୋଛାଇଦେଲା। ସହଳ ସହଳ କାମ ସାରି ହାଟକୁ ବାହାରିପଡ଼ିବ। ଆଗରୁ ଶୁଭମୁହୂର୍ତ୍ତ ବାହାର କରିଛି; ସେହି ସମୟରେ ବାହାରିପଡ଼ିବ। ସହଳ ହାଟରେ ପହଞ୍ଚିଗଲେ କାହା ଦୃଷ୍ଟି ନପଡ଼ିବା ଆଗରୁ ବଳଦ ହଳେ କିଣିଆଣିବ; ବେଳବୁଡ଼ିବା ଆଗରୁ ଘରେ ପହଞ୍ଚିଯିବ। ଲୋକେ ତ ଉପରେ ପଡ଼ି ହଳ ଜଣେ କିଣୁଥିଲେ ତାକୁ ନେଇଯିବାପାଇଁ ଟକଟକ ହୁଅନ୍ତି। କାହାର ଭଲମନ୍ଦକୁ ବିଚାର ନଥାଏ। ନିଜର ସୁବିଧା ଆଗେ କରିବାପାଇଁ ସଭିଏଁ ବ୍ୟଗ୍ର। ମଣିଷମାତ୍ରକେ ସ୍ୱାର୍ଥପର। ଏମିତି କେତେ କ'ଣ ମଦନ ଭାବିଚାଲିଛି।

ମହାଜନ ଦ୍ୱାରକୁ ଯାଇ ଆଗରୁ ତିନିହଜାର ଟଙ୍କା କରଜ କରିଛି। କେତେ ନେହୁରା ହେଲା ପରେ ଏତକ ମିଳିଲା। ଧାନ ଅମଳ ହେଲେ ଧାନତକ

ବିକିଦେଇ ଋଣ ଶୁଝିବ; ନହେଲେ ତାର ଜମି ପୁଣି ବନ୍ଧାପଡ଼ିଯିବ। ସେତକ ଗଲେ ତାର ହୋଇ ଆଉ କିଛି ରହିବନାହିଁ। ମକ୍‌ବୁତ୍ ହଳଟିଏ ଏତକ ଟଙ୍କାରେ ପାଇଯିବ ବୋଲି ତାର ଭରସା।

ମଦନ ବିଛଣାରୁ ଉଠିପଡ଼ିବା ଦେଖି ରେବତୀ ମଧ୍ୟ ଉଠିପଡ଼ିଲା। ଘରର ବାସି କାମ ସାରିଲେ ଅନୁକୂଳ ପାଇଁ ବ୍ୟବସ୍ଥା କରିଦେବ। ଶୁଭ ମନାସି ଗାଁ ଠାକୁରାଣୀଙ୍କୁ ଚାଉଳ ପକାଇ ବାହାରିପଡ଼ିବ। ମଦନ ସଅଳ ସଅଳ ତାର କାମ ସାରିଦେଲା।

ଘରର କୁକୁଡ଼ା କେତେବେଳୁ ଡାକଦେଲାଣି। ଦୂର କୁକୁଡ଼ାର ଡାକ ଶୁଣି ଘର କୁକୁଡ଼ା ପୁଣି ତାର ପ୍ରତ୍ୟୁତ୍ତର ଶୁଣାଇଦେଲାଣି। ଆଜି ମଦନର ମନ ଆନନ୍ଦରେ ନାଚିଉଠୁଛି। ଘରକୁ ନୂଆ ହଳେ ବଳଦ ହେଲେ ନିଜ ଜମି ନିଜ ହଳରେ ଚାଷକରିବ। ତାର ବୁଢ଼ା ହଳକ ମରିଗଲା ପରେ ମାଗିଯାଚି କାମ ଚଳାଇନେଉଥିଲା; କେତେ ହଇରାଣ ହେବାକୁ ପଡୁଥିଲା। ସ୍ୱାମୀ ସ୍ତ୍ରୀ ଜମିରେ ଖଟିବେ, ଜମିରୁ ସୁନା ଫଳାଇବେ; ଖର୍ଚ୍ଚବାର୍ଚ୍ଚ ଯାଇ କିଛି ସଂଚୟ କରିବେ। ଆଗକୁ କେତେ କାମ ରହିଛି। ଝିଅ ବାହାକରିବ। ଘର ଖଣ୍ଡିଏ ତିଆରି କରିବ। ଏମିତି ଗୋଟିଏ ପରେ ଗୋଟିଏ କାମ ଲାଗିରହିଛି।

ଘର-ସଂସାର କଲେ ମଣିଷକୁ କାମ କ'ଣ ଛାଡ଼ି ଯାଇପାରିବ କି? ଖଟି ଖଟାଇଲେ ସବୁ କାମ ଉଠିଯିବ। କାମ କେବେ ଅଟକିଯିବନି। ହଳ କିଣା ସରିଲେ ବିହନ ସାର ଦରକାର। ଧାନ ରୋଇବାପାଇଁ ଲୋକ ଦରକାର। ଫସଲର ରୋଗ ପୋକ ପାଇଁ ଔଷଧ ଦରକାର। ଏଇମିତି ଗୋଟିଏ ପରେ ଗୋଟିଏ କାମ ଲାଗିରହିଥିବ।

ଚାଷୀକୁ ସଦାବେଳେ କାମ ଗୋଡ଼ାଇରହିଥାଏ। ଯେ ନିଜେ ଖଟେ ଏବଂ ଅନ୍ୟକୁ ଖଟାଏ, ସେ ତାର ଲାଭ ଉଠାଏ। ଯେ ଅନ୍ୟକୁ କାମ ବତାଇ ଦେଇ ବସିରହେ, ସେ ମୁଣ୍ଡରେ ହାତ ମାରି, ଭୋକଉପାସରେ ପେଟରେ ଓଦାକନା ପକାଇ ଦିନ ବିତାଏ। ମଦନ କିନ୍ତୁ ଜଣେ କାମିକା ପୁରୁଷ। ବେଳକାଳ ଦେଖି ସେ ତା' କାମରେ ଲାଗିଯାଇଥାଏ। ଯେଉଁ କାମରେ ଲାଗିବ ସେ କାମରେ ମନଦେଇ ଲାଗିଯାଏ। ଗାଧୋଇପାଧୋଇ ଲୁଗାପଟା ବଦଳାଇ ବାହାରିପଡ଼ିଲା। ଶୁଭ କାମରେ ହାତ ଦେଲେ ଗାଧୋଇ ଶୁଦ୍ଧପୂତ ହୋଇ ବାହାରିବା ଏକ ବିଧି। ଗାଁ ଠାକୁରାଣୀଙ୍କୁ ମନେମନେ ମନାସି ପୂଜାବିଧି କରି ଚାଉଳ ଗଣ୍ଡାଏ ପୂର୍ବଦିଗକୁ ପକାଇ ମୁଣ୍ଡିଆ ମାରି ଅନୁକୂଳ କଲା। ଯିବା ବାଟରେ ଗାଁର ତାର ସାଙ୍ଗ, ହାଟ-ବଜାରରେ ପୋଖତ ରତନାକୁ ନେଇ ହାଟକୁ ବାହାରିପଡ଼ିଲା।

କାଲିଠୁଁ ରତନାକୁ ହାଟକୁ ଯାଇ ହଳ କିଣିବା କଥା କହିବାକ୍ଷଣି କେତେ ଆନନ୍ଦରେ ସେ ହଁ ଭରିଥିଲା। ସେ ଜଣେ ଜାଣିବା ଶୁଣିବା ଲୋକ, ପୁରୁଖା ଚାଷୀ। ହାଟ-କାରବାର ଭଲ ଜାଣେ। ହଳ ଚିହ୍ନିବାରେ ପୋଖତ। ବଜାର ସଉଦା ପାଇଁ ଏଭଳି ମାମଲତକାର ଲୋକ ଦରକାର; ନହେଲେ ମଠୁଆ ହଳ ଯଦି ପାଲରେ ପଡ଼ିଯିବ, ତେବେ ସବୁ ସରିଯିବ। ସେଥିପାଇଁ ଜଣେ ଜାଣିବାଶୁଣିବା ଲୋକ ସାଥିରେ ନହେଲେ ଏ କାମରେ ଠକିଯିବା ସମ୍ଭାବନା ବେଶି। ରେବତୀ ତାର ସ୍ୱାମୀର ଯିବାବାଟକୁ ଅନାଇ ରହିଛି। ଗ୍ରାମଦେବତାଙ୍କୁ ଶୁଭ ମନାସିଛି।

## (୧୨)

ଗାଁ ପୋଖରୀତୁଠରେ ମାଇପିମାନଙ୍କ ମେଳଣ ବସିଛି। ଗାଧୋଇବା ଭିତରେ କେତେକଥା ପଡ଼ିଯାଉଛି। କିଏ ଗାଧୋଉଛି, କିଏ ଲୁଗା ଧୋଇବାରେ ବ୍ୟସ୍ତ ରହିଛି, କିଏ ହଳଦୀ ମାଖି ତାର ସାଥୀକୁ ମାଖିବାକୁ ଯାଚୁଛି, କିଏ ଦେହରେ ସାବୁନ୍ ଲଗାଇ ଫେଣରେ କଳାଦେହକୁ କ୍ଷଣକ ପାଇଁ ଧଳା କରିଦେଉଛି। ସାବୁନର ବାସନାରେ ତୁଠଟି ମହକି ଉଠୁଛି। ଅନ୍ୟ ମାଇପେ କେତେ ଖୁସି ହୋଇ କହୁଥାନ୍ତି— ସାବୁନର ବାସନା କେଡ଼େ ମହମହ ହୋଇ ବାସୁଛି। ଆଜି ତୋ' ଗେରସ୍ତ ତୋତେ ଦେଖି ମୋହିଯିବ ଲୋ।

ମାଇପୀମାନଙ୍କ କଳରୋଳରେ ଡାକହାକରେ ପୋଖରୀ ତୁଠଟି ଗହଳିହୋଇ ଉଠିଛି। ପାଣି ଭିତରକୁ କିଏ ଡେଇଁପଡ଼ି ପାଣିକୁ ଚହଲାଇ ଦେଉଛି ତ, ଅନ୍ୟଜଣେ ପାଣି ଗୋଳିଆ ହୋଇଯିବ ବୋଲି ଆକଟକରୁଛି। କେଉଁ ସ୍ତ୍ରୀଲୋକଟି ପାଣିତୁଠରେ ବସି ଦାନ୍ତରେ ଗୁଡ଼ାଖୁ ମେଞ୍ଚାଏ ଘସି କଥାଲହସରେ ଅନ୍ୟ ସାଙ୍ଗ ସହ ଗପିଚାଲିଛି। ପାଟିରୁ କଳା ଛେପ ଥୁ-ଥୁ କରି ତଳେ ପକାଇଦେଉଛି। ମାଇପିଙ୍କ ଭିତରେ କେତେ ଆଡ଼ର କଥା ପଡ଼ିଚାଲିଥାଏ— ଯେମିତି କି ଅସରନ୍ତି କଥା। ଗତ କାଲି କା' ଘରେ କି ତିଅଣ ରନ୍ଧାହୋଇଥିଲା। ଚଣା ଡାଲି ମୀନା ଘରେ ରାନ୍ଧିଥିଲା ଯେ ପୋଡ଼ିଯାଇଥିଲା। ଗେରସ୍ତ ଆସି ଖାଇଲାବେଳକୁ ପୋଡ଼ା ଡାଲି ଖାଇ ମୁହଁ ଆମ୍ବିଳାକରି ତାର ସ୍ତ୍ରୀକୁ ଗାଳିଦେଲା। ତା' ମାଇପ ମୁହଁ ଶୁଖାଇ ତା' ଗେରସ୍ତକୁ କଥାକହୁନାହିଁ। ଏ ତା' ମୁହଁକୁ କି ସେ ତା' ମୁହଁକୁ ଚାହୁଁନାହାନ୍ତି। ସୋମବାରୁ ରାତିରେ ମଦପିଇ ତାର ସ୍ତ୍ରୀକୁ ମାଡ଼ମାରିଛି ଯେ, ପିଠିରେ ତାର ନୋଳା ପଡ଼ିଯାଇଛି। ତୁଳସୀ ଏଇନେ ବାହାହୋଇ ଶାଶୁଘରକୁ ଯାଇଥିଲା।

ସ୍ୱାମୀ ସହିତ କ'ଣ ଝଗଡ଼ା ହୋଇ ତା' ମା'ଘରକୁ ପଳାଇଆସିଛି। ଗେରସ୍ତ ତାକୁ ସନ୍ଦେହକରୁଛି। ସାହୁ ଘର ମଦକୋଠିକୁ ରାତିରେ ଅବକାରୀ ଲୋକେ ଚଢ଼ାଉକଲେ; ସାହୁଠୁ ପାଉଣା ପାଇଲାପରେ ଚାଲିଗଲେ। ମଦକୋଠିରେ ମଦ ବିକ୍ରି ହେଉନଥିଲେ ପୁରୁଷମାନେ ମଦ ପିଇ ମାଇପିଙ୍କୁ ଏତେ ଦହଗଞ୍ଜ କରୁନଥାନ୍ତେ।

ଏମିତି କେତେ କଥା ପୋଖରୀ ତୁଠରେ ପଡ଼ିଯାଉଥାଏ। କିଏ ତାକୁ ନୀରବରେ ଶୁଣୁଥାଏ। କିଏ ତା' ଉପରେ ଆହୁରି ଦୁଇପଦ ଯୋଡ଼ିଦେଇ କଥାଟାକୁ ବନେଇଚୁନେଇ କହିଚାଲିଥାଏ। ରମା ମା' କହିଲା– ''ମଦନ ହାଟକୁ ଯାଇଛି ହଳ କିଣିବାପାଇଁ। ହଳ କିଣିଲେ ଜମି ଚାଷ କରିବ, ପଇସା ସଂଚୟ କରିବ, ଝିଅ ବାହାକରିବ। ବର ଖୋଜାଚାଲିଛି, ଏଣେ ଟୋକୀ ନବୀନ ସଙ୍ଗେ ଭାବ ସଂପର୍କ ରଖିଛି।''

ଏତକ ଶୁଣି ଅନ୍ୟ ମାଇପେ ଖିଲିଖିଲି ହସିଉଠିଲେ। କଥାଟା ଶୁଣି ତାରା ଚିହିଁକିଉଠିଲା– ''ନହେଲା କଥା ଆଉ ଲଗାନା ଲୋ ରମାମା' !''

ରମାମା' ଏତକ ଶୁଣି ତା' ଆଡ଼କୁ ଝପଟିଆସି କହିଲା– ''କ'ଣ ହେଲା, ମୁଁ କିଛି ଜାଣିନି ବୋଲି ତୁ କ'ଣ ଭାବିଛୁ? ସେଦିନ ମାଳତୀ ତାର ଦୁଇ ଆଖିରେ ଦେଖିଛି। ନବୀନ ଆଉ କିଆ ଏକାଠି ବସି ମୁଢ଼ି ଖାଉଥିଲେ। ଇଏ ତାକୁ, ସେ ଯାକୁ ଖୁଆଇଦେଉଥିଲେ। ଦୁହେଁ ଦୁହିଁଙ୍କୁ ଅନାଇରହିଥାନ୍ତି। ତନ୍ମୟ ହୋଇଯାଇଥାଆନ୍ତି। ହସ ଖେଳରେ ଦୁହିଁଙ୍କ ମନ ପ୍ରାଣ ପରା ଏକହୋଇଯାଇଛି। ତାକୁ ଦିନଟିଏ ନଦେଖିଲେ ଏ ଟୋକୀକୁ ଭାତ ରୁଚୁନାହିଁ। ଏ ଟୋକା ମଧ୍ୟ କମ୍ ନୁହେଁ।''

ଆଖିରେ ଦେଖିଲାଭଳି କଥା ସବୁ ଗୋଟିଗୋଟି ରମା ମା' କହିଚାଲିଥାଏ। ଓଦା-ସରସର ହୋଇ ମାଇପୀମାନେ ଶୁଣୁଥାନ୍ତି।

ନୁଖୁରା ବୁଢ଼ୀ; ତା' ତୁଣ୍ଡରୁ କଥା ବାହାରିଲେ ଆଉ ବନ୍ଦ ହେବାକୁ ନାହିଁ। ତାକୁ ତଳେ ପକାଇଦେବବ, ଏମିତି ଜଣେ ଏ ଖଣ୍ଡମଣ୍ଡଳରେ ନାହାନ୍ତି। ତାରା ମଧ୍ୟ କିଆ ପଟ ହୋଇ ପାଟିତୁଣ୍ଡ କରି ପୋଖରୀତୁଠ କମ୍ପାଇଦେଲା। ଦେଖୁଦେଖୁ ପୋଖରୀ ତୁଠ ଦୁଇଦଳ ମାଇପିଙ୍କ ପାଟିତୁଣ୍ଡରେ କମ୍ପିବାକୁ ଲାଗିଲା। ଜଣେ କହୁଛି ଏସବୁ ଡାହା ମିଛକଥା; ଅନ୍ୟଜଣେ କହୁଛି ଏସବୁ ସତକଥା, ଆଖି ଦେଖିବା କଥା।

ମାଇପିମାନଙ୍କ ତୁଣ୍ଡ ଫିଟିଲେ ସହଜରେ ବନ୍ଦ ହେବା କଥା ନୁହେଁ। କାହା ତୁଣ୍ଡରେ କିଏ ବାଡ଼ବତା ଦେଇପାରିବ? କଥାରୁ କଥା ବଢ଼ିଚାଲିଲା। ପାଟିତୁଣ୍ଡରେ ପୋଖରୀତୁଠ ଫାଟିପଡୁଥାଏ। ଶେଷକୁ ରମାମା' ତାର ଶେଷ ଅସ୍ତ୍ର ପ୍ରୟୋଗ କରି ବଡ଼ପାଟିରେ କହିଲା– ''ଏଇ ତାରା ତା' ମା' ଘରେ ଏମିତି ଜଣକ

ସହିତ ଫସିଥିଲା । ସେ କଥା ମଧ୍ୟ ମୋତେ ଜଣା । ଏ କ'ଣ ମୋତେ ବକ୍ଲିଗଲାଭଳି କଥା କହୁଛି ? ତୋ' ମନର ଗୁମର କଥା ମଧ୍ୟ ମୋତେ ଜଣା ଲୋ !'' – ଏହାକହି ରାଗ ତମତମରେ ତାକୁ ଚାହିଁରହିଲା ।

ତାରା ଆଉ ନିଜକୁ ସମ୍ଭାଳିପାରିଲାନାହିଁ । ପାଟିକରି ପୋଖରୀତୁଠ କମ୍ପାଇ, ଛାତିଏ ପାଣିରୁ ଆଣ୍ଠୁଏ ପାଣି ପର୍ଯ୍ୟନ୍ତ ଚାଲିଆସିଲା । ଓଦା ସରସର ଲୁଗାପଟା ତାର ବର୍ତ୍ତୁଳ ସ୍ତନଯୁଗଳକୁ ଢାବୁଡ଼ିଧରିଛି । ପାଣି ଦେହରୁ ନିଗିଡ଼ିଯାଉଛି । ଯୌବନ ସାରା ଅଙ୍ଗରେ ଲହଡ଼ିମାରୁଥାଏ । ସ୍ନାନରତା ରମଣୀର ଅଙ୍ଗ ସୌରଭ ଝଲସିଉଠୁଥାଏ । ସେ ସେଥିପ୍ରତି ସଚେତନ ମଧ୍ୟ ହେଲାନାହିଁ । ସେ ରମାମା'ର ଅତି ନିକଟକୁ ଚାଲିଆସି କହିଲା – ''ହଇଲୋ, ତୁ କାହାକୁ କ'ଣ କହିଯାଉଛୁ ? ମୁଁ କାହା ସହିତ ଫସିଥିଲି କହୁନୁ ? ତୁ ତୋ' ଯୁବା ବୟସରେ କେତେ ପୁରୁଷକୁ ଫସାଇଛୁ, ସେ କଥା ବି କହୁନୁ ।''

ଏମିତି କଥାସବୁ ଗୋଟିକପରେ ଗୋଟିଏ ତୁଣ୍ଡରୁ ଫିଟିଚାଲିଥାଏ । କେଉଁଠିକା କଥା କେଉଁଠି ପଡ଼ିଲାଣି । ହାତ ଉଠାଉଠି ପର୍ଯ୍ୟନ୍ତ କଥା ଚାଲିଗଲାଣି । କେତେ ମାଇପେ ଏସବୁ କଥାକୁ କାନ ନଦେଇ ଚୁପ୍‌ଚାପ୍ ଗାଧୋଇ ତୁଠରୁ ଘରକୁ ପାଣିମାଠିଆ ଧରି ଚାଲିଗଲେଣି । ଧୀରେ ଧୀରେ ପୋଖରୀତୁଠ ଶୂନ୍‌ଶାନ୍ ହୋଇଆସୁଥାଏ ।

ପୋଖରୀ ତୁଠରେ କଥା ଯାଇ ରେବତୀ କାନରେ ପଡ଼ିଲା । ଏ ତୁଣ୍ଡର କଥା ଆର କାନକୁ ଯିବାକୁ କେତେ ବେଳ ବା ଲାଗେ ? ତୁଣ୍ଡ–ବାଇଦ ସହସ୍ରକୋଶ । କଥା ତୁଠରୁ ଯାଇ ଗାଁଦାଣ୍ଡରେ ଖେଳିଗଲାଣି । ମାଇପିମାନେ ତୁଠରୁ ଫେରି ଦାଣ୍ଡରେ କଥା କହି କହି ଚାଲିଯାଉଥାନ୍ତି । କାଖରେ ବୋହିଥାନ୍ତି ପାଣିମାଠିଆ । ନଶୁଣିବା ଲୋକ ଗୋଟିଗୋଟି ସବୁ ଶୁଣିଯାଉଥାଏ ।

ଘରେ କିଆ ଥାଏ । ସବୁକଥା ସେ ବି ଗୋଟି ଗୋଟି ଶୁଣିଗଲା । ମୁଣ୍ଡ ତା'ର ଘୁରିଗଲା । ଲାଜରେ ମୁହଁ ତାର ଝାଉଁଳିଗଲା । କାନମୁଣ୍ଡା ଝାଇଁ–ଝାଇଁ କରିଉଠିଲା । ଛାତି ତାର ଧଡ୍‌ଧଡ୍ ହୋଇଉଠିଲା । ରେବତୀ ସବୁକଥା ଶୁଣି ରାଗ ତମତମ ହୋଇ କିଆ ଉପରେ ତାର ରାଗ ଶୁଝିଦେଲା – ''ଅଲାଜୁକି, ଶେଷକୁ ଦାଣ୍ଡରେ କଥା ପକାଇଲୁ ? ମୋ' ମୁଣ୍ଡ ତଳକୁ କଲୁ । ଏତେ ଅଲାଜୁକୀ ହେଲୁ । ତୋତେ ଆଉ ଲୋକ ମିଳିଲାନାହିଁ ଯେ ସେହି ନବୀନା ଉପରେ ଆଖି ପକାଇଲୁ ? ସେ ଆମ କୁଳର ନା ଆମ ଜାତିର ?''

କିଆ ଏ କଥା ସବୁ ଶୁଣି କାଠ ପାଲଟିଯାଇଥାଏ, ସ୍ତବ୍ଧ ହୋଇ ହତବାକ୍ ହୋଇଯାଇଥାଏ । ସେ ନବୀନ ସହିତ ପିଲାଟିଦିନରୁ ବଢ଼ିଆସିଛି । କୈଶୋର ଓ ଯୌବନର ପୁଲକଭରା ମୁହୂର୍ତ୍ତରେ ପରସ୍ପର ନିକଟରୁ ନିକଟତର ହୋଇଛନ୍ତି ।

ତା' ପିଲାଦିନର ଲୁଚକାଳି ଖେଳ, ଦୋଳିଖେଳ ସବୁ ଗୋଟି ଗୋଟି ମନେପଡ଼ିଯାଉଥାଏ। ମିଛମିଛିକା ବାଲିର ଘର କରି ବରକନିଆ ଖେଳ ଖେଳୁଥିଲେ। ସେହି ପିଲାଦିନର ସାଥୀ ନବୀନ ଆଉ ସେ ଦୁହେଁ ଗାଈ, ଛେଳି ଚରାଉଛନ୍ତି। ଏମିତି ବର୍ଷବର୍ଷ ହୋଇ କେତେ ବର୍ଷ ବିତିଯାଇଛି। କାହିଁ କେଉଁଠି ସେ କିଛି ଭୁଲ କରିନି; ଯେଉଁଥିପାଇଁ ତାର ମାନ-ଇଜ୍ଜତରେ ଆଞ୍ଚ ଆସିବ? କାହିଁ କେହି ତ ତାକୁ କେବେବି ତିଖାରିନାହାନ୍ତି? ଆଜି କ'ଣ ଭୁଲଟିଏ ହୋଇଯାଇଛି ଯା' ପାଇଁ ତାକୁ ଏତେ କଥା ଶୁଣିବାକୁ ପଡୁଛି?

ଝିଅ ବଡ଼ହୋଇଯିବା କ'ଣ ସବୁଠୁଁ ବଡ଼ ଦୋଷ? ଝିଅ ବଡ଼ହୋଇଗଲେ ପ୍ରତି ପଦେ ପଦେ ଜଗି ନଚ଼ଳିଲେ ଏମିତି ବିପଦ ମାଡ଼ିଆସିଥାଏ। ପ୍ରତି କଥାରେ, ପ୍ରତି କାର୍ଯ୍ୟରେ ମଣିଷ ମନରେ ସନ୍ଦେହ ଉଙ୍କିମାରିଥାଏ। ମଣିଷ ମନ ସଦାବେଳେ ପାପରେ ଭରିରହିଥାଏ। ଭଲ-ମନ୍ଦ ବିଚ଼ାର କରିବାର ଶକ୍ତିଟିକକ ମଧ୍ୟ ନଥାଏ।

କିଆ ଆଜି ଏକ ବିଷମ ପରିସ୍ଥିତିରେ ପଡ଼ିଯାଇଛି। ମନରେ କେତେ ଯେ ଆଶଙ୍କା ଖେଳିଯାଇଛି। ପୋଖରୀ ତୁଠରେ ମାଇପିଙ୍କ ମେଳରେ ତାକୁ ନେଇ ଏତେ ଚର୍ଚ୍ଚା ହୋଇଯାଇଛି। ଗାଁ ଲୋକେ ତାକୁ ଆଡ଼ଆଖିରେ ଚାହିଁବେ। ଘରେ ମାଇପିମାନେ ତାକୁ ନେଇ ଫୁଟୁରଫାଟୁର ହେବେ। ବାପା ଶୁଣିଲେ କ'ଣ କହିବ? ସେ ରାଗରେ ନିଆଁପାଲଟିଯିବ। ତା'ରି ସାଙ୍ଗ ମାଳତୀ ତାକୁ ଏତେସବୁ କଲା। କୂଟ କପଟୀ ସେ, ମଉନମୁହାଁ। କେତେ ଛନ୍ଦ କପଟ ଲଗାଇ ଗାଁ-ମାଇପିଙ୍କୁ ଭୁଲାଇ ତା' ନାଁରେ ମିଛ କଳଙ୍କ ଲଗାଇଦେଲା।

ମନ ତାର ଘୃଣାରେ ଭରିଗଲା। ମାଳତୀ ଉପରେ ତାର ରାଗ ବଢ଼ିଚାଲିଲା। ରାଗରେ ମୁହଁ ତାର ନାଲିପଡ଼ିଗଲା। ପୁଣି ପର ମୁହୂର୍ତ୍ତରେ ଭାବିବାକୁ ଲାଗିଲା– କଥା କ'ଣ ସତ ନୁହେଁ କି? ସେ କ'ଣ ନବୀନକୁ ଭଲପାଉନାହିଁ କି? ନବୀନକୁ ଦିନଟିଏ ନଦେଖିଲେ ମନ ତାର ଛଟପଟ ହୁଏନାହିଁ କି? ମନ ଛଟପଟ ହେବା କ'ଣ ପ୍ରେମ ନୁହେଁ କି? ଏସବୁ କଥା ମାଳତୀ ଜାଣେ। ତେଣୁ ସେ କଥାଟାକୁ ବନେଇଚୁନେଇ ଗାଁ ମାଇପିଙ୍କ ଆଗରେ ବଖାଣିଛି; ନିଜର ବାହାଦୁରି ଦେଖାଇହୋଇଛି। ଫୁଲେଇଟା। ଛୋଟ କଥାଟାକୁ ବଡ଼କରିବାରେ ଏ ଗାଁମାଇପେ ଧୁରନ୍ଧର। ମୋ' ପାଇଁ ସିନା ଛୋଟ, ଗାଁ ମାଇପିଙ୍କ ପାଇଁ ଏଇଟା କେତେ ସୁଆଦିଆ କଥା। ପରର ନିନ୍ଦା କରିବାପାଇଁ ସଭିଙ୍କ ପାଟି ଖଜବଜ ହୋଇଉଠେ। ସେମାନେ କାହୁଁ ବୁଝିବେ ତାର ମନର ବ୍ୟଥା?

ଏମିତି ଭାବି ଭାବି ମନ ତାର ହା-ହତାଶମୟ ହୋଇଉଠୁଥିଲା। ସେ ପୁଣି ହେତୁକଲା; ମା' ତାକୁ ଏକ ନୂଆ କଥା କହିଛି– ନବୀନ ଆମ ଜାତିର

ନୁହେଁ, ଆମ କୁଳର ନୁହେଁ— ତା' ସହିତ ଆମ ସଂପର୍କ ହୋଇପାରିବ ନାହିଁ। ସେ ଗୋଟିଏ ଜାତିର; ମୁଁ ଗୋଟିଏ ଜାତିର— ଭିନ୍ନ ଜାତି ସହିତ ବିବାହ ସଂପର୍କ ହୋଇପାରିବ ନାହିଁ। ଏ କଥାପଦକ ତାକୁ ନୂଆ ଲାଗିଲା।

ନବୀନ କେଉଁ ଜାତିର ଓ ସେ କେଉଁ ଜାତିର, ଏକଥା ସେ କେବେ ଚିନ୍ତାକରିନି କିମ୍ବା ତା' ମନକୁ କେବେ ଢୁକିନାହିଁ। ସେ କାହୁଁ ବୁଝିପାରିବ ଏ ଜାତିପ୍ରଥା କଥା ? ଏଇ କଥାପଦକ ତା' ମୁଣ୍ଡକୁ ଘୁରାଇଦେଲା।

ମା' ତାର ଲାଜ ଅପମାନରେ ମୁଣ୍ଡ ତଳକୁ କରି ଘର ଭିତରକୁ ଚାଲିଗଲା। ଗାଁମାଇପେ ଏକ ହୋଇ ତା'ରି ବଦନାମ କରିଚାଲିଛନ୍ତି। କାହାକୁ କ'ଣ କହି ସେ ତୁନି କରାଇପାରିବ ? ତାର ଗୋଟିଏ ସମାଜ ଅଛି। ସେଇ ସମାଜକୁ ସେ ଛାଡ଼ି ଯାଇପାରିବ ନାହିଁ। ମା' ତାର ବାରମ୍ବାର କହିଚାଲିଛି। ଜାତିଲୋକେ ଧରିବେ। ଜାତିକୁ ଛାଡ଼ି ସେ ଅଲଗା ଯାଇପାରିବନାହିଁ। ଜାତିଠୁଁ ସେ ଅଲଗା ହୋଇପାରିବ ନାହିଁ। ଯାହା କେବେ ଆମ ସମାଜରେ ଘଟିନାହିଁ, ସେଭଳି ଏ ଏକ ଅଘଟଣ କଥା। କୁଳପ୍ରଥାକୁ ଛାଡ଼ି କିଏ କେବେ ଆଗେଇବାକୁ ଚେଷ୍ଟା କଲେ ଆଗେଇପାରିବ କି ? କିଆ ମନରେ କେତେ ଦ୍ୱନ୍ଦ୍ୱ ଝଡ଼ ସୃଷ୍ଟି ହୋଇଚାଲିଥାଏ। ଜାତିଲୋକଙ୍କୁ ଛାଡ଼ି ସେ ସତେ ଆଗକୁ ଯାଇପାରିବ କି ?

ଏଣେ କିନ୍ତୁ ନବୀନ ସହ ମନ ତାର ଏକାକାର ହୋଇଯାଇଛି। ନବୀନକୁ ସେ ଭଲପାଉଛି। ଜୀବନ ବିନିମୟରେ ସେ ଭଲପାଏ ତାକୁ। ତାର ସ୍ମୃତି, ତାର ପ୍ରୀତି, ତାର ମଧୁର କଥା, ହସହସ ମୁହଁ ସବୁ ଆଖିଆଗରେ ନାଚିଉଠୁଛି। ଭଲପାଇବାଟା ଯେବେ ଭୁଲ, ତେବେ ସେ ଭୁଲକରିଛି; ମାତ୍ର ମନ ତା'ର କହୁଛି, ସେ କେବେ ଭୁଲ କରିନି। ତା'ରି ଅଜ୍ଞାତସାରରେ ତାର ମନର ମିଳନ ନବୀନ ସହ ଘଟିଯାଇଛି। ତାହା ଅତି ସୁଦୃଢ଼ ପ୍ରେମବନ୍ଧନ।

ଭଲପାଇବାର ନିଛକ ଭାବନା ମଧ୍ୟେ ତାର ଅଜାଣତରେ କେତେବେଳେ ତାର ହୃଦୟ ସହିତ ନବୀନର ହୃଦୟ ଛନ୍ଦିହୋଇ ଏକାକାର ହୋଇଯାଇଛି, ଆଜି ସେ ସ୍ପଷ୍ଟ ଉପଲବ୍ଧି କରିପାରୁଛି। ଏଭଳି ସେ କେବେ ଉପଲବ୍ଧି କରିପାରିନଥିଲା। ଆଜି ନବୀନକୁ ନେଇ କେତେ ନୂଆ ଭାବନା, ନୂଆ ସ୍ୱପ୍ନ ତାର ମନଭିତରେ ଖେଳିଯାଉଛି। ଜାତି ସଂପ୍ରଦାୟର ଲୌକିକ ବାଧାବିଘ୍ନ ମଧ୍ୟ ଆଜି ତା' ଆଗରେ ମୂଲ୍ୟହୀନ ହୋଇପଡ଼ିଛି। ସବୁ ତାକୁ ତୁଚ୍ଛ ନିରର୍ଥକ ମନେହେଉଛି।

ମଣିଷ ସୃଷ୍ଟିକରିଛି ଜାତି ଜାତି ଭିତରେ ପ୍ରଭେଦ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବିଭେଦ, ଧର୍ମ ଧର୍ମ ଭିତରେ ପ୍ରଭେଦ, ଧନୀ ଗରିବ ମଧ୍ୟରେ ପ୍ରଭେଦ। ସାରା ସଂସାର ବିଭାଗ ଏବଂ ବିଭିନ୍ନତାରେ ଭରପୂର। ସ୍ୱାର୍ଥପର ମଣିଷ ନିଜ ସ୍ୱାର୍ଥ ସାଧନ ପାଇଁ ଏତକ ନକଲେ ସମାଜରେ ତାର ସ୍ଥିତି ରହିବନି। ତେଣୁ

ଚତୁରତାର ସହ ନିଜ ସ୍ୱାର୍ଥ ସାଧନ ପାଇଁ ଏତକ କରି ସେ ନିଜର ପ୍ରଭୁତ୍ୱ ବଜାୟ ରଖିପାରିଛି। ଅଙ୍କାବଙ୍କା ନଈର ଧାର ଭଳି ମଣିଷର କଥା ଏବଂ କାମ ମଧ୍ୟ ସଦାବେଳେ ବଙ୍କାଟଙ୍କା।

ଜାତି ସଂପ୍ରଦାୟର କଥା କେବେ ତା'ର ମନରେ ସ୍ଥାନପାଉନଥିଲା। ସେ ଭଲକରି ଜାଣିଥିଲା, ନବୀନ ତାର ପିଲାଦିନର ସାଙ୍ଗ, ଧୂଳିଘର ସାଥୀ। ଆଜି ସେ ତାର ଜୀବନର ସାଥୀ ହେଲେ ସେ ସବୁଠୁଁ ବେଶୀ ଆନନ୍ଦିତ ହେବ। ତା' ମନରେ ମଧ୍ୟ ସେହି ଭାବନା କେନ୍ଦ୍ରୀଭୂତ ହୋଇ ତା' ମନକୁ ପୁଲକିତ କରିଦେଉଥିଲା। ନବୀନକୁ ନେଇ ସେ ନାନା ସ୍ୱପ୍ନ ଦେଖିଚାଲିଥିଲା।

ମାତ୍ର ଏଣେ ତା' ମା'ର କଥା, ସମାଜ କଥା ଭାବି ମନ ତାର ହା-ହତାଶମୟ ହୋଇଉଠିଲା। ତାର ଜୀବନ-ଆକାଶରେ ସୃଷ୍ଟିହେଲା ବିରାଟ ଝଡ଼। ଚାରିପଟରୁ ସତେ ଯେପରି ଏକ କଳାବଉଦ ତାକୁ ଘୋଡ଼ାଇଦେଇ ବା-ବତାସର ଏକ ଝଡ଼ ତୋଫାନ ତାକୁ ଦୂରକୁ ଦୂରକୁ ଫିଙ୍ଗିଦେଉଛି। ସେ କ୍ଷତବିକ୍ଷତ ହୋଇ ରକ୍ତାକ୍ତ ଅବସ୍ଥାରେ ତଳେ କଚାଡ଼ିହୋଇ ପଡ଼ି, ଅଚେତ ହୋଇ ଜ୍ଞାନଶୂନ୍ୟ ହୋଇପଡ଼ିଲା। ସତକୁସତ କିଆ ହତବାକ୍ ହୋଇ ଏକ ଜଡ଼ପିଣ୍ଡ ସଦୃଶ ନୀରବ ନିଶ୍ଚଳ ହୋଇ ପଲକବିହୀନ ଭାବରେ ଦୂରକୁ ନିର୍ଲିପ୍ତ ନୟନରେ ଅନାଇରହିଲା। ହୃଦୟ ଓ ମନ ଉଦ୍‌ବେଳିତ ହୋଇଉଠିଲା। ସେ ସ୍ଥାଣୁ ପାଲଟିଯାଇଥାଏ।

(୧୩)

ସଂଜର ମାଛି-ଅନ୍ଧାର ବେଳକୁ ମଦନ ହସ ହସ ମୁହଁରେ ଘରକୁ ହଳ ଅଡ଼େଇ ଚାଲିଆସିଲା। ଝାଳରେ ଦେହ ଭରିଯାଇଥାଏ। କେତେ ଦୂର ବାଟରୁ ହଳ ଅଡ଼େଇ ଆସିଛି। ନୂଆ ହଳ ବାଟ ଜାଣିନାହିଁ; ତେଣୁ ବାଟ କଢ଼ାଇ କଢ଼ାଇ ବଡ଼ କଷ୍ଟରେ ଆଣିବାକୁ ପଡ଼ିଛି।

ହାଟରୁ ସୁନ୍ଦର ହୃଷ୍ଟପୁଷ୍ଟ ହଳ ଯୋଡ଼ିକ କିଣିଆଣିଛି। ଆସିଲାବେଳକୁ କେତେ କ'ଣ ଭାବି ଭାବି ଆସୁଥାଏ। ଘରେ ତାର ସ୍ତ୍ରୀ ତାର ଆସିବାବାଟକୁ ଅନାଇରହିଥିବ। ହଳ ଯୋଡ଼ିକ ଦେଖିଲେ ଆନନ୍ଦରେ ମନ ତାର ନାଚି ଉଠିବ। କିଆ ଦୌଡ଼ିଆସି କେଉଁ ବଳଦ କିପରି, ଗୋଟି ଗୋଟି କହିଚାଲିବ। ସାହସ କରି ପାଖକୁ ଚାଲିଆସି ମୁଣ୍ଡରେ ପିଠିରେ ହାତବୁଲାଇନେବ। ସାନ ଝିଅ ସେବତୀ ପାଖକୁ ଆସିବାକୁ ଡରିବ– କାଳେ ବଳଦ ମାରି ଗୋଡ଼ାଇବ; ପାଖକୁ ଆସିବାକୁ ସାହସ କୁଳାଉନଥିବ। ଏମିତି କେତେ କ'ଣ ଭାବି ଭାବି ଘରକୁ ଆସି ଦେଖେ

ତ ତାକୁ ସ୍ୱାଗତ କରିବାକୁ କେହି ନାହାନ୍ତି। ସବୁ ଯେମିତି ଶୂନ୍‌ଶାନ। ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା। ମନ ତାର ଖଟକା ହୋଇଗଲା। ମନରେ ଖେଳି-ଯାଇଥିବା କେତେ ଭାବନା ସତେ ଯେପରି ତା' ମନରୁ ଲିଭିଗଲା। ମନରେ କେତେ କଥା ଭାବି ଭାବି ଆସିଥିଲା – କାହାକୁ ନଦେଖି ତା' ମୁହଁର ହସଟିକକ ଲିଭିଗଲା।

ମଉଳା ମୁହଁରେ ଏଣେତେଣେ ଚାରିଆଡ଼କୁ ଅନାଇଲା। ଘରେ କ'ଣ କେହି ନାହାନ୍ତି କି? କାହାର ଦେଖାଦର୍ଶନ ମିଳୁନାହିଁ ଯେ? କାହାର ଦେଖାନପାଇ ସେ ଡାକିଲା – "ଆରେ, ତମେସବୁ ଗଲ କୁଆଡ଼େ? ନୂଆ କୁଣିଆ ଆସି ଘରେ ପହଞ୍ଚିଗଲେଣି, ଆସ ଦେଖିବ କେମିତି ହଳ ଯୋଡ଼ି। ଭାଗ୍ୟରେ ଥିଲେ ଏମିତି ଯୋଡ଼ି ମିଳେ। ସାଙ୍ଗରେ ରତନା ଥିଲା ବୋଲି ଏତକ ହେଲା; ନହେଲେ ଆଉ ଜଣେ ଅଧିକା ତିନିଶହ ଟଙ୍କା ଦେଇ ନେଇଯାଇଥାଆନ୍ତା। ଏତେ ବଡ଼ ହାଟରେ ଏହାଠୁଁ ବଳି ଆଉ କୋଉ ବଳଦ ନଥିଲା।" ତା' ଡାକ, ତା' ପାଟିତୁଣ୍ଡ ଶୁଣି ରେବତୀ ଘରଭିତରୁ ବାହାରିଆସିଲା। ମନକଥା ମନରେ ରଖି, ପାଣିଢ଼ାଳଟିଏ ଆଣି ପ୍ରଥମେ ବଳଦ ଦୁଇଟିର ଗୋଡ଼ ଧୋଇଦେଲା। ହଳଦୀ ଲଗା ଚାଉଳ ବଳଦମାନଙ୍କ ମୁଣ୍ଡ ଓ କପାଳରେ ଲଗାଇ, ମୁଣ୍ଡିଆ ମାରିଲା। ଏ ଏକ ସାମାଜିକ ବିଧି; ଘରକୁ ନବାଗତଙ୍କୁ ସ୍ୱାଗତ କରିବା ଆମ ପରମ୍ପରା।

ରେବତୀର ଉଦାସ ମୁହଁକୁ ଦେଖି ପ୍ରଥମେ ମଦନ କିଛି ବୁଝିପାରିଲା ନାହିଁ। ରେବତୀର ଆଖି ଛଳଛଳ, ମୁହଁର ହସଟିକକ ଲିଭିଯାଇଛି। ମଦନ ଆଶ୍ଚର୍ଯ୍ୟ ହୋଇ କ୍ଷଣେକାଳ ତା'ରି ମୁହଁକୁ ଅନାଇ ରହିଲା। ଆଜି ସେ ଗଡ଼ ଜିଣିଲାଭଳି ଆନନ୍ଦରେ ଯୋଡ଼ି ବଳଦଙ୍କୁ ହାଟରୁ ଅଡ଼େଇ କେତେ ଭାବନା କେତେ ମଧୁର କଳ୍ପନା ନେଇ ଘରକୁ ଆସିଲା। ମାତ୍ର ଘରକୁ ଆସି ସେ ଯାହା ଦେଖିଲା, ମନରୁ ତାର ସରାଗଟିକକ ଲିଭିଗଲା।

ରେବତୀ ମଦନର ହାବଭାବ ଦେଖି ପରିସ୍ଥିତିକୁ ସମ୍ଭାଳି ନେଇ କହିଲା – "ଗୋଡ଼ହାତ ଧୋଇ ଆସ, କ'ଣ ଗଣ୍ଡେ ଖାଇଦେବ। ଏତେ ଦୂରରୁ ଆସିଛ, ଖରା ବାଜି ମୁହଁ କଳାପଡ଼ିଯାଇଛି।"

ରେବତୀ ତରତର ହୋଇ ଘରଭିତରକୁ ଯାଇ ପାଣିଢ଼ାଳଟିଏ ଆଣି ଥୋଇଦେଲା – "ହେଇଟି, ମୁହଁଧୋଇପକାଅ, ମୁଁ ଭାତ ବାଢ଼ିଦିଏ।

ଘର ଭିତରକୁ ଭାତ ବାଢ଼ିବାପାଇଁ ଚାଲିଯିବାବେଳକୁ ମଦନ ବାଟ ଓଗାଳି କହିଲା – "ତୋ' ମନ ଆଜି କାହିଁକି ଏତେ ଉଦାସ ହୋଇପଡ଼ିଛି? କ'ଣ ହୋଇଛି ମୋତେ କହୁନୁ କାହିଁକି?"

ସେ ଚାରିଆଡ଼କୁ ଅନାଇ କିଆକୁ ନଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲା – କାହିଁ, କିଆକୁ ତ ଦେଖୁନି, କୁଆଡ଼େ ଗଲା ସେ?

ମନରେ ତାର ଆଶଙ୍କା ଓ ଉତ୍କଣ୍ଠା ଭରିଯାଇଥାଏ । "ତା'ରି ପାଇଁ ତ ଆଜି ଘରେ ଲାଗିଛି ନିଆଁ" —ରେବତୀ ଏତକ ରାଗ-ତମତମ ହୋଇ କହିପକାଇଲା । ମଦନ ଖାଇସାରିଲେ କଥା ପକାଇବ ବୋଲି ସେ ଭାବିଥିଲା; ମାତ୍ର ମଦନର କଥାରେ ତା' ତୁଣ୍ଡରୁ କଥାଟି ବାହାରିପଡ଼ିଲା । ନିଆଁଲଗା ମନ ଟିକିଏ ବି ଥୟ ଧରି ପାରିଲାନାହିଁ । ସେ ନିଜକୁ ନିଜେ ଧିକ୍କାରିହେଲା ।

ମଦନ ଆଶ୍ଚର୍ଯ୍ୟ ହୋଇ ତାର ସ୍ତ୍ରୀର ମୁହଁକୁ ଅନାଇରହିଲା । କିଛିକ୍ଷଣ ପରେ ମୁହଁ ଗମ୍ଭୀର କରି କହିଲା— କ'ଣ ହୋଇଛି କଥାଟା ଖୋଲି କହୁନାହୁଁ କାହିଁକି ? ସେ କଥାଟା ଜାଣିବାପାଇଁ ବ୍ୟଗ୍ରହୋଇପଡ଼ିଲା । ମନରେ ନାନା ଆଶଙ୍କା ଖେଳିଗଲା ।

—"ତୁମର ଗେଲବସରର ଝିଅ ନବୀନ ସଙ୍ଗେ ପ୍ରେମ କରୁଛି । ଗାଁ ମାଇପେ ସେଥିପାଇଁ ପୋଖରୀ ତୁଠରେ ହାଟ ଲଗେଇ ଗାଁଦାଣ୍ଡରେ ଗାଳିଦେଇ ଆଜି ମୋତେ ଏତେସରି କରିଛନ୍ତି । ଘରର ମହତ ପଦାରେ ପକାଇଛି— ଆଉ କ'ଣ କରିଛି ?"

ମଦନ କଥାଟା ଶୁଣି କାଠପାଲଟିଗଲା । ସେ ନିଜ କାନକୁ ମଧ୍ୟ ବିଶ୍ୱାସ କରିପାରିଲାନାହିଁ । ତାର ସ୍ତ୍ରୀ ନିଜ ଝିଅ ନାଁରେ ଏତେବଡ଼ କଥା କହିଦେଉଛି ? ଗାଁଦାଣ୍ଡରେ କଥା ପଡ଼ିଗଲାଣି ? ସେ କିଛି ଭାବିପାରିଲା ନାହିଁ । ମଦନ କ୍ଷଣେକାଳ ନୀରବ ରହି, ନିଜକୁ ସମ୍ଭାଳିନେଇ କିଆକୁ ଡାକିଲା— କିଆ, ଅଇଲୁ !"

ମଦନର ସ୍ୱର ଗମ୍ଭୀର । କିଆ ଭୟରେ କବାଟ କୋଣରେ ଛିଡ଼ାହୋଇ ତାର ମା'ର କଥା ଶୁଣୁଥିଲା । ଭୟରେ ତାର ଛାତିର ସ୍ପନ୍ଦନ ବଢ଼ିଯିବାକୁ ଲାଗିଲା । ମା'ର କଥାପଦକ ତାର ହୃଦୟକୁ ବିଦାରିଦେଲାଭଳି ଲାଗିଲା । କିଆ ଭୟରେ ଡରିଡରି କବାଟ କୋଣରୁ ବାହାରକୁ ଆସିଲା ।

ମଦନ କିଆକୁ ଦେଖି ପାଖକୁ ଆସିବାକୁ କହିଲା । ସେ ଭୟରେ ଶଙ୍କି ଶଙ୍କି ଆଗକୁ ପାଦ ବଢ଼ାଇଲା । ତାର ଭୟାତୁର ସରଳ ନିଷ୍କପଟ ଚାହାଣି ଦେଖି ମଦନ ବିଶ୍ୱାସ କରିପାରିଲା ନାହିଁ ଯେ ତାର ସେହି ଗେଲବସରର ଝିଅ ଏଭଳି କଅଣ ଭୁଲ କରିପକାଇଛି ! ଗାଁମାଇପେ ମିଛଟାରେ ଲଗାଯୋଡ଼ା କରି ତା' ନାଁରେ ବଦନାମ ରଟାଇଛନ୍ତି । ଝିଅ ତାର କେବେ ଭୁଲ କରିପାରିବ ନାହିଁ । ବାପ ହୋଇ ମୋର ସେତକ ଭରସା ଅଛି । ତେବେବି ତା' ମା'ଠାରୁ ଏଭଳି ଅଭିଯୋଗ ଶୁଣିଲାପରେ ବାପ ହିସାବରେ ତାର କର୍ତ୍ତବ୍ୟ କରିବାର ଅଛି । ଗୋଡ଼ ଖସିଲେ ମଣିଷକୁ ତଳକୁ ଖସିଯିବାକୁ କେତେ ସମୟ ବା ଲାଗେ ?

କିଆ ମଥା ନୁଆଁଇ ସ୍ତବ୍ଧ ହୋଇ ଛିଡ଼ାହୋଇରହିଲା; ବାପ ମୁହଁକୁ ଅନାଇବାକୁ ତାର ସାହସ କୁଳାଇଲାନାହିଁ । କିଆ ନୀରବରେ ତା' ସମ୍ମୁଖରେ

ଛିଡ଼ାହୋଇଥିବା ଦେଖି ମଦନ ମନରେ ରାଗ ଜମାଟ ବାନ୍ଧିଆସିଲା । ରାଗ ତମତମ ହୋଇ ପାଟିକରି କହିଲା– ''ତୋ' ମା' ଯାହା କହୁଛି, କ'ଣ ସତ ?''

କିଆ ଆଉ କ'ଣ କହିବ ? ମୁଣ୍ଡ ତଳକୁ କରି ଭୟରେ ତାର ଦୁଇଆଖିରେ ଜମାଟ ହୋଇ ବାନ୍ଧିଥିବା ଲୁହ ଢଳଢ଼ଳ ହୋଇ ତଳକୁ ଗଡ଼ିପଡ଼ିଲା । ତାର ଲୁହ ଦେଖି ବାପର କଠୋର ହୃଦୟ ଦବିଗଲାନାହିଁ । ସେ ଭାବିଲା, କିଆ ଏଭଳି କିଛି ଅନ୍ୟାୟ କରିଛି ଯାହା କୁଳକୁଟୁମ୍ବକୁ ଲାଜ; କିନ୍ତୁ ମନରେ ତାର ବିଶ୍ୱାସ ହେଉନଥାଏ । ତଥାପି ବାପ ହିସାବରେ ତାର କର୍ତ୍ତବ୍ୟ ଝିଅକୁ ଶାସନ କରିବାକୁ ହେବ। ସେ ତ ଆଉ ଛୋଟ ଝିଅ ନୁହେଁ; ବଢ଼ିଲା ଯୁବତୀ ଝିଅ। ସେତକ ଶାସନ କରିନପାରିଲେ ଏବଂ ଏବେଠୁଁ ସାବଧାନ ନହେଲେ ଲେଡ଼ିଗୁଡ଼ କହୁଣିକୁ ବୋହିଯିବ।

ରାଗରେ ତାର ନାକପୁଡ଼ାରୁ ଖରନିଶ୍ୱାସ ବୋହୁଥାଏ । କିଆର ନୀରବତା ତାର ରାଗକୁ ଆହୁରି ବଢ଼ାଇଦେଲା । ସେ ପାଟିକରି ରାଗରେ ହାତ ଉଠାଇ ମାରିବାକୁ ଦୌଡ଼ିଗଲା । କିଆ ଏକ ପାଷାଣ ମୂର୍ତ୍ତିପରି ସେଇଠାରେ ନିଶ୍ଚଳ ହୋଇ ଠିଆହୋଇଥାଏ ।

ରେବତୀ ଧାଇଁଯାଇ ସ୍ୱାମୀ ଆଗରେ ଛିଡ଼ାହୋଇ ପାଟିକଲା– ''ସାବଧାନ, ମୋ ଝିଅ ଦେହରେ ହାତ ଦିଅନା । ମାରିଦେଲେ କ'ଣ କଥାଟା ଲୁଚିଯିବ ? ତାକୁ ବୁଝାଇ କହିଲେ ହେବନା– ମାରିବାକୁ ଦୌଡ଼ିଯାଉଛ ! ଘଣ୍ଟାଚକଟା କରି କଥାଟାକୁ କଦର୍ଯ୍ୟ କରିବା ଅପେକ୍ଷା ଶାନ୍ତିରେ ସବୁକଥା ବୁଝି କାମକଲେ ଭଲ । ସେ ତ ଆଉ ଛୋଟଛୁଆ ନୁହେଁ, ତାର ବୁଝିବା ବୟସ ହୋଇଯାଇଛି । ବାପ ହୋଇ ଯଦି ଏତକ ବୁଝିବାକୁ ଦମ୍ଭ ନାହିଁ– ତାହାହେଲେ ବାପ ହେଉଥିଲ କାହିଁକି ?

କିଆ ବଲବଲ କରି ତା' ବାପ ମୁହଁକୁ ଭୟାର୍ତ୍ତ ଚାହାଣିରେ ଅନାଇ ରହିଲା । ବାପ କ'ଣ ତାକୁ ଜାଣିପାରିଲାନାହିଁ ? ମୁଁ ତ ଏଭଳି କୌଣସି ଭୁଲ କାମ କରିନାହିଁ । ତା' ବାପ ତାକୁ କେତେ ସ୍ନେହକରେ, ତା'ଠୁ ତାକୁ ଅଧିକ କିଏ ଜାଣେ ? ତଥାପି ସେହି ବାପ କିଛି ନବୁଝି, କିଛି ନଜାଣି ମା'ର ପଦେ କଥାରେ ତାକୁ ମାରିବାପାଇଁ ହାତ ଉଠାଇଦେଲା ! ଲଜ୍ଜା ଏବଂ ଗ୍ଲାନିରେ ମନ ତାର କଳାପଡ଼ିଗଲା ।

ମଦନ ଏଣେ ଭାବିଚାଲିଥାଏ– ଝିଅ ଯଦି ଭୁଲ କରିଦେଇଛି, ପୁଣି କଥାଟା ଯଦି ସତ ହୁଏ, ତେବେ କେଉଁଠିକା ପାଣି କୁଆଡ଼େ ବୋହିଯିବ। କଥାଟା ମନରେ ଗୋଳେଇ-ଘାଣ୍ଟି କ୍ରୋଧରେ ତାର ମୁହଁ ବିବର୍ଣ୍ଣ ହୋଇଗଲା । ଏହାଠୁ ଆହୁରି ବଡ଼ ବିପଦ ତା' ଆଖି ଆଗରେ ଝଲସିଉଠିଲା । କିଛି ନଭାବି, କିଛି ବିଚାର ନକରି ତାକୁ ହାତ ଉଠାଇଦେଲା ।

ମଣିଷ ଏମିତି ସମୟେ ସମୟେ ଅନ୍ଧଙ୍କଭଳି କାମ କରି ପରେ ନିଜ ଭୁଲ ବୁଝିପାରି ଅନୁତପ୍ତ ହୋଇଥାଏ। ରାଗ ମଣିଷର ପରମ ଶତ୍ରୁ। ରାଗ ମଣିଷକୁ ବିବେକଶୂନ୍ୟ କରିଦିଏ, ମନକୁ ବିଚ୍ଳିତ କରିପକାଏ, ଭଲମନ୍ଦ ବିଚାର କରିବା କ୍ଷମତାଟିକକ ହରାଇବସେ। ମଦନ ଆଶ୍ଚର୍ଯ୍ୟହୋଇ ତାର ସ୍ତ୍ରୀର ମୁହଁକୁ ବଲବଲ କରି ଅନାଇ ରହିଲା। ତା'ରି କଥାରେ ତା' ଦେହକୁ ଭୂତ ଚଢ଼ିଯାଇଥିଲା; ଅଥଚ ସେହି ସ୍ତ୍ରୀ, ତା' ଝିଅ ଉପରେ ହାତ ଦିଅନା ବୋଲି କହି କେତେ ଦମ୍ଭରେ ତା' ଆଗରେ ଆସି ଛିଡ଼ାହୋଇପଡ଼ିଲା। ସତେ ତ, ଏତେ ବଡ଼ ଝିଅକୁ ହାତ ଉଠାଇବା ତା'ପକ୍ଷେ ଅସୁନ୍ଦର ହେଲା।

ଦୁଃଖରେ, ଲଜ୍ଜାରେ ତା' ମୁହଁ ଶେତାପଡ଼ିଗଲା। ସେ ନିଜକୁ ନିଜେ ଧିକ୍କାରିବାକୁ ଲାଗିଲା। ସେ ନିଜକୁ ଅସହାୟ ମନେକଲା। ନିରାଶ ହୋଇ କ୍ଷଣେକାଳ ତା'ରି ମୁହଁକୁ ଅନାଇରହିଲା। ମନରେ ତାର କେତେ କଥା ଖେଳିଗଲା। ସତରେ ନାରୀ-ମାୟା ଭଗବାନ୍‌କୁ ଅଗୋଚର। କ୍ଷଣକ୍ଷଣକେ କେତେ ଯେ ରୂପ ତାହାର, କଳନା କରିବା ସାଧାରଣ ମଣିଷପକ୍ଷେ ଅସମ୍ଭବ। ବିଚିତ୍ର ଏ ଦୁନିଆ। ତା'ଠୁ ବିଚିତ୍ର ମଣିଷର ମନ, ମଣିଷର ପ୍ରକୃତି।

(୧୪)

ରାଗ ମଣିଷର ପରମ ଶତ୍ରୁ। ମଣିଷ ରାଗିଲେ ବିବେକଶୂନ୍ୟ ହୋଇପଡ଼େ। ସେଇ ରାଗରେ ଅପରର କ୍ଷତି କରିବା ଅପେକ୍ଷା ନିଜରହିଁ ଅଶେଷ କ୍ଷତି ଘଟାଇଥାଏ। ସେଦିନ ରାଗରେ ମଦନ ତାର ବଡ଼ିଲା ଝିଅକୁ, କଥାଟା ଭଲରେ ନବୁଝି ମାରିବାପାଇଁ ହାତ ଉଠାଇଥିଲା। ସ୍ତ୍ରୀର ପଦେ କଥାରେ ତା' ଦେହରେ ରାଗ ଚହଟିଯାଇଥିଲା। ତାର ସ୍ତ୍ରୀ ରେବତୀ ପାରିବାର ମାଇକିନା ବୋଲି ସିନା ତାର ବାଟ ଓଗାଳିଲା, ଝପଟିଆସି ତା' ଆଗରେ ଛିଡ଼ାହୋଇପଡ଼ିଲା; ତାକୁ ଆଖି ତରାଟି ଚାହିଁଲା। ତାର କାମକୁ ନାପସନ୍ଦକଲା। ବାଟ ଓଗାଳିନଥିଲେ ସେ କିଆ ଗାଲରେ ଚଟକଣା ବସାଇଦେଇଥାନ୍ତା। କେଡ଼େ ଭୁଲ କଥାଟାଏ ସେ କରିବାକୁ ଯାଉଥିଲା। ସବୁଦିନପାଇଁ କଥାଟା ହେଜି ହେଜି ମନ ତାର ଘାଣ୍ଟିଚକଟି ହୋଇଯାଇଥାନ୍ତା। ତାର ସ୍ତ୍ରୀ ତାକୁ ଅଟକାଇଦେଲା; କଥାଟା ସେ ସମ୍ଭାଳିନେଲା। ମରଦକୁ ସମୟ ଦେଖି ଆକଟ କରି ଠିକ୍ ବାଟରେ ଚଳାଇବା ସ୍ତ୍ରୀର ଧର୍ମ। ସମସ୍ତିଙ୍କ ହାତରେ ଏହା ହୋଇପାରେନା। ରେବତୀ ସମୟ ଦେଖି କାମ କରେ।

ଶ୍ରଦ୍ଧାରେ ମନ ତା'ର ରେବତୀ ପ୍ରତି ଢଳିଗଲା। କୃତଜ୍ଞତାରେ ମନ ତାର ଭରିଉଠିଲା। ଝିଅ ତାର ନବୀନକୁ ଭଲପାଉଛି। ପିଲାଲୋକ– କଥା ବୁଝାଇଦେଲେ ସେ ସବୁ ବୁଝିଯିବ। ପିଲାଦିନର ସାଙ୍ଗସାଥୀ; ଏକାଠି ଖେଳି ବୁଲିଛନ୍ତି, ଏକାଠି ଦୁହେଁ ଛେଳି ଗାଈ ଚରାଉଛନ୍ତି। ମନ ମିଳିଯାଇଛି। ତାହା କ'ଣ ଦୋଷ କି? ମିଛଟାରେ ସିନା ସେ କେତେ କ'ଣ ପାପଚିନ୍ତା କରିଯାଇଥିଲା। ମଣିଷ ମନକୁ ପାପ ସହଜରେ ଚହଲାଇଦିଏ। ପାପଚିନ୍ତା ଆଗ ତାକୁ ମାଡ଼ିବସେ। ଆମ ମନ ସଦାବେଳେ ପାପରେ ଭରିରହିଥିବା ଯୋଗୁଁ ପାପ ଭାବନା ପ୍ରଥମେ ଆଖିରେ ଓ ମନରେ ପଡ଼େ।

ସେ ଯେତେହେଲେ ଆମ ଜାତିର ପିଲା ନୁହେଁ, ଅନ୍ୟ ଜାତିର, ତା' ସହିତ କିଆର ବାହାଘର ସମ୍ଭବ ନୁହେଁ। ନବୀନ ଆମ ଜାତିର ହୋଇଥିଲେ ତା' ସହିତ କିଆକୁ ସେ ଛନ୍ଦିଦେଇଥାନ୍ତା। ଜାତିପ୍ରଥାକୁ ଉଚ୍ଛେଦ କରିବା ଏତେ ସହଜ ନୁହେଁ। ତା' ଝିଅ, ତା'ରି ଅଜାଣତରେ ପ୍ରଚଳିତ ବ୍ୟବସ୍ଥାକୁ ଭାଙ୍ଗି ନୂତନ ବ୍ୟବସ୍ଥାରେ ମନ ବଳାଇଛି। ତାହା କ'ଣ ସମ୍ଭବ ହୋଇପାରେ? ପରିବର୍ତ୍ତନକୁ ଲୋକେ ସହଜରେ ଗ୍ରହଣ କରିପାରନ୍ତି ନାହିଁ; ତାକୁ କେହି ସ୍ୱାଗତ କରିପାରନ୍ତିନାହିଁ। ପରିବର୍ତ୍ତନକୁ ଲୋକେ ସହଜରେ ଗ୍ରହଣକରିନେଉଥିଲେ ଆଜି ସମାଜରେ ଏତେ ଅଶାନ୍ତି, ଏତେ ଅସନ୍ତୋଷ ଦେଖାଦିଅନ୍ତାନାହିଁ। ମଣିଷ ମଣିଷ ଭିତରେ, ଜାତି ଜାତି ଭିତରେ ଏତେ ପ୍ରଭେଦ ସୃଷ୍ଟି ହୋଇ ମନକୁ କଳୁଷିତ କରିଦିଅନ୍ତାନାହିଁ।

ସ୍ଥିତାବସ୍ଥା ସଦାବେଳେ ପରିବର୍ତ୍ତନର ବିରୋଧୀ। ତେଣୁ ଯେ ପରିବର୍ତ୍ତନ ପାଇଁ ଉଦ୍ୟମକରେ ତାକୁ ସମାଜ ସହଜରେ ଗ୍ରହଣକରିପାରେନାହିଁ। ତେଣୁ ସମାଜଦ୍ୱାରା ନିନ୍ଦିତ ଓ ଭର୍ତ୍ସିତ ହୋଇଥାଏ। ସେ ସମାଜର ଶତ୍ରୁ ହୋଇପଡ଼େ। ତେଣୁ କିଆ ନବୀନକୁ ବାହାହେବା ଏତେ ସହଜ କଥା ନୁହେଁ। ସମାଜ ତାକୁ କେବେ ସହଜରେ ଗ୍ରହଣ କରିପାରିବ ନାହିଁ। ପ୍ରଚଳିତ ବ୍ୟବସ୍ଥାକୁ ଭାଙ୍ଗି, ଏକ ନୂତନ ଜୀବନ ସଂଚାର କରିବା ଏତେ ସହଜ କଥା ନୁହେଁ। ଯାହା ଯୁଗଯୁଗଧରି ଚଳିଆସିଛି, ତାହାକୁ ଓଲଟପାଲଟ କରିବା ଏତେ ସହଜ କଥା ନୁହେଁ। ସେଥିପାଇଁ ସାହସ, ଦମ୍ଭ ଥିଲେ ମଧ୍ୟ ପରିଶେଷରେ ସମାଜ ଆଗରେ ମୁଣ୍ଡ ନୁଆଁଇବା ପାଇଁ ମଣିଷ ବାଧହୋଇଥାଏ। ଆତ୍ମବିଶ୍ୱାସର ସହ ଯେ ସମାଜକୁ ଆଡ଼େଇ ଆଗେଇଯାଇପାରିଛି, ସେ ମଧ୍ୟ ପରିଶେଷରେ ସମାଜର ଜାଲରେ ପଡ଼ି କଷ୍ଟପାଇଛି। କୁସଂସ୍କାର ଓ ଅଶିକ୍ଷା ଯୋଗୁଁ ଅସହାୟ ଭାବରେ ଭାଗ୍ୟକୁ ଦୋଷଦେଇ ମଣିଷ ନିଜରହିଁ କ୍ଷତି ଘଟାଇ ଚାଲିଛି; ନିଜେହିଁ ନିଜର ଶତ୍ରୁ ହୋଇପଡ଼ିଛି।

ମଦନ ଭୂତପ୍ରେତ, ଡାଆଣୀ, ଚିରିଗୁଣୀକୁ ଭୟକରେନା; ସେ ଭୟ କରେ ତାର ଜ୍ଞାତି ଓ କୁଟୁମ୍ବକୁ। ଜ୍ଞାତି, କୁଟୁମ୍ବ ରାଗିଲେ ତାର ଅମଙ୍ଗଳ ହେବ,

ତା'ର ଛୋଟ ସଂସାର ଚଳିପାରିବନାହିଁ। ସେମାନଙ୍କ ନାଲିଆଖି ଦେଖିଲେ ଛାତି ତାର ଧଡ଼ଧଡ଼ ହୋଇଉଠେ। ବାହାଘର ପିଲାଖେଳ ନୁହେଁ; ଜୀବନସଉଦା। କେତେ କଥା ଅଛି। ନବୀନ ସହିତ କିଆର ବାହାଘର କେବେ ହୋଇପାରିବନାହିଁ। ଏ ଆମ ସମାଜ କଥା। ଝିଅ ମୋର ଏତେ କଥା କାହୁଁ ବୁଝିବ? ମୁଁ ତ କେବେ ତାକୁ ଏତେ କଥା କହିନଥିଲି; ସେ ଅବା ଜାଣନ୍ତା କିପରି? ଏତକ କଥା କିଆ ଜାଣିଗଲେ ସେ ତା' ମନକୁ ଆପେ ଆପେ ବୁଝାଇନେବ; ଆଉ ନବୀନ ସହିତ ମିଶିବନାହିଁ। ସମାଜ ତାକୁ ଧରିବସିବ ବୋଲି ଜାଣିଗଲେ ବାପ-ମା'ଙ୍କ ମନରେ କଷ୍ଟ ହେବ ଜାଣି ସେ ସବୁକଥା ବୁଝି ବିଚାରି କାମ କରିବ। ଏଇ କଥାପଦକ ସେ ଆଗରୁ ବୁଝାଇଦେଇପାରିଥିଲେ ଆଜି ଦାଣ୍ଡରେ କଥା ପଡ଼ିନଥାନ୍ତା। ବାପ ଭାବରେ ସେତକ ତାର ଭୁଲ ନୁହେଁ କି? ସେ ନିଜ ଭୁଲ ପାଇଁ ଅନ୍ୟକୁ ଦୋଷ ଦେଇ ଲାଭ କ'ଣ? ନିଜ ଭୁଲ ନିଜେ ବୁଝିପାରିଲେ ସବୁ ଠିକ୍‌ହୋଇଯାଇଥାଏ। ସେ ତ ଏମିତି କିଛି ଭୁଲ କରିନି? କଅଁଳିଆ ମନ, କେଉଁଠି ଲାଖିଯାଇଛି— ତାକୁ କ'ଣ ଧରିବସିଲେ ହେବ? ଗାଁମାଇପେ କଥାଟା ନବୁଝି ଅକାରଣରେ ନିନ୍ଦା ରଟିଚାଲିଛନ୍ତି। ଏମିତି କଳିହୁଡ଼ୀ ମାଇପେ ପରନିନ୍ଦାରେ ଆନନ୍ଦ ପାଇଥାନ୍ତି; ସଜ ମାଛରେ ପୋକ ପଡ଼ିଲାଭଳି କଥା କହିଥାଆନ୍ତି। ଏଭଳି ମାଇପେ ଛୋଟ କଥାକୁ ବଡ଼କରି ଅପପ୍ରଚାର କରନ୍ତି। ତଥାପି ମିଛକଥାକୁ ସତ ବୋଲି କହି ଢେଙ୍ଗୁରା ପିଟିଲେ ତାହା କ'ଣ ସତ ହୋଇଯିବ କି?

ଏଭଳି ଭାବି ଭାବି ମଦନ ତା' ମନକୁ ସାନ୍ତ୍ୱନା ଦେଉଥାଏ। ସେ ଧୈର୍ଯ୍ୟହରା ହେଲାନାହିଁ; ମନକୁ ଦୃଢ଼କଲା। ସେ ଶାନ୍ତ, ଗମ୍ଭୀର ହୋଇ ଆଗାମୀ ଦିନର ଗତି କେଉଁଆଡ଼କୁ ହେବ, ତାକୁ ଅପେକ୍ଷା କରି ରହିଲା।

ସେଦିନ ସେ ହାଟକୁ ବଳଦ କିଣିବାକୁ ଗଲା କେତେ ଦିନପରେ। ସେ ହାଟକୁ ଯାଇଥିଲା କାମ ନପଡ଼ିଲେ କିଏ ବା ହାଟକୁ ବାରମ୍ବାର ଯାଇପାରେ? ବଳଦ କିଣା ସହ ହାଟରେ କେତେ ଲୋକଙ୍କ ସହ ତାର ଭେଟହେଲା। ହାଟ ହେଉଛି ଏକ ମିଳନ କେନ୍ଦ୍ର। କେତେଆଡୁ କେତେ ଲୋକ ଆସିଥାନ୍ତି; ଏକାଠି ଭେଟ ହୁଏ। ତା' ମାମୁଘର 'ବୁଢ଼ୀଦର' ତା' ଗାଁଠୁ ବହୁ ଦୂର। ଅନେକଦିନ ହେବ ସେ ମାମୁଘର ଯାଇନାହିଁ। ହାଟରେ ସଭିଁଙ୍କ ସହ ଭେଟହୋଇଗଲା। ତା' ମାମୁଙ୍କୁ ମୁଣ୍ଡ ନୁଆଁଇ ନମସ୍କାରକଲା। ସେମାନେ ତାଙ୍କ କାମରେ ହାଟକୁ ଆସିଥିଲେ। ତା' ମାମୁର ବଡ଼ପୁଅ ଅକ୍ରୁର; ପଞ୍ଚହତା ମରଦ। କେତେବର୍ଷ ପରେ ଭେଟହେଲା। କଥାପ୍ରସଙ୍ଗରେ କେତେଆଡୁ କେତେ କଥା ପଡ଼ିଲା। ସୁଖଦୁଃଖର କଥା। ଅନେକ ଦିନପରେ ଭେଟ; ତେଣୁ କଥାଲହସରେ ଅନେକ କଥା ପଡ଼ିଗଲା।

ସେ ହିଁ ପ୍ରଥମେ କଥା ପକାଇଲା କିଆ ସହିତ ତାର ବଡ଼ପୁଅ ନଗେନର ବାହାଘର ପ୍ରସ୍ତାବ। ତାର ପୁଅ ନଗେନ ବଡ଼ହୋଇଗଲାଣି। ବାପ ସହିତ କ୍ଷେତରେ କାମ କରୁଛି। ବୟସ ବାଇଶି-ତେଇଶି ପାଖାପାଖି।

ମଦନ ପ୍ରଥମେ କଥାଟି ଶୁଣି କିଛି କହିପାରିଲାନାହିଁ; ଗୁମ୍‌ମାରି ଠିଆହେଲା। ଏଣେ ଘରେ ତାର ସ୍ତ୍ରୀ ତା' ସହିତ ଲଗାଇଛି ଝିଅ ବାହାଘର ପାଇଁ। ସେ କ'ଣ କହିବ, କିଛି ଭାବିପାରିଲାନାହିଁ। କଥାଟାକୁ ଟାଳଟୁଳ କରି ଆଡ଼େଇଦେବାପାଇଁ ଚାହୁଁଥିଲା; ମାତ୍ର ପାଖରେ ରତନା ଥିଲା, ସବୁ ଗୋଟିଗୋଟି ଶୁଣିଯାଉଥାଏ। ମାମଲତକାର ଭଳି କଥାଟାକୁ ସହଜରେ ଛିଣ୍ଡାଇଦେଲା ଭଳି କହିଲା – ‘‘ନଗେନକୁ ସେ ଗଲା ହାଟପାଳି ଦେଖିଛି, ଆଗରୁ ବି ଦେଖିଛି। ସୁନ୍ଦର ପିଲାଟାଏ। ବଳିଲା ବଳିଲା ବାହୁ, ହୃଷ୍ଟପୁଷ୍ଟ ଚେହେରା, କୁଞ୍ଚକୁଞ୍ଚିଆ ମୁଣ୍ଡବାଳ, ଗୋଲ ଗୋଲ ଆଖି ଦେଖିଲେ ମନ ଲାଖିଯିବ। କିଆ ଆଉ ନଗେନ ସୁନ୍ଦର ଯୋଡ଼ି; ବେଶ୍ ମାନିବ। ମଦନଭାଇ ଏଥିରେ ମଙ୍ଗିବା ନମଙ୍ଗିବା କିଛି ନାହିଁ।’’ ହଠାତ୍ କଥା ପଡ଼ିଗଲା। ତେଣୁ ସେ ଥଙ୍ଗଥଙ୍ଗ ହୋଇଯାଉଛି। ଘରେ ଭାଉଜଙ୍କୁ ନପଚାରିଲେ ସେ କିଛି କହିପାରେନି ବୋଲି। କଥାଟାକୁ ଲାଘବ କରି ସେ କଥାର ମହତ୍ତ୍ୱ ବଢ଼ାଇଦେଲା।

ଆଗରୁ ତା' ମାମୁଘରେ କନିଆ ଯୋଗାଡ଼ ଚାଲିଥାଏ। କିଆ କଥା ମଧ୍ୟ ତାଙ୍କ କନିଆଦେଖା ପ୍ରସ୍ତାବରେ ରହିଥାଏ। ସେମାନେ ଆଗରୁ ସବୁକଥା ସଂଗ୍ରହ କରିନେଇଥାନ୍ତି। ସମୟ ଆସିଲେ ସେମାନେ ମଦନ ଘରକୁ ଆସିବେ ବୋଲି ସ୍ଥିରକରିଥାନ୍ତି।

ମଦନର ମା' ବାପ ମରିଗଲାପରେ ସେମାନଙ୍କର ଯିବାଆସିବା ଟିକିଏ କମିଯାଇଛି। ଆଜି ହାଟରେ ହଠାତ୍ ଭେଟହୋଇଗଲା ବୋଲି ଅକ୍ରୂରର ମନଭିତରେ ରହିଥିବା କଥାଟା ଖୋଲିଦେଇଛି। ପୁରୁଣା ବନ୍ଧୁବାନ୍ଧବ। ସେମାନେ କେଉଁ ନୂଆଲୋକ ନୁହନ୍ତି; ଜଣାଶୁଣା ଲୋକ।

ତାର ମାମୁ ପାଖରେ ଛିଡ଼ାହୋଇ ସବୁ ଶୁଣୁଥିଲେ। ସତୁରି ବର୍ଷର ବୁଢ଼ା। ଏବେ ମଧ୍ୟ ବୁଢ଼ାଦିନକୁ ଦଶକୋଶ ବାଟ ଚାଲିଯାଇପାରନ୍ତି। ମଦନ ମୁହଁକୁ ଚାହିଁ ହସିହସି କହିଲେ– ‘‘ଘରକୁ ହଳ ନେଇ ଆମର ଏ ଖବର ମଧ୍ୟ ନେଇଯିବ। ଆସନ୍ତା ମାଘକୁ ଆମେ ସବୁ ଯାଇ ନିର୍ବନ୍ଧ କରିଆସିବୁ। ଯୋଗ ତିଥି ଦେଖି ଏବର୍ଷ ବାହା କରାଇଦେବୁ।’’

ମଦନ ମାମୁଙ୍କ କଥାକୁ ଟାଳିପାରିଲାନାହିଁ। ମାନ୍ୟଲୋକଙ୍କୁ ସେ ଅବା କ'ଣ ଉତ୍ତର ଦେଇଥାନ୍ତା! ତାଙ୍କ ମୁହଁରେ ମା'ଙ୍କ ମୁହଁ ଝଲଝଲ କରି ଦେଖାଦେଲା। ସେ ଥରେ ତାଙ୍କ ମୁହଁକୁ ଚାହିଁଦେଇ ‘ହଁ’ କରିଦେଇ ଆସିଲା।

ଯାହା ସେ ଭାବିନଥିଲା, ଆପେ ଆପେ କଥାଟା ପଡ଼ି ସବୁ ଛିଣ୍ଡିଗଲା। ବାହାଘର କଥା ଏତେ ସହଜରେ ତୁଟିଯିବ ବୋଲି ସେ କେବେ ଭାବିନଥିଲା। ଯେଉଁଠି ମନର ମେଳ ଏବଂ ଯୋଗସୂତ୍ର ରହିଛି, ସେଇଠି ସବୁକଥା ଭଲରେ ଭଲରେ ତୁଟିଯାଇଥାଏ।

ସେଦିନ ଆନନ୍ଦରେ ମନ ତାର କୁରୁଳିଉଠିଲା। ଏତେ ଆନନ୍ଦରେ, ଏତେ କଥା ହୋଇ ସବୁ ଠିକ୍‌ଠାକ୍ କଲାବେଳକୁ ଏଣେ ଗାଁକୁ ଆସି ଯାହା ଶୁଣିଲା, ମନ ତାର ଅଥୟ ହୋଇପଡ଼ିଲା। ତେଣୁ ରାଗରେ କିଛି ନଭାବି, କିଛି ନବୁଝି କିଆ ଉପରକୁ ହାତ ଉଠାଇଦେଇଥିଲା। ରାତିରେ ଶୋଇଲାବେଳେ ମଦନ ତାର ସ୍ତ୍ରୀକୁ ହାଟରେ ହୋଇଥିବା କଥା ଗୋଟି ଗୋଟି କହିଗଲା। ତା' ମାମୁ ସହିତ କେତେ ଦିନ ପରେ ଭେଟହେଲା। ତାକୁ ଦେଖି ସେ କେତେ ଖୁସିହେଲେ। ଘରକଥା ସବୁ ପଚାରି ବୁଝିଲେ। ତାଙ୍କ ପୁଅ ଅକ୍ରୁର; ସେ ବି ହାଟକୁ ଆସିଥିଲା। ସେ ହିଁ କଥା ପକାଇଲା ତା' ପୁଅ ନଗେନ ସହିତ କିଆର ବାହାଘର କଥା।

ରେବତୀ ପାଖରେ ଶୋଇ ଉତ୍‌କଣ୍ଠାର ସହ ସବୁକଥା ଗୋଟି ଗୋଟି ଶୁଣିଯାଉଥାଏ। ତାର ମନ ଆନନ୍ଦରେ ନାଚିଉଠୁଥାଏ। ଏତେଦିନପରେ ଭଗବାନ୍ ତା' ଡାକ ଶୁଣିଛନ୍ତି। ସେହି ଘନ ଅନ୍ଧାର ମଧ୍ୟରେ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ତାର ହାତ ଆପେ ଆପେ ଯୋଡ଼ିହୋଇ ମୁଣ୍ଡରେ ଲାଗିଯାଇଥାଏ।

ପାଖ କୋଠରିରେ କିଆ ଶୋଇଥାଏ। ସେତେବେଳଯାଏଁ ତା' ଆଖିକୁ ନିଦ ଆସିନଥାଏ। ଅନେକ କଥା ତା' ମନକୁ ଘାଣ୍ଟିଚ୍‌କଟି ଦେଉଥାଏ। ନିନ୍ଦା ଅପବାଦକୁ ତାର ଭାରି ଡର। ବାପ ତୁଣ୍ଡରୁ ତାର ବାହାଘର କଥା ଶୁଣି ସେ ଚମକିପଡ଼ିଲା। ମନରେ ଏକ ଅଜଣା ଭୟ ସଂଚରିଗଲା। ବାହାଘର କଥା ଶୁଣୁ ଶୁଣୁ କେମିତି ଏକ ଅଜଣା ଭୟ ଆଶଙ୍କାରେ ତାକୁ ଚତୁର୍ଦ୍ଦିଗ ଘନ ଅନ୍ଧକାରମୟ ଜଣାଗଲା। ସେହି ଅଜଣା ପୁରୁଷ ସମ୍ବନ୍ଧରେ ତା' ମନରେ କେଜାଣି କାହିଁକି ଭୟଜାତହେଲା, ସେ କିଛି ବୁଝିପାରିଲା ନାହିଁ। ଭୟରେ ଦୁଃଖରେ ତାର ଦୁଇ ଆଖିରୁ ଲୁହ ବୋହିଆସିଲା।

ତାର ମନର ବେଦନା କେହି ବୁଝିପାରିଲେନାହିଁ। ତା' ମନକଥା ମଧ୍ୟ କାହାକୁ ସେ କହିପାରିଲାନାହିଁ। ତା' ମନକଥାକୁ ମଧ୍ୟ କେହି ବୁଝିବାକୁ ଚେଷ୍ଟା କଲେନାହିଁ। ସତେ ଯେପରି ନାରୀ ଏକ ଭୋଗବିଳାସର ସାମଗ୍ରୀ; ନାରୀ ଏକ ଖେଳନା। ଯେତେବେଳେ ଯେଉଁ ପ୍ରକାର କହିଲେ, ସେତେବେଳେ ସେ ହଁ ଭରିବା ଛଡ଼ା ଅନ୍ୟ ଉପାୟ ନାହିଁ। ନାରୀର ମନ ବୋଲି କିଛି ନାହିଁ! ତା' ମନର ସ୍ୱାଧୀନତାଟିକ ମଧ୍ୟ ଆଜି ତାର ନାହିଁ। ପୁରୁଷପ୍ରଧାନ ସମାଜରେ ନାରୀ ସ୍ୱାଧୀନତା କେବଳ ଏକ ଛଳନା, ଏକ ପ୍ରତାରଣା ମାତ୍ର।

କିଆ ମନରେ ଅନେକ କଥା ଖେଳିଯାଇଥାଏ। ମନ ତାର ହା-ହତାଶମୟ ହୋଇଉଠୁଥାଏ। ତାକୁ ସବୁ ଯେପରି ଶୂନ୍ୟ ଶୂନ୍ୟ ଜଣାଗଲା। ନାରୀ ଥରେ ପ୍ରେମରେ ପଡ଼ିଲେ ତାର ତନୁ, ମନ ଓ ପ୍ରାଣକୁ ତାର ପ୍ରେମିକ ପାଖରେ ଅର୍ପଣକରିଦେଇଥାଏ। ପ୍ରେମ ବାସ୍ତବିକ ବଡ଼ ଅଦ୍‌ଭୁତ। ତାହାର କାଉଁରୀ ପରଶରେ ମନ ପୁଲକିତ ହୋଇଉଠେ। ସେଥିରେ ସେ ପାଇଥାଏ ପରମତୃପ୍ତି। ତାର ଗୋପନ ପ୍ରେମ ତାର ପ୍ରିୟଜନ ନଜାଣନ୍ତୁ, ଏଥିରେ ତାର ସ୍ୱାର୍ଥ ନିହିତ ରହିଥାଏ। ସେଥିରେ ସେ କେତେବେଳେ ପାଏ ଆନନ୍ଦ ତ କେତେବେଳେ ପାଏ ନିରାନନ୍ଦ। ଆଜି ଠିକ୍ ସେହିଭଳି କିଆ ମନରେ ତାର ଗୋପନ ପ୍ରେମ କଥାଟା ତା' ସାଙ୍ଗସାଥୀ ଜାଣିଲେ, ଗାଁ ମାଇପେ ଜାଣିଲେ, ଶେଷରେ ବାପ-ମା' ଜାଣିଲେ, ସାଇପଡ଼ିଶା ଜାଣିଲେ। ମାତ୍ର ଆଜି ସବୁ ଜାଣିଲାପରେ, ସବୁ ଶୁଣିଲା ପରେ ମନ ତାର ହା-ହତାଶମୟ ହୋଇଉଠିଛି।

ପ୍ରେମିକ ପ୍ରେମିକା ମନର ଭାବନା ବଡ଼ ବିଚିତ୍ର। ଜଣେ ଅନ୍ୟର ସୁଖଦୁଃଖରେ ଭାଗୀଦାର ହୋଇଯାଆନ୍ତି। ଜଣେ ହସିଲେ ଆରଜଣକ ମୁଖରେ ହସ ଚହଟିଆସେ। ଜଣେ କାନ୍ଦିଲେ ଆରଜଣକ ମଧ୍ୟ କାନ୍ଦିଉଠେ। ଭଗବାନ୍‌ଙ୍କ ଅପୂର୍ବ ସୃଷ୍ଟି ହେଉଛି ନାରୀ। ତାର ହୃଦୟ ଲହୁଣିଠାରୁ ବି ଆହୁରି କୋମଳ। ପ୍ରେମପାଗଳିନୀ ନାରୀର ହୃଦୟ ପଦ୍ମପାଖୁଡ଼ାର ଶିଶିର ବିନ୍ଦୁପରି ତରଳ, ସଦା ଢଳଢ଼ଳ। ତାର ସୃଷ୍ଟି ଦେବାପାଇଁ; ନେବାପାଇଁ ନୁହେଁ। ଦେବାରେ ସେ ପାଇଥାଏ ଆନନ୍ଦ, ପାଇଥାଏ ପରମ ତୃପ୍ତି। ନେବାର ସେ ଆଶା ରଖେନାହିଁ। ପ୍ରେମର ପୂଜାଫୁଲ ଅର୍ପଣ କରି ସେ ପାଇଥାଏ ପରମତୃପ୍ତି, ପରମ ଶାନ୍ତି। ମନରେ ନଥାଏ ବାସନା, ନଥାଏ ଅଭିଳାଷ। ପ୍ରେମିକର ପୁଲକିତ ହସହସ ମୁହଁଟିକକ ତା' ମନରେ ଭରିଦେଇଥାଏ ଆତ୍ମସନ୍ତୋଷ।

ମାତ୍ର ଯେଉଁଠି ପ୍ରେମର ପ୍ରତିବନ୍ଧକ ସୃଷ୍ଟିହୋଇଥାଏ, ସେତେବେଳେ ପ୍ରେମିକ ପ୍ରେମିକା ମନରେ ଦେଖାଦେଇଥାଏ ବିଷାଦ; ହୃଦୟରେ ଖେଳିଯାଏ ହା-ହତାଶମୟ ଯନ୍ତ୍ରଣା। ଆଜି କିଆ ମନରେ ଦେଖାଦେଇଛି ଏକ ଉଦାସ, ହତାଶର କଳା ବଉଦ। ଏକ ନିରପରାଧିନୀ, ନିରୁପାୟ କୁଆଁରୀ କନ୍ୟା ଭାଗ୍ୟରେ ଯାହା ଥିବ, ତାହାହିଁ ତାକୁ ଭୋଗିବାକୁ ପଡ଼ିବ।

ଶୂନ୍ୟ ଆକାଶକୁ ସେ ଚାହିଁରହିଲା। ତାର ପରମୁହୂର୍ତ୍ତରେ ସେ ଭାବବିହ୍ୱଳ ହୋଇପଡ଼ିଲା। ଯାହାକୁ ସେ ମନେମନେ ଏତେ ଭଲପାଉଥିଲା, ତାହାରି କଥା ବାରମ୍ବାର ତାର ମୁହଁ ଆଗରେ ଝଲସିଉଠିଲା। ସେହି ତାର ପ୍ରିୟ ସାଥୀ ନବୀନର ହସହସ ମୁହଁଟିକକ ତାରି ଆଖି ଆଗରେ ନାଚିଉଠିଲା। କୋହ ସମ୍ବରଣ କରିନପାରି ସେ କଇଁକଇଁ ହୋଇ ମନର ବେଦନାକୁ ଚାପିରଖି କାନ୍ଦିପକାଇଲା।

କିଆର କାନ୍ଦ ତା'ର ବାପ-ମା' ପାଖରେ ପହଞ୍ଚିପାରିଲାନାହିଁ। ସେତେବେଳକୁ ସେମାନେ ନିଘୋଡ଼ ନିଦରେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟନେଇସାରିଥାନ୍ତି।

## (୧୫)

ମଦନ ହାଟକୁ ଯାଇ ହଳ ସିନା କିଣିଆଣିଲା, ମାତ୍ର ସେ ଅପଦସ୍ଥରେ ପଡ଼ିଗଲା। ଭାବିଥିଲା— ଯେତେ ଟଙ୍କା କରଜ କରିଛି, ସେତକ ଟଙ୍କାରେ ହଳ କିଣା ହୋଇଯିବ ବୋଲି; ମାତ୍ର ହଳ କିଣିବାବେଳକୁ ଦର ବଢ଼ିବଢ଼ି ଚାଲିଲା। ଦରଦାମ ତୁଟିବାବେଳକୁ ଆଉ ଜଣେ ଆସି ଅଧିକା ଶହେଟଙ୍କା ଦେବାପାଇଁ କହିଦେଲା। ଏତେବେଳକୁ ଆଉ ଜଣେ ଆସି ଆଉ ଦୁଇଶହ ଟଙ୍କା ଅଧିକା ଦେବାପାଇଁ ଡାକଦେଲା। ହଳ ମହାଜନ ମଦନକୁ ବିକିବାପାଇଁ ଜବାବ କରିସାରିଥିଲା। ଏସବୁ ଦେଖି ମଦନର ମନ ଖଟାହୋଇଗଲା। ଏଣେ ଏଭଳି ହଳଟିଏ ହାତରୁ ଖସିଗଲେ ମିଳିବା ମୁସ୍କିଲ୍। ହଳ ନହେଲେ ଚାଷକାମ ହୋଇପାରିବନାହିଁ। ହଳ ମହାଜନ ତାକୁ ବିକିବାପାଇଁ ଠିକ୍ କରିସାରିଥିଲା। ଅଧିକା ଟଙ୍କା ମିଳୁଛି; ସେ ଅବା କାହିଁକି ଛାଡ଼ିବ? ଅଧିକା କିଛି ଟଙ୍କା ମିଳିବ ବୋଲି ତ ସେ ହାଟକୁ ଆଣିଛି ବିକିବାପାଇଁ।

ରତନା ସବୁ ଦେଖି ବୁଝି ମଦନ କାନରେ ଚୁପ୍‌ଚୁପ୍ କରି କହିଲା— ''ବଢ଼ିଆ ହଳଟି, କାମିକା ହଳ। ଯା'କୁ ଛାଡ଼ିଲେ ଏଭଳି ହଳ ଆଉ ମିଳିବନାହିଁ। ଟଙ୍କାକୁ ତୁ ଡରନା, ଆମେ ଆଉ ଅଧିକା ଶହେଟଙ୍କା ଦେଇଦେଲେ ଏ ହଳ ଆମ ହାତକୁ ଚାଲିଆସିବ। ଆଉ କିଏ ସାହସ କରି ଏତେ ଟଙ୍କା ଦେଇ ଆମକୁ ବଢ଼ିପାରିବେ ନାହିଁ।''

ମଦନ ଟିକିଏ ଶଙ୍କିଯାଇ କହିଲା— ''ମୋ' ପାଖରେ ଏତେ ଟଙ୍କା ନାହିଁ।''

ରତନା ଟିକିଏ ମାମଲତକାର ଭଳି କଥା କହିଲା, ଆମେ ଯେତେବେଳେ ତିନିହଜାର ଟଙ୍କା ଦେଇପାରିବା, ଆଉ କ'ଣ ଦୁଇଶହ ଟଙ୍କା ଦେଇପାରିବା ନାହିଁ? ହଳ ମାଲିକକୁ କହିବା, ଦୁଇ-ଚାରି ଦିନ ପରେ ଆସି ଆମ ଗାଁରୁ ଟଙ୍କା ନେଇଯିବ। ସେ କ'ଣ ଆମ କଥାରୁ ଟଳିଯିବ?''

ମଦନ କହିଲା— ଘରେ ମୋ ପାଖରେ ଟଙ୍କା କିଛି ବୋଇଲେ କିଛି ନାହିଁ। ଏତକ କରଜ କରି ଆଣିଥିଲି, ଆଉ କରଜ କଲେ କିଏ ଦେବ? ଟଙ୍କା ନଶୁଝିଲେ ଆଉ ଟଙ୍କା କରଜ ମିଳିବ ନାହିଁ।

—ଆରେ ତୁ ଓଲାଟାଏ। ଯାହାଠୁ କରଜ ଆଣିଛୁ ଆଉ ଦୁଇ-ତିନିଶହ

ଟଙ୍କା ସେ ତୋତେ କ'ଣ ଦେବନାହିଁ? କ'ଣ ମାହାଳିଆ ଦେଉଛି କି? ସୁଧ ତ ଫେର୍ ନେବ। ଏଭଳି ବଢ଼ିଆ ହଳଟିଏ ହାତରୁ ଖସିଗଲେ ଆଉ ଏ ବର୍ଷ ତୁ ଚାଷ କରିବୁ କ'ଣ? ପଛେ ପସ୍ତାଇବୁ। ମୋତେ ଆଉ କହିବୁନାହିଁ। ସୁଯୋଗ ଥରେ ଆସେ। ସୁଯୋଗ ଥରେ ଫିଟିଗଲେ ଆଉ ମିଳିବନାହିଁ ବୁଝିଲୁ?''

ସତକୁସତ ଏଇନେ ହଳ ହାତଛଡ଼ା ହୋଇଗଲେ ଆଉ ମିଳିବନାହିଁ। ଅଗତ୍ୟା ମଦନ, ରତନା କଥାରେ ରାଜିହେଲା। ତିନିହଜାର ଟଙ୍କା ଗଣିଦେଇ ଅବଶିଷ୍ଟ ଟଙ୍କା ତିନିଦିନ ପରେ ଗାଁକୁ ଆସି ନେଇଯିବାପାଇଁ ଲେଖିଦେଲା। ଲେଖାପଢ଼ା ସରିଲାପରେ ହଳ ଧରି ସେ ଘରକୁ ଲେଉଟିଆସିଲା। ତା' ପୂର୍ବରୁ ମାମୁ ଓ ଅକ୍ରୂରଙ୍କ ସହ ମଧ୍ୟ ଭେଟହେଲା। ଅନେକ କଥାବାର୍ତ୍ତା ଭିତରେ କିଆ ବାହାଘର କଥା ମଧ୍ୟ ପଡ଼ିଗଲା। କଥା ପଡୁ ପଡୁ ମଧ୍ୟ ପକ୍କାହୋଇଗଲା। କେତେ ଚଞ୍ଚଳ କେତେ କଥା ଘଟିଯାଉଛି। ଯାହା ଭାବିନଥିବ, ତାହା ମଧ୍ୟ ମଣିଷର ଅଜାଣତରେ ଘଟିଯାଏ; ସତେ ଯେପରି ମଣିଷ ନିଜ ଆୟତ୍ତରେ ନାହିଁ। କେଉଁ ଏକ ଅଦୃଶ୍ୟ ଶକ୍ତିବଳରେ ଘଟଣାମାନ ଘଟିଯାଉଛି।

ଏ ଭିତରେ ଦୁଇଦିନ ଅତିବାହିତ ହୋଇଗଲାଣି। ଆସନ୍ତା କାଲି ହଳ ମାଲିକ ଆସି ପହଞ୍ଚିବ। ତାର ପୂରାଟଙ୍କା ନ ଦେଲେ ସେ ହଳ ଅଡ଼େଇ ନେଇଯିବ। ଘରେ ବନ୍ଧାହୋଇଥିବା ହଳକୁ ଟଙ୍କା ଶୁଝିନପାରିବା ଆଳରେ ଅଡ଼େଇନେଲେ ତାର ଆଉ ମହତ ରହିବ କେଉଁଠି? ମଣିଷର ଟେକ, ମହତ ଗଲେ ସବୁ ଗଲା।

ପାଖରେ ରେବତୀ ବସି ସବୁ ଶୁଣୁଥିଲା। ରେବତୀକୁ ସେ ବିକଳ ନୟନରେ ଅନାଇରହିଲା। ଏବେ ଆଉ ଏତେ ଟଙ୍କା ଆସିବ କେଉଁଠୁ? ଯାହା ଥିଲା ସବୁ ଖର୍ଚ୍ଚ ହୋଇଯାଇଛି; ହାତରେ ଆଉ ପଇସାଟିଏ ବି ନାହିଁ।

ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ବିଚାର ଆଲୋଚନା ଚାଲିଲା। ମହାଜନ ଦ୍ୱାରକୁ ଗଲେ, ବନ୍ଧକ ନଦେଲେ ସେ ଆଉ ଟଙ୍କାଟିଏ ମଧ୍ୟ ଦେବନାହିଁ। କ'ଣ ସେ କରିବ ତାକୁ କିଛି ଅକଲ ଜୁଟିଲାନାହିଁ। ହତାଶ ହୋଇ ବସିରହିଲା।

ସ୍ୱାମୀ ଏମିତି ମୁହଁ ଶୁଖାଇ ବସିରହିବା ଦେଖି ରେବତୀ ପାଖକୁ ଆସି ଥରେ ମଦନ ମୁହଁକୁ ଚାହିଁ କହିଲା– କ'ଣ ଏମିତି ତୁନିହୋଇ ବସିପଡ଼ିଲେ ଟଙ୍କା ଆପେ ଆପେ ଚାଲିଆସିବ? ସେତକ ପାଇବାପାଇଁ ଯୋଗାଡ଼ କରିବାକୁ ପଡ଼ିବ। ଘରେ ତ ବିହନ ନାହିଁ। ବିହନ କିଣିବାପାଇଁ ତ ଟଙ୍କା ଦରକାର। ତା' ସାଙ୍ଗକୁ ସାର ଦରକାର। ଏତକ ଯୋଗାଡ଼ କରିପାରିଲେ ଯାଇ ଏ ବର୍ଷ ଚାଷ ହୋଇପାରିବ।

ମଦନ ଏ କଥା ଶୁଣୁଶୁଣୁ ତା' ମୁଣ୍ଡ ଘୁରିଗଲା। ହଁ ତ, ବିହନ ନ କିଣିଲେ ସେ କ'ଣ ଚାଷ କରିବ? ସରକାରୀ ବିହନ ଆସୁଆସୁ ପାଗ ଫିଟିଯିବ। ଲୋକଙ୍କଠୁ ଯୋଗାଡ଼ କରି ପ୍ରଥମେ ତାକୁ ବିହନ ସଂଗ୍ରହ କରିବାକୁ ପଡ଼ିବ।

ଏଣେ ହଳ ମହାଜନକୁ ଟଙ୍କା ଶୁଝିବାକୁ ପଡ଼ିବ। ହାତରେ ପଇସାଟିଏ ବି ନାହିଁ। ସେ କେତେ ଅସୁବିଧାରେ ପଡ଼ିଯାଇଛି। ଚାଷ କରିବା କେତେ କଠିଣ କାମ। ଛୋଟ ଚାଷୀକୁ ଏମିତି ଅଭାବ ଗୋଡ଼ାଇରହିଥାଏ। ହାତରେ ଟଙ୍କା ନଥିଲେ କେଉଁ କାମ କରିହେବନାହିଁ। ହଳ, ବିହନ, ସାର, ମୂଲିଆ ମଜୁରି ପାଇଁ ଟଙ୍କା ଯୋଗାଡ଼ ନହେଲେ ସେ କିଛି କରିପାରିବନାହିଁ। ଆଗରୁ ଟଙ୍କା ଜମିରେ ଖଟାଇ ନ ପାରିଲେ ଚାଷ ଉଠିପାରିବନାହିଁ।

ଏମିତି ଭାବି ଭାବି ହତାଶ ହୋଇ ମଦନ ତାର ସ୍ତ୍ରୀର ମୁହଁକୁ ଅନାଇ ରହିଲା। ରେବତୀ ମଦନ ପିଠିରେ ହାତ ବୁଲାଇଆଣି କହିଲା– ‘‘ଏମିତି ମୁହଁମାରି ବସିରହିଲ କ’ଣ ? ହେଇଟି, ମୋ କାନଫୁଲ ନେଇ ମହାଜନକୁ ଦେଇ କିଛି ଟଙ୍କା ଋଣ ଆଣି ସବୁ କାମ ତୁଟାଇଦିଅ।’’ –ଏତକ କହି କାନଫୁଲହଳକ କାନରୁ କାଢ଼ି ମଦନ ହାତକୁ ବଢ଼ାଇଦେଲା।

–‘‘ଏ, ତୁ କ’ଣ କରୁଛୁ ?’’ ମଦନ ବିସ୍ମିତ ହୋଇ ତାର ସ୍ତ୍ରୀକୁ କହିଲା, ‘‘ତୋର ସବୁ ଗହଣା କାଢ଼ିନେଇ ବନ୍ଧାପକାଇଲି, ଏତକ ଥିଲା; ତାକୁ ବି କାଢ଼ିପକାଇଲୁ ? ମୁଁ ତାକୁ ବନ୍ଧାପକାଇବା ପାଇଁ ନେବିନାହିଁ।’’ –ଏହା କହି ମୁହଁ ଫଣଫଣ କରି ରେବତୀ ହାତକୁ ସେ ସୁନାଫୁଲ ବଢ଼ାଇଦେଲା।

ମଦନ ଗୋଟିଏ ଗଭୀର ଦୀର୍ଘଶ୍ୱାସ ପକାଇଲା। ତା’ର ଏହି ଦୀର୍ଘଶ୍ୱାସରେ କେତେ ଯେ ବେଦନା ଭରିରହିଥିଲା ! ସତେ ଯେପରି ଛୋଟ ଛୁଆଟିଏ ଭଳି କଇଁକଇଁ ହୋଇ କାନ୍ଦିପକାଇବ; ଅଥଚ ସେ କାନ୍ଦିପାରିଲାନାହିଁ। ମନରେ ଅସହ୍ୟ ଯନ୍ତ୍ରଣା ଅନୁଭବକଲା। ସେ କେବଳ ରେବତୀ ମୁହଁକୁ ଅନାଇରହିଲା। ଏଇ ତାର ସ୍ତ୍ରୀ ... ତାର ସୁଖଦୁଃଖର ସାଥୀ। ଘରର ଭବିଷ୍ୟତ ପାଇଁ ସବୁକିଛି ଦେଇଛି; କୌଣସି ଆଶା ରଖିନାହିଁ। ଦେବାରେହିଁ ତା’ ମନରେ ଆତ୍ମସନ୍ତୋଷ। ପାଇବାପାଇଁ ମନରେ ନାହିଁ କୌଣସି ଲାଳସା।

ରେବତୀ ମୁହଁରେ ହସ ଚହଟାଇ ମଦନ ପାଖକୁ ଲାଗିଆସି ତା’ ମୁହଁକୁ ଅନାଇ କହିଲା– ଏମିତି କ’ଣ ଅବୁଝା ହେଲାଭଳି ହେଉଛ। ସତେ ଯେମିତି ତୁମକୁ କିଏ ଟଙ୍କା ଗଣିଦେବ ! ସୁନା ବନ୍ଧା ନଦେଲେ ଟଙ୍କା କିଏ ଦେବ ? କାହିଁକି ଅବା ଦେବ ? ଏତକ ନେଇ ଟଙ୍କା ଋଣ କରି ଆଣ। କେତେ ଦିନ କି– ଛଅମାସ ବିତିଗଲେ ଧାନ ଅମଳ ହେଲେ ବିକି ସୁନାତକ ମୁକୁଳାଇ ଆଣିବ ନାହିଁ କି ? ହେଇଟି, କହିଦେଉଛି, ଧାନ ଅମଳ ହେଲେ ଆଗ ମୋ ସୁନାତକ ମୁକୁଳାଇ ଆଣିବ। ହଁ, ମୁଁ ସେତେବେଳେ ଆଉ କେଉଁକଥା ଶୁଣିବିନାହିଁ। ମୋ କଥା ମନେରହିଲାଟି ? –ରେବତୀ ଏତକ କହି ମଦନ ହାତକୁ ସୁନା ବଢ଼ାଇଦେଲା।

ପ୍ରଥମେ ମଦନ କାନଫୁଲ ନେବାପାଇଁ ମଙ୍ଗୁନଥିଲା। ସେ ଭଲଭାବରେ

ଜାଣେ, ଏଇତକ ତାର ଶେଷ ସମ୍ବଳ। ସବୁ ଗୋଟିଗୋଟି କରି ବନ୍ଧାପଡ଼ିଗଲାଣି। ସେତକ ମଧ୍ୟ ସେ କାନରୁ ଖୋଲି ତା'ରି ହାତରେ ଆଣି ଦେଇଦେଉଛି। ତା' ମନରେ ଭୀଷଣ ଆଘାତ ଲାଗିଲା। ଏତେବର୍ଷ ଘରସଂସାର କଲା ଭିତରେ କେବେ ତାକୁ ଖୁସିରେ ସୁନା ଚାରିଅଣାରୁ ମଧ୍ୟ କିଣିଦେଇପାରିଲାନାହିଁ। ଅଥଚ୍ ତାର ମା'ଘରୁ ଆଣିଥିବା ସୁନାତକ ଗୋଟି ଗୋଟି ସେ ବନ୍ଧାପକାଇବାରେ ଲାଗିଛି। ସେ ସତେ କେଡ଼େ ନିଷ୍ଠୁର। ସେ ଅନୁତପ୍ତ ହୃଦୟରେ ଗୁମ୍‌ହୋଇ ଛିଡ଼ାହୋଇ ରହିଲା। ତାର ଅନ୍ତରାତ୍ମା କୋରିହେଲା ଭଳି ତାକୁ ମନେହେଲା।

—''ଏତେ କ'ଣ ଭାବିହେଉଛ? ଗଲ, ତୁମେ ଆଉ ଡେରିକରନା। ଯେତେବେଳର କାମ ସେତେବେଳେ ସାରିଦେବା ହେଉଛି ମଣିଷପଣିଆ।''

ରେବତୀର କଥାରେ ମଦନ ମୁହଁରେ ଦମ୍ଭ ଏବଂ ବିଶ୍ୱାସ ଫେରିଆସିଲା। ସତେ ସେ ଏତକ ନକଲେ ହଳ ମହାଜନ ଆସି ତା'ରି ଦ୍ୱାରମୁହଁରେ ବସିପଡ଼ିବ; ଟଙ୍କା ନ ପାଇଲେ ଏଠୁ ଉଠିବନାହିଁ। ଗାଁଲୋକ ଦେଖିଲେ ତାକୁ କ'ଣ କହିବେ? ଏ ଲଜ୍ଜାଠୁଁ ସେ ଲଜ୍ଜାଟି ବଳିପଡ଼ିବ ନାହିଁ କି? —ଏହା ଭାବି ମଦନ ସୁନାତକ ନେଇ ମହାଜନ ଘରକୁ ବନ୍ଧକ ପକାଇବାପାଇଁ ଚାଲିଗଲା।

ରେବତୀ ଗୋଟିଏ ଆଶ୍ୱସ୍ତିର ନିଶ୍ୱାସ ମାରିଲା। ମୁହଁରେ ଲାଖିରହିଛି ଏକ କ୍ଷୀଣ ହସର ଝଲକ। କାନ୍ଥରେ ଲଟକିଥିବା ଝିଟିପିଟିଟାଏ ଚିଟ୍ ଚିଟ୍ ଶବ୍ଦକରିଉଠିଲା। ରେବତୀ ଝିଟିପିଟିଟାକୁ ସନ୍ତୁଷ୍ଟ ନୟନରେ ଅନାଇଲା। ସତକୁସତ ତା' କାମଟା ତା' କଥାଟା ସତ ବୋଲି ମନେହେଲା। ନହେଲେ ଝିଟିପିଟି ମଧ୍ୟ ସତ୍ ସତ୍ ବୋଲି ସୂଚେଇନଥାନ୍ତା। ମନ ତାର ଆଗାମୀ ଭବିଷ୍ୟତର ଉଜ୍ଜ୍ୱଳ ଆଶାରେ ଉଲ୍ଲସିତ ହୋଇଉଠିଲା।

## (୧୬)

ବିସ୍ତୃତ ପାଚିଲା ଧାନକ୍ଷେତ। ତା' ପାଖରେ ସୋରିଷ-କ୍ଷେତ। ଛୋଟ ଧାନ କାଟିସାରିଲା ପରେ ସେହି ଜମିରେ ସୋରିଷ ବୁଣି ଚାଷୀ ସୋରିଷ ଫଳାଇଛି। ରାଶି ରାଶି ସୋରିଷ ଫୁଲ। ଫୁଲର ମହକରେ ସାରା ଗାଁଟି ମହକିଉଠୁଛି। ମହୁମାଛି ଗୁଣୁଗୁଣୁ ଶବ୍ଦ କରି ଉଡ଼ି ଉଡ଼ି ମହୁ ସଂଗ୍ରହ କରିଚାଲିଛି। ସୁନାରଙ୍ଗର ଧାନକ୍ଷେତ—ସୂର୍ଯ୍ୟକିରଣ ପଡ଼ି ଝଲସିଉଠୁଛି। ଆଖି ଲାଖିଯାଉଛି। ପାଚିଲା ଧାନକ୍ଷେତର ମନମତାଣିଆ ବାସନା ନାକରେ ବାଜି ମନକୁ ପୁଲକିତ କରିଦେଉଥାଏ।

ମାର୍ଗଶିର ମାସ ସରି ପୌଷ ମାସ ଆସିଛି। ଚାଷୀ ବ୍ୟସ୍ତ ହୋଇପଡ଼ିଛି

ଧାନ ଅମଳ କରିବାପାଇଁ। କେଉଁଠି ଖଳାରେ ଧାନ ଅମଳ ଚାଲିଛି। କେତେ ଖଳାରେ ଧାନ ମଡ଼ାଣି ପରେ ଧାନକୁ ପବନରେ ଉଡ଼ାଇ ଅଗାଡ଼ି ବାଛି ତାକୁ ଶୁଖାଇ ପୁଡ଼ା ବାନ୍ଧିବାରେ ଲାଗିଥାନ୍ତି। ଏମିତି କାର୍ଯ୍ୟବ୍ୟସ୍ତତା ଭିତରେ ଦିନ ପରେ ଦିନ ଗଡ଼ିଚାଲିଥାଏ। କନକନିଆ ଶୀତରେ ମଧ ଚାଷୀ ତାର ବର୍ଷକର ପରିଶ୍ରମ ସଂଗ୍ରହ କରିବାରେ ଲାଗିପଡ଼ିଥାଏ। ଏତେ ଖଟଣିରେ ମଧ ସେ ଶ୍ରାନ୍ତ-କ୍ଳାନ୍ତ ହୋଇପଡୁନଥାଏ।

ଚାରିପାଳି ମାଣବସା ଗୁରୁବାର। ଆନନ୍ଦରେ ମନ ଭରିଯାଉଥାଏ। ପିଠା-ପଣାରେ ଘରେ ଘରେ ମହକ ଛୁଟିଥାଏ।

ଏତେ ଖଟଣି ପରେ ମନ ଫୁର୍ତ୍ତି କରିବାପାଇଁ ଗାଁରେ ରାମଲୀଳା ନାଟ ହେବ। ଏମିତି କେତେ ରାତି ନାଟତାମସାରେ ବିତିଯାଏ। ଖୁବ୍ ଜାକଜମକ, ଧୁମ୍‌ଧାମ୍‌ରେ ନାଟ ହେବ। ଲୋକଙ୍କ ଗହଳିରେ ଗାଁଦାଣ୍ଡ କମ୍ପିଉଠିବ। ଗାଁ ଟୋକାଙ୍କ ଆନନ୍ଦ କହିଲେ ନସରେ। ସେହିମାନଙ୍କ ଭିତରୁ ରାମ, ଲକ୍ଷ୍ମଣ, ସୀତା ଅଭିନୟ କରି ଦର୍ଶକଙ୍କ ମନୋମୁଗ୍ଧ କରୁଥାନ୍ତି। ମୁହଁରେ ରଙ୍ଗ ବୋଳି, ଗାଁ ଦାଣ୍ଡରେ ରାତିରେ ନାଚିବା କମ୍ ଗୌରବର କଥା ନୁହେଁ! କିଆ, ମାଳତୀ, ମୀନା ସଭିଏଁ ଗାଁ ମାଇପିଙ୍କ ଗହଣରେ ଆସି ଏକାଠି ବସି ରାମଲୀଳା ଦେଖୁଥାନ୍ତି। ଏତେଦିନ ପରେ ଗାଁରେ ନାଟ ହେଉଛି, ସଭିଙ୍କ ମନରେ ଆଗ୍ରହ ଖେଳିଯାଇଛି। କନକନିଆ ଶୀତରେ ମଧ ରାତି ପାହିଯିବ ନାଟଦେଖାରେ। ଶୀତରୁ ରକ୍ଷାପାଇବା ପାଇଁ ଦେହରେ ସଭିଏଁ ଚାଦର ଖଣ୍ଡିଏ ଘୋଡ଼ାଇହୋଇ ବସିଛନ୍ତି। ତଳେ ପାଳ ବିଛାଯାଇଛି। ସେଥିରେ ସଭିଏଁ ଲଗାଲଗି ହୋଇ ବସିପଡ଼ିଛନ୍ତି। କିଆ ମଧ ଚାଦର ଘୋଡ଼ାଇହୋଇ ବସିଛି ନାଟ ଦେଖିବାପାଇଁ।

ରାବଣର ସୀତାହରଣ ପରେ ରାମର ବିଳାପ ଦର୍ଶକମାନଙ୍କ ମନକୁ ଦୋହଲାଇଦେଲା। ରାମ ଭୂମିକାରେ ଅଭିନୟ କରୁଥାଏ ନବୀନ। ତାର ମଧୁର କରୁଣ କଣ୍ଠସ୍ୱର ସଭିଏଁ ତନ୍ମୟ ହୋଇ ଶୁଣୁଥାନ୍ତି। ସୀତା ବିହୁନେ ରାମ ଅଧୀର ହୋଇପଡ଼ିଥାନ୍ତି। ଭାଇ ଲକ୍ଷ୍ମଣ ତାଙ୍କୁ ସାନ୍ତ୍ୱନା ଦେଉଥାନ୍ତି। ରାମର ବିଳାପ ଶୁଣି କିଆ ମନରେ କୋହ ଜାତହେଲା। ଅଜାଣତରେ ତା'ରି ଆଖିରୁ ଲୁହ ଗଡ଼ିପଡ଼ିଲା।

ଅକସ୍ମାତ୍ ନବୀନର ଆଖି ମାଇପି ଗହଣରେ ବସିଥିବା କିଆ ଉପରେ ପଡ଼ିଗଲା। କ୍ଷଣିକ ମଧରେ ଚାରିଚକ୍ଷୁର ମିଳନ ହେଲା। ଅଶ୍ରୁ ଛଳଛଳ ଆଖିରେ ଆଖି ମିଳିଗଲା। ନବୀନର ମନ କ୍ଷଣିକପାଇଁ ଭାବବିହ୍ୱଳ ହୋଇପଡ଼ିଲା। ଲକ୍ଷ୍ମଣର 'ଭାଇ' ଡାକରେ ସେ ସଚେତନ ହୋଇଉଠିଲା। ପୁଣି ସେ ଦ୍ୱିଗୁଣ ଉତ୍ସାହରେ ନାଚି ତାର ଅଭିନୟ କରିଚାଲିଲା। ତାର ନାଚିବା ଭଙ୍ଗି ଏବଂ ମଧୁର କଣ୍ଠସ୍ୱର ଦର୍ଶକ ମନକୁ ପୁଲକିତ କରିଦେଲା। ଘନ ଘନ କରତାଳିରେ ସ୍ଥାନଟି ମୁଖରିତ

ହୋଇଉଠିଲା । ଛୁଟିଚାଲିଲା ଦର୍ଶକମାନଙ୍କ ମଧ୍ୟରୁ ପୁରସ୍କାରର ଘୋଷଣା । ସତେ ଯେପରି ପୁରସ୍କାର ଦେବାପାଇଁ ସେମାନଙ୍କ ଭିତରେ ଲାଗିଗଲା ପ୍ରତିଯୋଗିତା । କିଏ ଟଙ୍କାଟିଏ, କିଏ ଦୁଇଟଙ୍କା, କିଏ ପାଞ୍ଚଟଙ୍କା, ଏଭଳି ପୁରସ୍କାର ଘୋଷଣା ହୋଇଚାଲିଥାଏ । ନବୀନକୁ ଏତେ ଟଙ୍କା ପୁରସ୍କାର ମିଳୁଥିବା ଦେଖି କିଆ ମନ ଆନନ୍ଦରେ କୁରୁଳିଉଠୁଥାଏ । ମାତ୍ର କାଳେ କିଏ କଅଣ ଭାବିବ ବୋଲି ମନର ଆଗ୍ରହକୁ ମନ ଭିତରେ ଚାପିରଖି ସତୃଷ୍ଣ ନୟନରେ ନବୀନକୁ ଅନାଇରହିଥାଏ ।

ରାତି ପାହିବାକୁ ଅଳ୍ପ ସମୟ ବାକିଥାଏ । ପୂର୍ବାକାଶରେ ସିନ୍ଦୂରା ଫାଟିଆସୁଥାଏ । ରାମଲୀଳା ନାଟ ମଧ୍ୟ ସରି ସରି ଆସୁଥାଏ । ଗାଁଲୋକେ ଧୀରେ ଧୀରେ ଘରକୁ ଲେଉଟି ଆସୁଥାନ୍ତି । ସକାଳ ପାହିଲେ ସଭିଏଁ ନିଜ ନିଜ କାମରେ ଲାଗିଯିବେ ।

କିଆକୁ ଆଉ ଛେଳି ନେଇ ଜଙ୍ଗଲକୁ ଯିବାକୁ ପଡୁନାହିଁ । ତା' ଜାଗାରେ ତାର ଛୋଟ ଭଉଣୀ ସେବତୀ ଛେଳି ଚରାଇବାକୁ ଯାଉଛି । ସେବତୀ ଆଗରୁ ସମୟେ ସମୟେ କିଆ ସହିତ ବି ଯାଉଥିଲା, ତେଣୁ ତାକୁ ନୂଆକରି ଯିବାକୁ ପଡୁନାହିଁ ।

ଜଙ୍ଗଲକୁ ଯିବାକୁ ତାର ମଧ୍ୟ ଆନନ୍ଦ । ବଣ ପାହାଡ଼ର ମନୋମୁଗ୍ଧକର ଦୃଶ୍ୟ ତା' ମନରେ ଆନନ୍ଦ ସୃଷ୍ଟିକରୁଥାଏ । ସେବତୀ ଛେଳି ଅଡ଼େଇ ଅଡ଼େଇ ଦୌଡ଼ି ଦୌଡ଼ି କ୍ଷଣକ ଭିତରେ ଗାଁଦାଣ୍ଡରୁ ବଣକୁ ଚାଲିଗଲା । ଛେଳିର ଦୌଡ଼ା ସହ ତାର ମଧ୍ୟ ଦୌଡ଼ା ଚାଲିଥାଏ । କେତେବେଳେ କେଉଁ ଛେଳି ରାସ୍ତାରୁ ଅନ୍ୟ ଆଡ଼କୁ ଚାଲିଗଲେ, ସେ ପାଟିକରି ହୁରୁଡ଼େଇ ନେଉଥାଏ । ବାଡ଼ି ହଲାଇ ଛେଳିକୁ ଆକଟ କରୁଥାଏ ।

ନବୀନ ଆଗରୁ ତାର ଗାଈଗୋଠ ନେଇ ବଣକୁ ଆସିଯାଇଥାଏ । ଆଜି କିଆ ଜାଗାରେ ତାର ଛୋଟ ଭଉଣୀ ସେବତୀକୁ ଦେଖି ନବୀନ ପ୍ରଥମେ ବିଶ୍ୱାସ କରିପାରିଲାନାହିଁ । ଯେବେ ସେବତୀ ଆସେ, କିଆ ସହିତ ଆସେ । ଏକୁଟିଆ ସେ କେବେ ଆସିନଥିଲା । ଆଜି କିନ୍ତୁ ସେ ଏକୁଟିଆ ଆସିଛି । ନବୀନ ତଥାପି କେଜାଣି କାହିଁକି ନିଜକୁ ବିଶ୍ୱାସ କରିପାରିଲା ନାହିଁ । ସେ ପ୍ରଥମେ ସନ୍ଦେହରେ ଚାରିଆଡ଼କୁ ଅନାଇନେଲା । କାହିଁ କେଉଁଠି ତ କିଆ ଆସିଲାଭଳି ଜଣାପଡୁନାହିଁ ? କିଆ ଆସି କେଉଁଠି ଲୁଚିଯାଇନି ତ?

ଖୋଜିବା ଚାହାଣିରେ ଆଖି ଥରେ ଚାରିଆଡ଼କୁ ବୁଲାଇ ଆଣିଲା । ନା . . . କାହିଁ କେଉଁଠି ତ ଦେଖାଯାଉନାହିଁ! ସେ ଆଜି ଆସିନାହିଁ । କ'ଣ ହେଲା ? ତାର ଦେହପା ଖରାପ ହେଲା କି? ରାତି ଅନିଦ୍ରା ହୋଇଥିବା ଯୋଗୁଁ ସେ କ'ଣ ଶୋଇପଡ଼ିଛି ? ସେ ସେବତୀ ପାଖକୁ ଚାଲିଆସି ପଚାରିଲା– ''ଆଜି ତୁ କେମିତି ଏକୁଟିଆ ଆସିଲୁ ? କିଆ ଆସିଲାନାହିଁ ଯେ ?''

ସେବତୀ ତାକୁ ଥରେ ଦେଖିନେଇ କହିଲା– ''ସେ ଆଉ ଆସିବନାହିଁ ।

ମୁଁ ଏଥର ଛେଳିନେଇ ସବୁଦିନ ଆସିବି।''

—''କ'ଣ ହେଲା, ସେ କାହିଁକି ଆସିବନାହିଁ? ତାର ଦେହ କ'ଣ ଖରାପ ଅଛି କି?'' ନବୀନ ବ୍ୟଗ୍ର ହୋଇ ତା'ଠୁ ଉତ୍ତର ଶୁଣିବ ବୋଲି ତାର ଛୋଟ କଅଁଳ ମୁହଁକୁ ଚାହିଁରହିଲା।

—''ମୁଁ କିଛି ଜାଣିନାହିଁ। ମା' କହିଲା ମୁଁ ଏଥର ସବୁଦିନ ଛେଳି ନେଇ ଯିବି।'' ଏତକ କହି ଦୌଡ଼ି ଦୌଡ଼ି ହାତରେ ଛୋଟ ବାଡ଼ିଟିଏ ଧରି ହଲାଇ ହଲାଇ ସେ ତାର ଛେଳି ଅଡ଼େଇବାରେ ଲାଗିଗଲା।

ନବୀନ କିଛିକ୍ଷଣ ନୀରବ ନିଶ୍ଚଳ ହୋଇ ସେବତୀର ଛେଳି ଅଡ଼େଇ ଦୌଡ଼ାଦୌଡ଼ିକୁ ଅନାଇରହିଲା। ତା' ଆଖି ଆଗରେ କିଆର ଛେଳି ଅଡ଼େବାର ଦୃଶ୍ୟ ଭାସିଆସିଲା। ଚଳଚଞ୍ଚଳା କିଆ; ପବନରେ ତାର କଳାଭଅଁର ବାଳ ଫରଫର ହୋଇ ଉଡ଼ି ପିଠିରେ ପଡୁଥାଏ। ଲୁଗାପଣତ ଫରଫର ହୋଇଉଠି ତାର ଅର୍ଦ୍ଧମୁକୁଳା ଛାତିର ନୈସର୍ଗିକ ରୂପ ଚହଟାଇଦେଉଥାଏ। ସାଙ୍ଗସାଥୀ ମେଳରେ ହାତ ଧରାଧରି ହୋଇ ଗାଉଁଲି ଗୀତର ମଧୁର ଝଙ୍କାରରେ ବନଭୂମିକୁ ଚହଲାଇଦେଉଥାଏ। ସେହି କିଆ ଆଉ ବଣକୁ ଆସିବନାହିଁ ବୋଲି ଜାଣିବାପରଠୁ ମନ ତାର ଉଦାସ ହୋଇଯାଇଥାଏ। ସେ ଭାବିପାରିଲା ନାହିଁ, ହଠାତ୍ କିଆ ବଣକୁ ଆସିବା ବନ୍ଦ ହେଲା କାହିଁକି? ତା' ସ୍ଥାନରେ ତା' କାମ ତାର ଛୋଟ ଭଉଣୀ ଉପରେ ପଡ଼ିଲା କାହିଁକି? —ଏମିତି କେତେ ଯେ ପ୍ରଶ୍ନ ତା' ମନ ଭିତରେ ଖେଳିଯାଉଥାଏ।

ମାଳତୀ ଦୂରରେ ଛିଡ଼ାହୋଇ ନବୀନକୁ ଅନାଇରହିଥାଏ। ଆଜି ସେ ମନେମନେ କେତେ ଖୁସି। ମୁହଁରେ ହସ ଚହଟିଯାଉଥାଏ। କିଆ ଆଉ ବଣକୁ ଆସିବନାହିଁ— ସେ ନବୀନ ସହ ବସି ଏଥର ହସଖୁସିରେ ସମୟ କଟାଇଦେବ। ନବୀନ ଏଥର କିଆକୁ ପାସୋରି ତାକୁ ଭଲପାଇବ। ସେ ନବୀନକୁ ମନ ଭିତରେ କେତେ ଭଲପାଉଛି। ସେ ଧୀରେ ଧୀରେ ନବୀନର ଅତି ପାଖକୁ ଚାଲିଆସି ପଚାରିଲା, ''କ'ଣ ଏମିତି ଅନାଇରହିଛୁ? କାହାକୁ ଖୋଜୁଛୁ କି? ମନ କ'ଣ ଖରାପ ଲାଗୁଛି କି?'' —ଏତକ ବଙ୍କେଇ ବଙ୍କେଇ କହି ଖିଲିଖିଲି କରି ହସିଉଠିଲା।

ନବୀନ ଟିକିଏ ଚମକିପଡ଼ି କହିଲା— ''କାହିଁ... ନାହିଁ ତ।''

—''ତୁ ନ କହିଲେ କ'ଣ ହେଲା, ତୋ' ମନ ତ କହିଦେଉଛି।'' —ଏହା କହି ମାଳତୀ ମୁରୁକି ମୁରୁକି ହସି ତାକୁ ଅନାଇରହିଲା। ନବୀନ ତାକୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇଲା। ତା'ର କଥା କହିବା ଢଙ୍ଗକୁ ସେ କେବେ ପସନ୍ଦକରେନାହିଁ। ପିଲାଦିନରୁ ହିଁ ସେ ତା'ଠୁ ଆଡ଼େଇ ଆଡ଼େଇ ହୋଇ ରହିଛି।

ମାଳତୀ ତାର ଏପରି ଢଙ୍ଗ ଦେଖି ମନେମନେ ତା' ଉପରେ ଖପ୍‌ପା ହୋଇ ରହିଥାଏ। ସେ କେବେ କିଆକୁ ଅନ୍ତରର ସହିତ ପସନ୍ଦ କରେନାହିଁ। ତା' ସହିତ ଏକାଠି ଖେଳେ, ବୁଲେ; ମାତ୍ର ମନେ ମନେ ତା'ପ୍ରତି ରାଗ ରଖିଥାଏ, ସୁଯୋଗ ପାଇଲେ ତାର ପ୍ରତିଶୋଧ ନେଉଥାଏ। ଏଇନେ ଯେଭଳି ଗାଁରେ ତାର ବଦନାମ ରଟାଇଦେଲା, ମନେ ମନେ ସେ ବଡ଼ ଖୁସ୍। କିଆ ଅବଶ୍ୟ ମାଳତୀଠୁଁ ଢେର୍ ସୁନ୍ଦର। ତା'ର ଚାଲିଚ଼ଳଣ ରୁଚ଼ିକର। କଥା ତାର ବଡ଼ ମଧୁର। ତାର ଶରୀରଗଢ଼ଣ ମଧ୍ୟ ଆକର୍ଷଣୀୟ। ଭସା-ମେଘପରି ଆଖିରେ ସ୍ୱପ୍ନିଳ ଚାହାଣି ଭରିରହିଥାଏ। ତାକୁ ଦେଖିଦେଲେ ମନ ଆପଣାଛାଏଁ ପୂରିଯାଏ। ସେଭଳି କୌଣସି ଗୁଣରେ ମାଳତୀ ତା' ସରି ହେବନାହିଁ। ତେଣୁ ସେ ତାକୁ ଈର୍ଷାକରେ।

ମାଳତୀ କିଆକୁ ଆଡ଼ଆଖିରେ ଦେଖିପାରେନାହିଁ। ନାରୀମାତ୍ରକେ ଈର୍ଷା-ପରାୟଣା – ସେଥିରୁ ଅବା ମାଳତୀ ବାଦ୍‌ଯାଆନ୍ତା କିପରି ? ସମୟ ଉଣ୍ଡି ପ୍ରତିଶୋଧ ନେଇଚାଲିଥାଏ। ନବୀନ କିଆ ସହିତ ହସଖୁସି ହେଲେ ସେ ଈର୍ଷାରେ ଜଳିଉଠେ। ମନର ରାଗ ମନରେ ରଖି ମାଳତୀ କହିଲା – ‘‘କିଆ ଆଉ ବଣକୁ ଆସିବନାହିଁ।’’

ନବୀନ ଆଶ୍ଚର୍ଯ୍ୟ ହୋଇ ତା' ମୁହଁକୁ ଅନାଇଲା। ଆଜି ସେ ନୂଆ କଥାଟିଏ ଶୁଣିବାକୁ ପାଇଲା। ମାଳତୀ ମୁହଁରେ ହସ ଖେଳାଇ ନବୀନକୁ ଚାହିଁ କହିଲା – ‘‘ତାର ବାହାଘର କଥା ପଡ଼ିଛି; ଏଇ ଆସନ୍ତା ଫାଲଗୁନ ମାସରେ ତାର ବାହାଘର ହୋଇଯିବ। ବରଦେଖା ଚାଲିଛି।’’

ନବୀନ ମାଳତୀଠୁଁ ଏ କଥା ଶୁଣି ଚମକିପଡ଼ିଲା। କାହିଁ, କିଆ ତ କେବେ ଏସବୁ କଥା ତାକୁ କହିନାହିଁ? ସେ ତା'ଠି ଏତେ କଥା ଲୁଚ଼ାଇ ରଖିଥିଲା ? ସେଥିପାଇଁ ଲାଜରେ ସେ ଆଉ ଆସୁନାହିଁ ନା କ'ଣ ? ବାହାଘର କଥା ଜାଣିଲାପରେ ସେ ଲାଜେଇଯାଇଛି। ସବୁ ଝିଅ ସମାନ। ଯେତେବେଳେ ସେମାନଙ୍କ ବାହାଘର କଥା ପଡ଼େ ସେମାନେ ଲାଜେଇଯାଆନ୍ତି। ମାତ୍ର ସେହି ଲାଜରେ ଥାଏ ଏକପ୍ରକାର ଆନନ୍ଦ। ମନରେ ଥାଏ ପୁଲକ। ସମଗ୍ର ଶରୀର ହୋଇଉଠେ ରୋମାଞ୍ଚିତ। ସେଥିପାଇଁ ବୋଧେ କିଆ ଲାଜରେ ଆଉ ବଣକୁ ଆସୁନାହିଁ।

ନବୀନ ଆଖିରେ କିଆର ହସ ହସ ମୁହଁଟିକକ ଭାସିଆସିଲା। ମନରେ କେତେ ଯେ କଳ୍ପନା ଖେଳିଗଲା। ନୂଆବୋହୂ ରୂପରେ କିଆର ଗୋରା ଲାବଣ୍ୟଭରା ମୁହଁଟିକୁ ଚାହିଁରହିବାକୁ ମନ ତାର ଛନଛନ ହେଲା। ତା' ଶରୀରରେ ଏକ ଅଜଣା ପୁଲକ ସୃଷ୍ଟିହେଲା। କିଆର ଆଖି ସହିତ ଆଖି ମିଳିଗଲେ ମନରେ ପୁଲକ ସୃଷ୍ଟିକରେ। ଅଧରରେ ଫୁଟିଉଠେ ମଧୁର ସ୍ପନ୍ଦନ। ତାର ଚୋରା ଚାହାଣି, ମଧୁର ହସ ମନରେ ଭରିଦିଏ କେତେ ଯେ ଭାବନା କେତେ ଯେ କଳ୍ପନା ! ତା' ମୁହଁର ଫୁଲଝରା ହସ, ସୁଲୁସୁଲୁ ପବନରେ ଉଡୁଥିବା ଚୂର୍ଣ୍ଣକୁନ୍ତଳ ନେଇ

ବଣ ଭିତରେ ଡେଇଁ ଡେଇଁ ବୁଲୁଥିବା କିଆ ସତେ ଯେପରି ମନେହୁଏ ପରୀଟିଏ ପରି। ଏତେ କଥା ଏ ଭିତରେ ଘଟିଗଲାଣି, ତଥାପି କିଆ ତା' ଆଗରେ କଥାଟାକୁ ଛପାଇରଖିଛି କାହିଁକି? ତା' ମନରେ ଆଉ କ'ଣ ଅଛି କି? ତା' ମନରେ ଏକ ଅଜଣା ଆଶଙ୍କା ଖେଳିଗଲା। ସତେ ସେ କେତେ କପଟୀ! ମୁହଁରେ ମିଠା କଥା କହି ପେଟରେ କେତେ କଥା ଲୁଚାଇ ରଖିଛି। ତା'ପ୍ରତି କେଜାଣି କାହିଁକି ନବୀନ ମନରେ ରାଗ ଚହଟି ଆସିଲା। ସେ ବିଶ୍ୱାସ କରିପାରିଲାନାହିଁ ଯେ, କିଆ ତାକୁ ଏସବୁ କେମିତି କହିଲାନାହିଁ? ସେ ଅବିଶ୍ୱାସୀ ଦୃଷ୍ଟିରେ ମାଳତୀକୁ ଚାହିଁଲା। ସତେ କ'ଣ ମାଳତୀ ତା' ମନ ବିଢ଼ିବାପାଇଁ ଏସବୁ ଡାହା ମିଛକଥା ଯୋଡ଼ି ତା' ଆଗରେ କହିଯାଉଛି? ସେ ତ ମିଛୋଇଟା, ଡବଡବୀଟା – ତାକୁ ସେ ରାଗରେ ଅନାଇରହିଲା।

ମାଳତୀ ତାକୁ ଆଉ ଚିଡ଼ାଇବାପାଇଁ ଏବଂ କିଆ ପ୍ରତି ତାର ଘୃଣାଭାବ ସୃଷ୍ଟି ପାଇଁ କହିଲା– ''ତା' କୁଳର କେଉଁ ଯୁବାକୁ ସେ ବାହା ନହୋଇ ଆଉ କ'ଣ କୋଉ ଅଜାତିଆକୁ ବାହାହୋଇଥାଆନ୍ତା? ତା' କୁଳ ଜାତିର ଲୋକେ ତାକୁ ସହଜରେ ଛାଡ଼ିଦେଇଥାନ୍ତେ?''

ଏ କଥା ଶୁଣି ନବୀନ ଆଶ୍ଚର୍ଯ୍ୟରେ ମାଳତୀର ମୁହଁକୁ ଅନାଇରହିଲା। ସତେ ଯେପରି ତାର ପାଦତଳୁ ମାଟି ଖସିଗଲା ଭଳି ଜଣାଗଲା। ତା'ର କଣ୍ଠନଳି ଶୁଷ୍କ ହୋଇଗଲାଭଳି ମନେହେଲା। ଛାତିର ସ୍ପନ୍ଦନ ବଢ଼ିଗଲା। ଏ ମରମ କଥା ଶୁଣି ସେ ଚମକିପଡ଼ିଲା। ସେ ଅଜାତିଆ– କିଆ ଜାତିର ଲୋକ ସେ ନୁହେଁ! ସତେ ତ– ସେ ତ କେବେ ଏତେକଥା ଚିନ୍ତାକରିନଥିଲା। ତା' ମନକୁ ଏ ଜାତିକଥା କେବେ ଆସିନଥିଲା। ଆଜି ସେ ଏସବୁ କ'ଣ ଶୁଣୁଛି?

ମାଳତୀଠୁଁ ଖବରଟି ଶୁଣିଲାପରେ ମୁହଁ ତାର କଳାପଡ଼ିଯାଇଥାଏ। ସେ ଭାବିଲା– ଏଇ ସହଜ ସରଳ କଥାଟିକକ ସେ ଆଗରୁ କେମିତି ଜାଣିପାରିଲା ନାହିଁ? ମନରେ ତାର ନାନା ପ୍ରଶ୍ନ ଖେଳିଯାଉଥାଏ। ସତେ ତ! ତାର ଫେର୍ କୁଟୁମ୍ବ ଜାତିଭାଇ ଅଛନ୍ତି– ତାକୁ କେମିତି ଅନ୍ୟ ଜାତିର ଲୋକ ସହିତ ବାହା କରାଇଦେବେ? ତା' ଜାତିଭାଇ ମଧ୍ୟ ତାକୁ ଧରିବସିବେ।

କିଛିବର୍ଷ ତଳର ଘଟଣା ତାର ମନେପଡ଼ିଗଲା। ତାର ଲେଖାଯୋଖା ଭାଇ ଚତୁର ଅନ୍ୟ ଏକ ଜାତିର ଝିଅକୁ ସଭିଙ୍କ ଅଜାଣତରେ ଘରକୁ ନେଇଆସିଲା। କୁଟୁମ୍ବ ଲୋକ ଧରିବସିଲେ; ଜାତିରୁ ତାକୁ ଅନ୍ତରକରିଦେଲେ। ନିଆଁପାଣି ମନାହୋଇଗଲା। ଶେଷରେ ସେ ଗାଁ ଛାଡ଼ି ପଳାଇଗଲା। କୁଆଡ଼େ ଯେ ଗଲା, ତାର ଆଉ କେହି ଖୋଜଖବର ନେଲେନାହିଁ। ଏବେ ତାର ବୁଢ଼ୀ ମା' କାନ୍ଦି କାନ୍ଦି ତାକୁ ଝୁରି ଝୁରି ମରିବାକୁ ବସିଛି।

ସେ କେବେ ଏତେକଥା ଭାବିପାରିନଥିଲା । ସେ ପୁରୁଷ; କିଆ ନାରୀ— ଏତିକି ମାତ୍ର ଜାଣିଥିଲା । ପୁରୁଷର ନାରୀ ପ୍ରତି ଆକର୍ଷଣ ସହଜାତ । ସେହି ଆକର୍ଷଣରେ ସେ ଆକର୍ଷିତ ହୋଇପଡ଼ିଥିଲା । ତା' ମନକୁ ପାପ ଛୁଇଁଲା । ତାର ମନେହେଲା, ସେ କିଆପ୍ରତି ଅନ୍ୟାୟ କରିଛି । କିଆ ଯେଉଁ ସମାଜର, ସେଥିରୁ ସେ ବାଦ୍‌ଯାଇପାରିବନାହିଁ । ତା'ର ସମାଜକୁ ଛାଡ଼ି ସେ ଅନ୍ୟତ୍ର ବାହାହୋଇ ପାରିବନାହିଁ ।

କିଆଭଳି ଏଡ଼େ ସୁନ୍ଦରୀ ଝିଅ ତାକୁ ଭଲପାଉଥିଲା— ସେତକ ତା' ପାଇଁ ଯଥେଷ୍ଟ ନୁହେଁ କି? ସମାଜ ଯଦି ତାକୁ ବାରଣକରେ, ତା' ସହିତ ବିବାହପାଇଁ ସମ୍ମତି ନଦିଏ, ସେ ଅବା କରିବ କଅଣ? ସେ ତାର ବାପ, ମା', ଭାଇଭଉଣୀ ବନ୍ଧୁଙ୍କୁ ଛାଡ଼ି ତାକୁ ବାହାହୋଇ ପାରିବନାହିଁ ।

ସମାଜରେ ଜାତିଭେଦ ଏବେ ବି ରହିଛି । ମଣିଷ ମନରୁ ସେହି ପୁରାତନ ଭାବ ଏବେ ବି ଯାଇନାହିଁ । ଜାତିଭେଦ ଏବେ ମଧ୍ୟ ସମାଜରେ ବରଗଛର ଓହଳ ଭଳି ଅନେକ ଗଭୀରକୁ ମାଡ଼ିଯାଇଛି । ସାମାଜିକ ଶକ୍ତି ଅଧିକ ଶକ୍ତିଶାଳୀ; ତାକୁ ଛିଣ୍ଡାଇବା ଏତେ ସହଜ ନୁହେଁ । ମାତ୍ର, ଏଥର ତାକୁ ସାବଧାନ ହେବାକୁ ପଡ଼ିବ । ସମାଜରେ ବଞ୍ଚିବାକୁ ହେଲେ ସମାଜର ଚାଲିଚ଼ଲଣ ମାନି ଚଳିବାକୁ ପଡ଼ିବ; ତାକୁ ଏତେ ସହଜରେ ଉପେକ୍ଷା କରାଯାଇପାରିବନାହିଁ । ପ୍ରଚ଼ଳିତ ବ୍ୟବସ୍ଥାକୁ ଭାଙ୍ଗି ଏକ ନୂତନ ଚଳଣି ଗଢ଼ିବା ଏତେ ସହଜ ନୁହେଁ । ସମାଜରେ ରହିବାକୁ ହେଲେ ସମାଜର ରୀତିନୀତି ମାନିବାକୁ ହେବ, ଏହା ଭାବି ଏକ ଶୋକାକୁଳ ଭାବ ନବୀନର ମନକୁ ଆଚ୍ଛନ୍ନ କରିପକାଇଲା । ତା' ମନର ଆଶାଟିକକ ମଉଳିଗଲା ଭଳି ମନେହେଲା । ବହୁଦିନର ସ୍ୱପ୍ନ ବାଲିଘର ଭଳି ଆଜି ଝଡ଼ବତାସରେ ଧ୍ୱସ୍ତବିଧ୍ୱସ୍ତ ହେବାକୁ ଯାଉଛି । ସେ କ'ଣ କରିବ କିଛି ଭାବିପାରିଲାନାହିଁ । କୁସଂସ୍କାର ଓ ଅନ୍ଧବିଶ୍ୱାସ ଯୋଗୁଁ ସମାଜର ପରିସ୍ଥିତି ଦିନକୁଦିନ ଜଟିଳ ହୋଇଉଠୁଛି । ଅନ୍ଧବିଶ୍ୱାସ, କୁସଂସ୍କାରର ମୂଳୋତ୍ପାଟନ ନହେବା ପର୍ଯ୍ୟନ୍ତ ସମାଜ ଏକ ରୋଗଗ୍ରସ୍ତ ସମାଜ ହୋଇ ରହିଥିବ । ଅନ୍ୟାୟ ଅନୀତିର ପ୍ରତିରୋଧ କରିବା ଶକ୍ତି ଆଜି ମଣିଷ ହରାଇ ବସିଛି । ମଣିଷ ଆଜି ବିବେକଶୂନ୍ୟ ହୋଇପଡ଼ିଛି ।

ସମାଜର ପରିବର୍ତ୍ତନ ପାଇଁ ସମୟ ଆସି ପହଞ୍ଚିସାରିଛି । ମାତ୍ର ଏବେ ମଧ୍ୟ ମାନସିକ ସ୍ତରରେ ପରିବର୍ତ୍ତନ ପାଇଁ ମନ ଉନ୍ମୁକ୍ତ ହୋଇପାରିନାହିଁ । ତେଣୁ ସମାଜ ଆଜି ସ୍ଥାଣୁ ଅବସ୍ଥାରେ ଦ୍ୱାରରୁଦ୍ଧ କରି ବସିରହିଛି । ନବୀନ ମଧ୍ୟ ତାର କର୍ତ୍ତବ୍ୟ କ'ଣ କିଛି ଭାବିପାରିଲା ନାହିଁ । ସେ ନିର୍ବାକ୍ ହୋଇଯାଇଛି ।

ସମୟ ଗଡ଼ିଚାଲିଛି ତା'ର ବାଟରେ । ଗାଈ ଛେଳି ଅଡ଼େଇ ସଭିଏଁ ଘରକୁ ଲେଉଟିବାକୁ ଆରମ୍ଭକଲେଣି । ମାଳତୀ କେତେବେଳୁ ସେଠୁ ଚାଲିଗଲାଣି । ଗୋଧୂଳି

ସମୟ। ନିର୍ଲିପ୍ତ ଭାବରେ ସେ ଅନାଇରହିଛି। ଧୀରେ ଧୀରେ ଅନ୍ଧାର ମାଡ଼ିଆସୁଛି। ତଥାପି ସେ ଛିଡ଼ାହୋଇ ଅନାଇରହିଥାଏ। ପ୍ରତୀକ୍ଷା କରି ରହିଥାଏ ମନରେ ଅନେକ ଆଶା, ଅନେକ ଆବେଗକୁ ଚାପିରଖି। ତା' ସାଥୀମାନଙ୍କ ଡାକରେ ତାର ତନ୍ଦ୍ରାଭଙ୍ଗ ହେଲା। ଉଦାସ ମନରେ ସେମାନଙ୍କ ସହ ପାଦ ମିଳାଇ ଆଗକୁ ବଢ଼ିଚାଲିଲା।

## (୧୭)

ପାହାନ୍ତିଆରୁ ମଦନ ତାର ହଳ ନେଇ ବିଲକୁ ବାହାରିପଡ଼ିଲା। ସେତେବେଳେ ଗାଁଲୋକେ ତାର ନୂଆ ହଳକୁ ଅନାଇରହିଥାନ୍ତି। ପାଟିରେ ପିକା ପୂରାଇ ଭକ୍‌ଭକ୍ ଧୂଆଁଛାଡୁଥାନ୍ତି; ବସି ନିଜ ନିଜ ଭିତରେ ଗପ ଲଗାଇଦେଇଥାନ୍ତି। କିଏ କହୁଥାଏ— ସୁନ୍ଦର ଯୋଡ଼ି ବଳଦ— କିଏ କହୁଥାଏ— କଳା, ଧଳା ଠାକୁର, ଜଗନ୍ନାଥ ବଳଭଦ୍ର ଦୁଇଭାଇ ଭଳି ଦିଶୁଛନ୍ତି; ଆଉ କିଏ କହୁଥାଏ— ଗୋଟିଏ ରଙ୍ଗର ହୋଇଥିଲେ ଆହୁରି ସୁନ୍ଦର ଦିଶିଥାନ୍ତା; କିଏ କହୁଥାଏ— ତିନିହଜାରରୁ କମ୍‌ରେ କିଣିନଥିବ; ଆଉ କିଏ କହୁଥାଏ— ଏତେ କମ୍‌ରେ କୁଆଡୁ ହଳ ମିଳିବ? ହଳ ଆଜିକାଲି ବଡ଼ ମହଙ୍ଗା। ସାଢ଼େତିନିହଜାରରୁ କମ୍ ପଡ଼ିନଥିବ। ଏମିତି ଅନେକ କଥା କୁହାକୁହି ହେଉଥାନ୍ତି ଏବଂ ତାର ଭାଗ୍ୟକୁ ପ୍ରଶଂସାକରୁଥାନ୍ତି।

ଜଣେ କହିଲା— "ଦେଖ, ସେ ଯେଉଁଦିନଠୁ ତାର ଚାଷ ଜମିରେ ମନ ଲଗାଇଛି ସେହିଦିନଠୁଁ ତାର ବଢ଼ତି ହୋଇଚାଲିଛି। ଏଥର ଜମିରେ କୂଅଁ ଖୋଳିବ। ଦୋ'ଫସଲି, ତିନି ଫସଲି ଚାଷକରିବ। ପାଣି ହୋଇଗଲେ, ଚାଷୀ ଯଦି ଖଟିବ, ତାର ଜମିରୁ ସୁନାଫଳାଇବ।"

ଅନ୍ୟ ଜଣେ କହିଲା— "ହଁ ମ, ଏମିତି ସଭିଏଁ କହନ୍ତି। ମାତ୍ର ଛେଳି ଲାଞ୍ଜ ଚାରିଆଙ୍ଗୁଳି ଭଳି ଚାଷୀ ସବୁଦିନେ ଗରିବ। ସେ ହାଡ଼ଭଙ୍ଗା ପରିଶ୍ରମ କଲେ ମଧ୍ଯ ଉଧେଇବା ଏତେ ସହଜ ନୁହେଁ।"

ଆଉ ଜଣେ ଗାଁର ପୁରୁଖା ଚାଷୀ ଏଥିରେ ସହମତ ନହୋଇ କହିଲା— "ପାଣି ହେଲେ ତିନି ଫସଲ ହେବା କ'ଣ ବଡ଼କଥା? ଧାନଚାଷ ପରେ ସେହି ଜମିକୁ ହଳକରି ସୋରିଷ ବୁଣିବ। ସୋରିଷ କାଟିଲେ ତାକୁ ହଳକରି ଚିନାବାଦାମ କରି ଚାଷୀ କାହିଁକି ଦୁଇପଇସା ପାଇବନାହିଁ? ଆମେ ଖଟିବୁନାହିଁ, ଏଣେ ଘରେ ବସି ଗପିଗପି ଅବା ତାସ୍ ଖେଳି ସମୟ ବିତାଇଦେବୁ; ଆଉ କହିବୁ, ଆମେ ଗରିବ। ଆମେ ଗରିବ ନହେବୁଁ ତ ଆଉ କିଏ ଗରିବ ହେବ? ଖାଲି ଭାଗ୍ୟକୁ ଦୋଷ ଦେଇ କି ଲାଭ?"

ଗାଁର ପୁରୁଖା ଲୋକଠୁଁ ଏତକ ଶୁଣିଲା ପରେ ଅନ୍ୟମାନେ ନୀରବରେ ତା' କଥାକୁ ସମ୍ମତି ଜଣାଇଲେ।

ମଦନ ଲୋକଟା ମେହନତିଆ। ଦେହରେ ମଧ୍ୟ ବଳ ଖୁନ୍ଦିହୋଇରହିଛି। ଗାଁର କେତେକ ଛୋଟ ଛୋଟ ପିଲା, କିଏ କରିଆଖଣ୍ଡେ ପିନ୍ଧିଛି, କିଏ ଲଙ୍ଗଳାହୋଇଛି, କିଏ ଛୋଟ ପେଣ୍ଟ୍ ଖଣ୍ଡିଏ ପିନ୍ଧିଛି, ବୋତାମ୍ ନଥିବାରୁ ହାତରେ ଧରିଛି, ଦେହ ପୂରା ଖାଲି, ହଳ ପଛେ ପଛେ ଆଗ୍ରହରେ ଚାଲିଥାନ୍ତି— ସତେ ଯେପରି ମନ ପୂରାଇ ନୂଆ ହଳଟିଏ ଦେଖିବାକୁ ସେମାନଙ୍କ ଆଗ୍ରହ ଲାଗିଯାଇଥାଏ। ଗାଁରେ ନୂଆ କଥାଟିଏ ହେଲେ ଛୋଟ ଛୋଟ ପିଲାଙ୍କ ମନରେ ଉତ୍କଣ୍ଠା, ଆଗ୍ରହ ବେଶି ଦେଖାଦିଏ।

ଗାଁଲୋକେ ତା' ହଳକୁ ଅନାଇରହିଥିବା ମଦନ ଦେଖୁଥାଏ; ସେମାନଙ୍କ କଥା ଶୁଣୁଥାଏ। ଗାଁଲୋକଙ୍କଠୁ ଏତକ ଶୁଣି ଛାତି ତାର କୁଣ୍ଢେମୋଟ ହୋଇ ଫୁଲିଉଠୁଥାଏ। ଖଟି ଖାଇଲେ ଭାଗ୍ୟ ଫେରିବ। ସେଥିପାଇଁ ସେ ମେହନତ କରି କିଛି ଉପାର୍ଜନ କରିବ ବୋଲି ଏତେ ଯୋଗାଡ଼ଯନ୍ତ୍ର କରୁଛି। ଘରେ ତାର ଚାରିପ୍ରାଣୀ। ସେମାନଙ୍କ ପେଟକୁ ଦାନା ପିଠିକୁ କନା ଯୋଗାଇବ, ବଡ଼ଝିଅର ବାହା କରାଇବ, ଭଲ ଘରଟିଏ ନିଜର ତିଆରିକରିବ। ଦୁଇଝିଅ ବାହାକରି ସାରିଲେ ଯାଇ ତାର ମୁଣ୍ଡରୁ ବୋଝ ହାଲୁକାହେବ। ତା'ପରେ ଦୁଇପ୍ରାଣୀ ସୁଖରେ ଦିନ କାଟିବେ। ନାତି ନାତୁଣୀ ଦେଖି ଦିନ ବିତିଯାଉଥିବ। ଘରେ ଗାଈ ରଖିବେ। ଛେଳି ଆହୁରି ଦୁଇପଟ ଏଥର କିଣିବ। ଏମିତି କେତେ କଥା ଭାବି ଭାବି ସେ ବିଲରେ ଆସି ପହଞ୍ଚିଗଲା। ଅନେକ ଦିନ ପରେ ବିଲକୁ ତାର ନିଜ ହଳରେ ଚାଷକଲାବେଳେ ଅପାର ଆନନ୍ଦ ଓ ତୃପ୍ତି ଅନୁଭବକଲା। ଏଭଳି ଆନନ୍ଦ ବହୁଦିନୁ ତା' ମନରୁ ଲିଭିଯାଇଥିଲା। ଆଜି ତାକୁ ଯେମିତି ସବୁ ନୂଆ ନୂଆ ଲାଗୁଛି। ନିଜର ହୋଇ ହଳଟିଏ ହେଲାପରେ ସେ ଆଶ୍ୱସ୍ତିବୋଧକଲା। ଏତେ ଲୋକଙ୍କର ଜମି ଅଛି; ମାତ୍ର ସଭିଙ୍କ ପାଖରେ ହଳ ନାହିଁ। ଆଜି ତାର ଜମି ଅଛି; ହଳ ବି ଅଛି।

ସରକାର କେତେ ଲୋକଙ୍କୁ ଜମି ଦେଲେଣି, ହଳ ବି ଦେଲେଣି; ମାତ୍ର ଜମି ସେମିତି ଆବରାଖାବରା ହୋଇ ପଡ଼ିଛି। ହଳ କିଛିଦିନ ରଖି ଆଉ ଜଣକୁ ବିକିଦେଲେଣି। ସେ ପଇସା ନେଇ ମଦକୋଠିରେ ଦେଇସାରିଲେଣି। ଯାହା ଉପାର୍ଜନ ହୁଏ, ସେହି ମଦକୋଠିରେ ପଡ଼ିଯାଏ। ମଦ ବିନା ଦିନଟିଏ ମଧ୍ୟ ଚଳିପାରୁନାହାନ୍ତି। କାହିଁ କିଛି ତ ତାଙ୍କର ଉନ୍ନତି ହେଉନାହିଁ। ଏଇନେ ପୁଣି କୂଅଁ ଗୋଟିଏ ଖୋଳିଦେବାପାଇଁ ସରକାର ସବୁ ବ୍ୟବସ୍ଥା କରିଦେଲେଣି। ଜମି, ହଳ, ପାଣି ଏତକ ମିଳିଲାପରେ ଚାଷୀ ଯଦି ନିକମା ହୋଇ ବସିରହିବ,

ତେବେ ତାର ମଙ୍ଗଳ ହେବ କିମିତି? ଯିଏ କାମିକା, ଚତୁର, ସେ ତାର ଫାଇଦା ଉଠାଇନେଉଛି। ଏହାଠୁ ବଳି ସରକାର ଆଉ ଅଧିକ କ'ଣ କରିପାରିବ?

ଏମିତି କେତେ କ'ଣ ଭାବନା ମଦନର ମୁଣ୍ଡକୁ ଢୁକିଯାଉଥାଏ। ତା' ମନ ଆଜି ବଡ଼ ଖୁସ୍। କାହାକୁ ଆଉ ହଳ ପାଇଁ ହାତ ପତାଇବାକୁ ପଡ଼ିବନାହିଁ। ବତର ଫିଟିଗଲେ, କିଏ ଦୟାକରି ହଳ ଦେଉଥିଲେ; ଏମିତି କି ସମୟେ ସମୟେ ବତର ମଧ୍ୟ ଫିଟିଯାଉଥିଲା, ହଳ ମଧ୍ୟ ମିଳୁନଥିଲା। ମାଗିଯାଚି ସେ ଆଉ କେତେ ଦିନ ଚଳିଥାନ୍ତା?

ମଦନ ଜମି ଚାଷକରିଚାଲିଥାଏ। ଜମିରେ ସହଳ ହଳ ବୁଲାଇ, ହାଲିଆ ମାରିବାକୁ ହୁଡ଼ାରେ ସେ କିଛି ସମୟ ବସି ତାର ଜମିକୁ ଅନାଇରହିଲା। ଜମି ଚାଷ ସରିଗଲା ପରେ ମୁଣ୍ଡରୁ ତାର ଗୋଟିଏ ବଡ଼ ବୋଝ ଖସିଗଲା ଭଳି ଲାଗିଲା। ପରମ ତୃପ୍ତିରେ ମୁହଁରେ ତାର ହସ ଚହଟିଆସିଲା। ଦେହରୁ ଗମ୍‌ଗମ୍ ଝାଳ ନିଗିଡ଼ିପଡୁଥାଏ। ମୁଣ୍ଡରେ ଭିଡ଼ିଥିବା ଗାମୁଛାକୁ କାଢ଼ି ଦେହର ଝାଳକୁ ପୋଛିପକାଇଲା।

ଦିନକୁଦିନ ମଦନର କାମ ବଢ଼ିଚାଲିଲା। ନୂଆ ହଳ ଆଣିଲା ପରେ ତାର ପରିବାର ସଂଖ୍ୟା ବଢ଼ିଚାଲିଲା। ଆଗରୁ ତାର ସ୍ତ୍ରୀ ଏବଂ ଦୁଇଝିଅ ଥିଲେ। ବଣରୁ ଛେଳିମାନେ ପେଟେ ଖାଇ ଘରକୁ ଫେରୁଥିଲେ। ସେଥିପାଇଁ ତାର ଚିନ୍ତା ନଥିଲା। ଏବେ ତାର ଆଉ ଦୁଇଟି ପ୍ରାଣୀ ଆସି ଘରେ ପହଞ୍ଚିଗଲେ। ସେମାନଙ୍କ ପାଇଁ ଖାଦ୍ୟପେୟ ଯୋଗାଡ଼ କରିବା ଆଉ ଏକ ସମସ୍ୟା ଦେଖାଗଲା। ଦିନଯାକ ହଳ କ୍ଷେତରେ କାମକରି ଘରକୁ ଫେରିଲେ ତାଙ୍କୁ ଯଦି ପେଟପୂରା ଖାଇବାକୁ ଦେଇନପାରିବ, ତେବେ ସେ ଅକାମିକା ହୋଇପଡ଼ିବେ। ତେଣୁ ତା' ମୁଣ୍ଡକୁ ଚିନ୍ତା ପଶିଗଲା। ପାଳ, କୁଣ୍ଡା ଯୋଗାଡ଼ କରିବାକୁ ପଡ଼ିବ। ସେଥିପାଇଁ ଟଙ୍କା ଆବଶ୍ୟକ। ଏ କଥା ସେ ଆଗରୁ ଭାବିଥିଲା; ମାତ୍ର ତା'ପାଇଁ ଉଦ୍ୟମ କରିପାରିନଥିଲା।

ଘରେ ଖର୍ଚ୍ଚବାର୍ଚ୍ଚ ଯାଇ ଯାହାକିଛି ତାର ସ୍ତ୍ରୀ ସାଇତି ରଖିଥିଲା ସେତକ ମଧ୍ୟ ଆଉ ନାହିଁ। କ'ଣ କରିବ, ତା' ମୁଣ୍ଡକୁ ବୁଦ୍ଧି ଦିଶିଲାନାହିଁ। ବିଲରୁ ଫେରି ହାଲିଆହୋଇ ବସିପଡ଼ି ଶୂନ୍ୟ ଆକାଶକୁ ଚାହିଁ ଗାମୁଛାରେ ବିଞ୍ଚିହେବାକୁ ଲାଗିଲା। ରେବତୀ ଘର ଭିତରୁ ଆସି ପାଟିକରି ଉଠିଲା – "ହଳଟାକୁ ଖରାଟାରେ ଛିଡ଼ାକରିଦେଲ କାହିଁକି? ଛାଇକୁ ନେଇ ବାନ୍ଧିଦିଅ।

ମଦନ ନିରାଶ ହୋଇ ରେବତୀକୁ ଚାହିଁ କହିଲା – ଦେଖୁନୁ, ଭୋକରେ ତାଙ୍କ ହଂସା ଉଡ଼ିଗଲାଣି। ତାଙ୍କୁ କିଛି ଖାଇବାକୁ ନଦେଲେ ରଡ଼ିଛାଡ଼ିବେ। ମୁଁ ତ କିଛି ଯୋଗାଡ଼ କରିପାରିନି।

''ଭଲକଥା କହିଲ— ତମେ ଖାଇବ; ସେ ଆଉ ଖାଇବେନାହିଁ? ତା' ପାଇଁ କୁଣ୍ଡା ରଖିଦେଇଛି— ପାଣି ଚକଟି ଦେଇଦିଅ । ଏତକ ଅଜି ଖାଇଦେଇଥାନ୍ତୁ, କାଲିକି ପୁଣି ଦେଖିବାନାହିଁ। ପାଳଗଣ୍ଡିଏ କେଉଁଠୁ ଯୋଗାଡ଼ କରି ଆଣ ।''

ଏତକ ରେବତୀଠୁଁ ଶୁଣୁଶୁଣୁ ମଦନ ଦେହରେ ବଳ ସଂଚ଼ରିଗଲା । ସତରେ ତାର ସ୍ତ୍ରୀଟି କେତେ ଜାଣିବାଶୁଣିବା ମାଇକିନା । ହଳ ବିଲରୁ ଫେରିଲେ କ'ଣ ଖାଇବେ, ସେତକ ମଧ୍ୟ ସେ ଯୋଗାଡ଼ କରି ସାଇତି ରଖିଦେଇଛି । କୃତଜ୍ଞତାରେ ତାର ଅନ୍ତର କୁରୁଳିଉଠିଲା । ମୁହଁରେ ହସ ଫୁଟାଇ ମଦନ ତରତର ହୋଇ ବଳଦଙ୍କୁ ବାନ୍ଧି କୁଣ୍ଡା ବଟୁରାଇ ଖାଇବାକୁ ଦେଲା । ଆନନ୍ଦରେ ସେତକ ଖାଇ, ପାଟି ପାକୁଳାଇ ଦୁଇ ପ୍ରାଣୀ ତାକୁ ଅନାଇରହିଥାନ୍ତି ।

(୧୮)

ଅନେକ ଦିନ ପରେ କିଆ ଆଜି ଛେଳି ନେଇ ଡଙ୍ଗରକୁ ଯାଉଛି । ଆଜି ଆଉ ସେଦିନ ଭିତରେ କେତେ ତଫାତ୍ । ସେ ଛୋଟ ଥିଲାବେଳେ ଛେଳିଙ୍କ ସହ ଦୌଡ଼ି ଦୌଡ଼ି ଯାଇ ଡଙ୍ଗରରେ ପହଞ୍ଚିଯାଉଥିଲା । ଏଇନେ ଧୀରେସୁସ୍ଥେ ଚାଲି ଚାଲି ଛେଳି ଅଡ଼େଇ ଯାଉଛି । ଦୌଡ଼ିବାକୁ ସଙ୍କୋଚ଼ ମାଡ଼ିବସୁଛି । ଦୌଡ଼ିଲେ ମାଂସ ଲାଗିଯାଇଥିବା ଦେହର ଅଙ୍ଗପ୍ରତ୍ୟଙ୍ଗ ଦୋହଲିଉଠୁଥାଏ । ତେଣୁ ଏକ ଅଜଣା ସଙ୍କୋଚ଼ ଦେହସାରା ଖେଳିଯାଉଥାଏ ।

ଆଜି ତାର ସାନ ଭଉଣୀ ସେବତୀକୁ ଜର । ପିଲାଟା ଖରାରେ ଛେଳି ଚରେଇବାରୁ ଜର ହୋଇଯାଇଛି । ଦେହର ତାତି କମିବାକୁ ନାହିଁ । ଏଣେ ଛେଳିଙ୍କୁ ଖାଇବାକୁ ନମିଳିଲେ ସେମାନେ ରଡ଼ିକରି ଘର କମ୍ପେଇଦେବେ ।

କିଆର ମନରେ କେତେ ଆଶଙ୍କା ଖେଳିଯାଉଛି । ଅନେକଦିନ ପରେ ସେ ଛେଳି ଅଡ଼େଇ ଡଙ୍ଗରକୁ ଯାଉଛି । ଆଜି ତାର ସେହି ପରିଚ଼ିତ ଡଙ୍ଗର ତାକୁ କେମିତି ନୂଆ ନୂଆ ଜଣାପଡୁଥାଏ । ତାର ଅତି ଆପଣାର ଆମ୍ବଗଛ ତଳ କେମିତି ନିଛାଟିଆ ନିଛାଟିଆ ଜଣାପଡୁଥାଏ । ଖଣ୍ଡ ଖଣ୍ଡ ବାଦଲର ଛାଇ ବଣ ଭିତରେ ଖେଳିଯାଉଛି । ତାହାରି ଫାଙ୍କ ଦେଇ ସୂର୍ଯ୍ୟକିରଣ ଝରିପଡୁଛି ଠାଏ ଠାଏ । ଆକାଶରେ ବାଦଲର ଗତି ସଙ୍ଗେ ତାଳଦେଇ ବଣ ପାହାଡ଼ ମଧ୍ୟରେ ସୂର୍ଯ୍ୟକିରଣ ଦୌଡ଼ିଦୌଡ଼ି ଲୁଚ଼ିଛପିଗଲାଭଳି ମନେହେଉଥାଏ । କିଆର ଦୃଷ୍ଟି ଫେରିଆସିଲା ସେହି ତାର ପରିଚ଼ିତ ଗଛମୂଳକୁ । ନବୀନ ଆସିନାହିଁ କି? କାହିଁ, ତାର ତ ଦେଖାଦର୍ଶନ ମିଳୁନାହିଁ? ସେ ତ କେବେ ଏତେ ଡେରି

କରି ଆସେନାହିଁ? ତାର ଗାଈଗୋଠକୁ ଧରି ସେ ଆସିବା ଆଗରୁ ଚାଲିଆସିଥାଏ। ଆଗରୁ ଆସି ସେ ଅପେକ୍ଷା କରି ରହିଥାଏ ତାର ଆସିବା ବାଟକୁ। ସେ ନ କହିଲେ ମଧ୍ୟ କିଆ କ'ଣ ଜାଣିପାରେନାହିଁ କି? ନାରୀ ଆଖିରେ ପୁରୁଷର ମନକଥା ସବୁ ଧରାପଡ଼ିଯାଏ। ଅତୀତର କଥା ସବୁ ମନେପଡ଼ି ମନକୁ ତାର ଉଲ୍ଲସିତ କରିପକାଇଲା।

ମାଳତୀର ମଧ୍ୟ ଏତେବେଳହେଲା କାହିଁ ଦେଖାଦର୍ଶନ ମିଳୁନାହିଁ? କପଟୀଟା... ମୋ' ନାଁରେ ନିନ୍ଦା ରଟାଇ ମୋତେ ଏତେସରିକଲା। ତା'ପ୍ରତି କିଆ ମନରେ ଏକପ୍ରକାର ଘୃଣାଭାବ ଖେଳିଗଲା।

ସାରା ଜଙ୍ଗଲଟି ତାକୁ କେମିତି ଆଜି ଭୟଙ୍କର ଜଣାପଡ଼ିଲା। ଏତେ ବଡ଼ ଜଙ୍ଗଲରେ ସେ ଆଉ ତାର ଛେଳିଗୋଠ। ଏମିତି ଅନୁଭୂତି ତାର ଆଗରୁ କେବେ ଘଟିନଥିଲା। ଜଙ୍ଗଲ ତାର ଅତି ଆପଣାର। ଭୟଭ୍ରାନ୍ତି କ'ଣ ସେ କେବେ ଜାଣିନଥିଲା; ମାତ୍ର ଆଜି କେମିତି ଏକ ଅଜଣା ଭୟ ମାଡ଼ିଆସିଲା। ନିଛାଟିଆ ନିଛାଟିଆ ତାକୁ ଜଣାଗଲା। ରୋମମୂଳ ଟାଙ୍କୁରି ଉଠିଲା। ଭୟରେ ଦେହ ଦୁଲୁକେଇଦେଲା। ଜଙ୍ଗଲରେ ବାଘ ମାଡିଛି କି? କାହିଁ, କିଏ ତ ସେ କଥା ଗାଁରେ ପକାଇନଥିଲେ? ଅନେକ ବର୍ଷ ତଳେ ଥରେ ବାଘ ମାଡିଥିଲା। ସେତେବେଳେ ସେମାନେ ଛୋଟ ଛୁଆ ଥିଲେ। ବାପ-ମା'ଙ୍କଠୁଁ ସବୁକଥା ଶୁଣିଥିଲେ। ସେ ବାଘ ଗାଁର କେତେ ଗାଈ ବଳଦଙ୍କୁ ମାରିଦେଇଥିଲା। ସେଦିନ ପରେ ବାଘଭୟ କଥା ଆଉ କେବେ ଶୁଣିନଥିଲା। ଆଜି ତାର ସେହି ପୁରୁଣା କଥା ମନେପଡ଼ି ଏକ ଅଜଣା ଭୟ ତା' ମନକୁ ଢାଙ୍କିଦେଲା।

ନବୀନ ତାର ଗାଈଗୋଠକୁ ଚରିବାପାଇଁ ଛାଡ଼ିଦେଇ ଆସି କିଆକୁ ଏମିତି ନୀରବରେ ବସିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲା। ନବୀନ ମନରେ କୌତୂହଳ ଜାତହେଲା। ସେ ଛପିଛପି ଯାଇ କିଆର ପଛରେ ଛିଡ଼ାହୋଇ ପାଟିକରି ତାକୁ ଚମକାଇଦେଲା। ପାଟି ଶୁଣି କିଆ ଭୟରେ ଚିତ୍କାରକରିଉଠିଲା।

ନବୀନ ତାକୁ ଧରିନେଇ ଆଶ୍ୱାସନା ଦେବାଭଳି କହିଲା– ''ଆଲୋ, ଏମିତି ଡରିଗଲୁ କି?'' ନବୀନ ତାକୁ ଧରିପକାଇନଥିଲେ ଭୟରେ ସେ ତଳେ ପଡ଼ିଯାଇଥାନ୍ତା। ଭୟରେ ବିନ୍ଦୁ ବିନ୍ଦୁ ଝାଳ କିଆର ମୁହଁରେ ଜମିଯାଇଥିଲା। କିଆ କ୍ଷଣକପରେ ପ୍ରକୃତିସ୍ଥ ହୋଇ ନବୀନକୁ ରାଗ ତମତମ ହୋଇ କହିଲା– ''ତୁ ମୋତେ ଏମିତି ଡରାଇଦେଲୁ କାହିଁକି? ଯା', ମୁଁ ତୋ' ସହିତ କଥାହେବିନାହିଁ।'' କିଆ ମୁହଁ ଫୁଲାଇ ଦୂରକୁ ଘୁଞ୍ଚିଗଲା।

ନବୀନ ତାର କାନ୍ଦୁରା ମୁହଁକୁ ଦେଖି କହିଲା– ''ଆଲୋ, ତୁ ଏମିତି ଡରକୁଳୀ ବୋଲି ମୁଁ ଜାଣିନଥିଲି। ମୁଁ ତୋତେ ଖାଲି ଛାନିଆକରି ମଜାଦେଖିବା

ପାଇଁ ରଡ଼ିକଲି। ସତରେ, ଏତିକିରେ ତୁ ଡରିଗଲୁ? ହଉ ହଉ ହେଲା, ମୋର ଦୋଷହୋଇଛି, ମୁଁ କାନ ମୋଡ଼ି ଗାଲରେ ଚାପୁଡ଼ା ମାରୁଛି।''

ଏହା କହି ନବୀନ ତା' ନିଜ କାନ ମୋଡ଼ି ଗାଲରେ ଚଟକଣା ମାରିହେଲା। ଏହା ଦେଖି କିଆ ତା' ପାଖକୁ ଚାଲିଆସି ତାର ହାତ ଧରିନେଇ ହସିଦେଲା। ନବୀନ କିଆର ସୁନ୍ଦର ଗୋଲ ମୁହଁକୁ ଓ କଳା କଳା ଆଖିଯୋଡ଼ିକୁ ଅନାଇରହିଲା। ନବୀନ ଏମିତି ଅନାଇରହିଥିବା ଦେଖି କିଆ ମୁହଁରେ ହସ ଚହଟିଆସିଲା। ନବୀନକୁ ସତୃଷ୍ଣ ନୟନରେ ସେ କେବଳ ଚାହିଁରହିଲା; ତୁଣ୍ଡରୁ କଥା ସ୍ଫୁରିଲାନାହିଁ। ଦୁହେଁ ଦୁହିଁଙ୍କୁ ତନ୍ମୟ ହୋଇ ଅନାଇରହିଥାନ୍ତି।

ଅନେକ ଦିନ ହେଲା ସେମାନଙ୍କ ଭେଟହୋଇନଥିଲା। ତେଣୁ ମନ ପୂରାଇ ଦୁହେଁ ଦୁହିଁଙ୍କୁ ଦେଖିନେଉଥାନ୍ତି। ନବୀନ ଭାବବିହ୍ୱଳ ହୋଇ କହିଲା– ''ସତେ ଲୋ କିଆ, ତୁ କେଡ଼େ ସୁନ୍ଦର! ତୋର ଏ ସୁନ୍ଦର ମୁହଁଖଣ୍ଡିକୁ ଯୁଗ ଯୁଗଧରି ଅନାଇ ରହିବାକୁ ମନହେଉଛି।''

–''ଧେତ୍, ଏମିତି କ'ଣ କହୁଛୁ. . .'' – କହି କିଆ ମୁହଁକୁ ବୁଲାଇନେଲା।

ଏତେଦିନ ପରେ ସେମାନଙ୍କ ଭେଟହୋଇଛି। ମନରେ କେତେ ପ୍ରଶ୍ନ ଉଙ୍କିମାରୁଥାଏ। ଉଭୟଙ୍କ ମନରେ ପ୍ରଶ୍ନର କୁଆଁର ସୃଷ୍ଟିକରିଚାଲିଥାଏ। ନବୀନର ମନରେ ଅନେକ ପ୍ରଶ୍ନ ଖେଳିଯାଇଥାଏ। କେଉଁଠୁ ସେ କଥା ଆରମ୍ଭ କରିବ, ଭାବିପାରୁନଥାଏ।

ନିଶ୍ଚଳ ପ୍ରତିମାଟିଏ ପରି କିଆ ଅଳ୍ପ ଦୂରରେ ଛିଡ଼ାହୋଇଥାଏ; ନବୀନଠୁଁ କିଛି ଶୁଣିବାପାଇଁ ଅପେକ୍ଷାକରିରହିଥାଏ। ନୀରବତା ଭଙ୍ଗକରି ନବୀନ କହିଲା– କିଆ, ତୁ ମୋ' ଉପରେ ରାଗିଛୁ, ନା?''

କିଆ କେବଳ ଥରେ ତାକୁ ଅନାଇଁ ମୁଣ୍ଡ ପୋତି ଛିଡ଼ାହୋଇରହିଲା। ମନେମନେ କେତେ କଥା ଭାବିଗଲା– ହଁ, ହଁ, ସେ ତା' ଉପରେ ରାଗିଛି। ତାକୁ ନେଇ ଗାଁରେ କେତେ କଥା ଘଟିଗଲା, ଘରେ କେତେ ଅଶାନ୍ତି ହେଲା। ଯେଉଁ ବାପ ତାକୁ ଏତେ ଗେହ୍ଲାକରୁଥିଲା, ସେ ଫେର୍ ତା' ଉପରକୁ ହାତଉଠାଇଲା। ତାର ମୁଣ୍ଡ ତଳକୁ ହୋଇଯାଇଛି। ଏତେ କଥା ଘଟିଯାଇଛି; ତହିଁରେ ପୁଣି ସେ ପଚାରୁଛି– ମୋ ଉପରେ ରାଗିଛୁ, ନା?

'ହଁ, ହଁ, ରାଗିଛି'– ବୋଲି କହିଦେବ ବୋଲି ଭାବୁଥିଲା; ମାତ୍ର ସେତକ କିଆ କହିପାରିଲା ନାହିଁ। ପରକ୍ଷଣରେ ସେ ପୁଣି ଭାବିଲା– ତାର ଦୋଷ ଅବା କ'ଣ? ପୁରୁଷ ନାରୀକୁ ଓ ନାରୀ ପୁରୁଷକୁ ଭଲପାଇବା ଦୋଷ କି? ଯଦି ଦୋଷ ନୁହେଁ, ତେବେ ନବୀନର ଭୁଲ ହେଲା କେଉଁଠି? ତାକୁ ଦୋଷ ଦେଇ ଲାଭ କ'ଣ?

କିଆକୁ ନୀରବରେ ଛିଡ଼ାହୋଇ ରହିବା ଦେଖି ନବୀନର ମୁହଁରେ ହସଟିକକ ଲିଭିଗଲା। ମୁହଁ ତାର ଝାଉଁଳିଗଲା। ତଥାପି ଟିକିଏ ପାଖକୁ ଚାଲିଆସି କହିଲା– "ମୁଁ ଶୁଣୁଛି, ତୋର ବାହାଘର ପାଇଁ ଯୋଗାଡ଼ ଚାଲିଛି। କେବେ ବାହାଘର ହେବ? କେଉଁଠି ଠିକ୍ ହେଲା କି? ତୋ' ବାହା-ଭୋଜିକୁ ମୋତେ ଡାକିବୁନା?"

ତାର ସ୍ୱର ଆର୍ଦ୍ର ବେଦନାଦାୟକ ଭଳି ମନେହେଲା। ତାର ଆଖି ଛଳଛଳ ହୋଇଉଠିଲା। କିଆ ଚମକିପଡ଼ି ନବୀନକୁ ଚାହିଁଲା। ନବୀନ ଶୁଖିଲା ମୁହଁକୁ ଦେଖି ତାର ଛାତି ଭିତର କୋରିହେଲା ଭଳି ମନେହେଲା। ସେ ତେବେ ସବୁକଥା ଜାଣିଯାଇଛି! ଗାଁରେ କଥାଟା ରାଷ୍ଟ୍ର ହୋଇଛି। ଆଉ ନବୀନ କ'ଣ ଗାଁ ବାହାରର? ସେତକ ସେ ଜାଣିପାରିବ ନାହିଁ କି? କିଆ ନୀରବ ନିଶ୍ଚଳଭାବେ ଛିଡ଼ାହୋଇ ନବୀନର ମୁହଁକୁ ଅନାଇରହିଲା; ତୁଣ୍ଡରୁ କଥା ପଦଟିଏ ମଧ୍ୟ ବାହାରିଲାନାହିଁ। କ'ଣ ସେ ଆଉ କହିବ? ତା' ବାହାଘର କଥା ନବୀନ ସବୁ ଜାଣିସାରିଛି। ତାକୁ ସବୁ କଥା କହିବ ବୋଲି ଭାବି ଆସିଥିଲା; ମାତ୍ର ଆଉ ତାକୁ କିଛି କହିବାକୁ ପଡ଼ିଲାନାହିଁ। –"ତୁ କ'ଣ ମୋ' ସହିତ ଆଉ କଥା ହେବୁନାହିଁ କି?" ନବୀନ ଥରିଲା କଣ୍ଠରେ ଏତକ କହିଲା। ଆଖି ଟେକି କିଆ କେବଳ ତା' ମୁହଁକୁ ଅନାଇ ଦେଖିଲା। ନବୀନର ମୁହଁରେ ବେଦନାର ଛାଇ ଘୋଟିଯାଇଛି।

କିଆ ତା' ମନରେ କେତେ କ'ଣ ଭାବିଚାଲିଥାଏ– ମୁଁ ସିନା ଅବଳା ଝିଅ, ନିରୁପାୟ; ତୁ ତ ପୁରୁଷ, ତୋର ଜୋର୍ କରିବା ତାକତ୍ ଅଛି। ତୁ ଏତେବେଳେ ଏମିତି ଭାଙ୍ଗିପଡ଼ିଲେ ଚଳିବ କେମିତି? ତୋର ଜୋର୍‌ବଳରେ ତୁ ନିଜର ହକ୍ ଆଦାୟ କରିବା ସମୟ ଆସି ପହଞ୍ଚିଛି। ମୋ ଉପରେ ତୋର ସେତକ ଅଧିକାର ଅଛି। ମୁଁ ଯେତେବେଳେ ମୋର ମନକୁ ତୋ' ପାଖରେ ବିନା ଦ୍ୱିଧାରେ ଅର୍ପଣକରିସାରିଛି, ସେତକ ତୋହରି ଜୋର୍‌ବଳରେ ତୋତେ ହାସଲ କରିବାକୁ ପଡ଼ିବ। ନିଜ ଦାବିକୁ ନିଜେ ସାବ୍ୟସ୍ତ ନ କଲେ କିଏ କାହାକୁ ସହଜରେ ବଢ଼ାଇଦିଏନାହିଁ। ଆବଶ୍ୟକ ପଡ଼ିଲେ ସେଥିପାଇଁ ଦେହର ଜୋର୍ ଓ ମନର ଜୋର୍ ଖଟାଇବାକୁ ପଡ଼ିବ। ମୁଁ ଯେତେବେଳେ ହଁଭରିଛି ତୁ କାହିଁକି ପଛାଇଯାଉଛୁ। ମୁଁ ସ୍ତ୍ରୀଲୋକ, ତା' ସତ! ସଂସାରରେ ସ୍ତ୍ରୀ ହେବା କ'ଣ ଦୋଷ? ଏ କ'ଣ ମୋର ଅପରାଧ? ଏହା ଯଦି ସଭିଁଙ୍କ ଧାରଣା, ତେବେ ସେମାନେ ଭୁଲକରୁଛନ୍ତି। ନାରୀ ମନ ଥରେ ଯାହାକୁ ଭଲପାଏ, ସେ କେବେ ଆଉ ଜଣକୁ ଭଲପାଇପାରେନା।

ଏମିତି କେତେ କ'ଣ କିଆ ଭାବିଚାଲିଥାଏ। ସେମିତି ସ୍ଥିର, ସେମିତି ସ୍ତବ୍ଧ ହୋଇ ଛିଡ଼ାହୋଇଥାଏ। ତାର ମନ ଘୂରିବୁଲୁଥାଏ ଏକ ଅଜଣା ରାଇଜରେ। ନବୀନ ତାକୁ କ'ଣ ପଚାରୁଛି, ତାର କଥାର ଉତ୍ତର ମଧ୍ୟ ସେ ଦେଇପାରୁନାହିଁ। ସେ ସିନା ସ୍ତ୍ରୀଲୋକ– କିଛି କରିପାରିବନାହିଁ, କରିବାକୁ ମନ ଥିଲେ ମଧ୍ୟ ଲଜ୍ଜା,

ସଂକୋଚ ତାକୁ ବାନ୍ଧିପକାଉଛି । ତାର ଗୋଡ଼ହାତ ଅଚଳ ହୋଇପଡୁଛି । କିନ୍ତୁ ନବୀନ ତ ପୁରୁଷ, ତରୁଣ । ପୁରୁଷ ପିଲା ଯାହା କଲେ ପରା ତାକୁ ସାତଖୁଣ ମାଫ୍ । ପୁରୁଷର ଦୋଷ ଧରାଯାଏନାହିଁ । ତେବେ ତୁ କେମିତି ତୁନିହୋଇ ରହିପାରୁଛୁ ? ତୋର ଆଦରର ସାଥୀ କିଆକୁ ଆଉ ଜଣେ ପୁରୁଷ ବାହାହୋଇ ତାକୁ ନେଇଯିବାପାଇଁ ସଜହେଉଛି – ପୁରୁଷ ହୋଇ ଏତେ କଥା ଜାଣିଶୁଣି ତୁନିହୋଇ ରହିପାରୁଛୁ କେମିତି ? ତୁ ଜୋର୍‌କରି ମୋତେ ନେଇଯାଉନାହୁଁ କାହିଁକି ? ତୁମ କୁଳରେ ସେତକ ଚଳୁଛି । ସେଥିପାଇଁ ତୋତେ କିଏ ଦୋଷୀ କରିପାରିବେ ନାହିଁ । ମନକୁ ଦୃଢ଼କରି, ହୃଦୟକୁ ଟାଣକରି ମୋତେ ତୁ ତୋର ଆପଣାର କରିନେଇଯା । ହଁ, ହଁ, ସତରେ ମୋତେ ତୁ ନେଇଯା । କେତେ ଦିନର କେତେ ପୁରୁଣା କଥା ଆଜିଭଳି ମନେହେଉଛି । କୁଆଡ଼େ ଅର୍ଜୁନ ତାଙ୍କ ପ୍ରେୟସୀ ସୁଭଦ୍ରାଙ୍କୁ ହରଣ କରି ନେଇଯାଇଥିଲେ । ଶ୍ରୀକୃଷ୍ଣ ମଧ୍ୟ ରୁକ୍ମଣୀଙ୍କୁ ହରଣ କରିନେଇଯାଇଥିଲେ । ତାହା ଯଦି ସମ୍ଭବ ହେଲା, ସମାଜ ତାକୁ ଯଦି ସେତେବେଳେ ଗ୍ରହଣକଲା, ଆଜି ଆମବେଳକୁ ଏତେ କଥା ଉଠୁଛି କାହିଁକି ?

ହଁ, ତା' ବି ସତ ! ସେମାନେ ବଡ଼ଲୋକ, ଯୋଦ୍ଧା, ପ୍ରବଳପ୍ରତାପୀ; ତେଣୁ ସେମାନଙ୍କ କଥା ଛପିଗଲା । ଲୋକେ ତାକୁ ଗ୍ରହଣକରିନେଲେ । ବାହା-ସାହା କରାଇ ସେମାନଙ୍କୁ ଅଭିନନ୍ଦନ ଜଣାଇଲେ । ଆମେ ଛୋଟଲୋକ, ଗରିବ; ତେଣୁ ଆମ ବେଳକୁ ସବୁ ଗୋଟି ଗୋଟି ହିସାବ-ନିକାଶ ଚାଲିଛି । ଜାତି, କୁଳ, କୁଟୁମ୍ବ– କେତେ କଥା ଉଠୁଛି । ଆମେ ସମାଜର ନୀତି-ନିୟମକୁ କୁଆଡ଼େ ଭାଙ୍ଗିପାରିବା ନାହିଁ, ଭାଙ୍ଗିଲେ ଆମକୁ ସମାଜରୁ ଅନ୍ତରକରିଦିଆଯିବ । ସମାଜରେ ରହିବାକୁ ହେଲେ ସମାଜର ମତାମତକୁ ସହଜରେ ଆଡ଼େଇଦେଇହେବନାହିଁ । ତା' ବୋଲି କ'ଣ ଆଜି ଆମେ ଆମ ଜୀବନକୁ ତିଳ ତିଳ ଦଗ୍ଧ କରିପକାଇବା ? ଆମ ଜୀବନକୁ ଜାଳିପୋଡ଼ି ଦେବା ଅଧିକାର କ'ଣ ଏ ସମାଜର ଅଛି ? ଆମ ମନର ବେଦନାଟିକକ ବୁଝିବାର ଶକ୍ତି କ'ଣ ଏ ସମାଜର ନାହିଁ ? –ଏ ପ୍ରଶ୍ନର ଉତ୍ତର ତାକୁ କିଏ ଦେବ ?

କିଆର ମନ ଛଟପଟ ହେଉଥାଏ । କ'ଣ କରିବ, ସେ କିଛି ଭାବି ପାରୁ ନଥିଲା । 'ପ୍ରେମର ଅନ୍ୟ ନାମ ପରା ପ୍ରତୀକ୍ଷା !' –ତାର ଉଦାସ ମୁହଁରେ ଆଶାର ଆଲୋକ ଝଲସିଉଠିଲା । ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଫୁଟିଉଠିଲା । ହୃଦୟରେ ଏକପ୍ରକାର ଦୃଢ଼ଭାବ ଫୁଟିଉଠିଲା– ମୁଁ ତୋତେ ପାଇବାପାଇଁ ପ୍ରତୀକ୍ଷା କରି ରହିବି । ଏଭଳି ବର୍ଷ ବର୍ଷ ତୋହରି ପାଇଁ ମୁଁ ଅପେକ୍ଷା କରି ରହିବି !!

ପର ମୁହୂର୍ତ୍ତରେ କିଆ ମନରେ ପୁଣି ଭାବାନ୍ତର ସୃଷ୍ଟିହେଲା । ମନରେ ତାର ଏକ ସନ୍ଦେହ, ଅବିଶ୍ୱାସ ଖେଳିଗଲା– ମୁଁ ସିନା ଭାବୁଛି, ନବୀନକୁ ପାଇବାପାଇଁ

ଦୀର୍ଘ ସମୟ ଅପେକ୍ଷା କରି ରହିବି। ସତେ କ'ଣ ବାପା ମା' ମୋତେ ସେତକ କରିବାକୁ ସୁଯୋଗ ଦେବେ? ଝିଅ ଘିଅ ପରା, ବେଶୀ ଦିନ ରଖିହୁଏନାହିଁ। ଝିଅକୁ ଶାଶୁଘରକୁ ବିଦାୟ ନକଲା ପର୍ଯ୍ୟନ୍ତ ବାପ ମା' ମନକୁ ଶାନ୍ତି ମିଳେନାହିଁ। କିଆ ମନରେ ଏକ ବେଦନାର ଭାବ ଖେଳିଗଲା; ତାର ମର୍ମସ୍ଥଳରେ ତୀକ୍ଷ୍ଣ ଶରବିଦ୍ଧ ହେଲାଭଳି ଲାଗିଲା।

ନବୀନ ତାର ଅତି ନିକଟକୁ ଚାଲିଆସି ତାକୁ ହଲାଇ ଦେଇ କହିଲା— ''କିଆ, ତୁ ତୋ' ମନକୁ ଏମିତି ଉଦାସ କରୁଛୁ କାହିଁକି ଯେ? ତୁ ଏମିତି ଭାଙ୍ଗି ପଡ଼ିଲେ ଚଳିବ କେମିତି?''

କିଆ ମୁହଁରେ ଆଶାର ଆଲୋକ ଖେଳିଗଲା। ନବୀନର ପଦଟିଏ କଥାରେ ତା' ଦେହରେ ଆନନ୍ଦର ଲହରୀ ଖେଳାଇଦେଲା। ତାକୁ ଥରେ ସତୃଷ୍ଣ ନୟନରେ ଚାହିଁ କହିଲା।— ''ମୁଁ ଭାଙ୍ଗିପଡୁନାହିଁ। ମନକୁ ମୋର କେତେ ପ୍ରକାର ବୁଝାଉଛି। ଆଜି ମୁଁ ଅପପ୍ରଚାରର ସାମ୍ନା କରିବାକୁ ମୋ ମନରେ ଦମ୍ଭ ଆସିଛି। ମୋ ମନ ଏବଂ ହୃଦୟ ଭିତରେ ଏକପ୍ରକାର ପ୍ରତିରୋଧ ଶକ୍ତି ଜାଗିଉଠୁଛି। ତିଳକୁ ତାଳ କରି ଅନେକ ଲୋକ ଅନେକ କଥା କହୁଛନ୍ତି, କୁହନ୍ତୁ। ମୋ ମନରେ ଯଦି ପାପ ନାହିଁ, ସେ କଥାରେ ମୁଁ କାହିଁକି ଦବିଯିବି? ତାକୁ ଧରିବସିଲେ ମୁଁ ଆଉ ବଂଚିପାରିବିନାହିଁ। ସମୟେ ସମୟେ ସେତକ ଆମକୁ ବୁଝିବାକୁ ପଡ଼ିବ। ମଣିଷକୁ ଖିନ୍‌ଭିନ୍ କରିଦେଇ କେତେକ ସେଥିରେ ଆତ୍ମତୃପ୍ତି ଲାଭକରିଥାନ୍ତି। ଅନ୍ୟ ମନରେ କଷ୍ଟ ଦେଇ କେତେକ ନିଜ ମନରେ ସୁଖ ପାଇଥାନ୍ତି। ଏହା ତ ମଣିଷର ସହଜାତ ପ୍ରବୃତ୍ତି। ନବୀନ ତାକୁ ଆଜି ଆଶ୍ୱାସନା ଦେଉଛି। ତା' ଆଶ୍ୱାସନା କଥାପଦକ ଶୁଣି ତା' ମନରେ ଦମ୍ଭ ଆସିଛି।

ସେ ମନେ ମନେ ଭାବୁଛି— ନବୀନ କ'ଣ ତାର ପୌରୁଷବଳରେ ତାକୁ ନେଇଯିବ କି? ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ। ପ୍ରକୃତରେ ନବୀନର ଯଦି ମୋତେ ପାଇବାପାଇଁ ଆଗ୍ରହ ଅଛି, ତେବେ ତା' ମନରେ କିଛି ଚିନ୍ତା ପଶୁନାହିଁ କାହିଁକି? କିଛି ଉପାୟ ସେ ବାହାର କରିପାରୁନାହିଁ କାହିଁକି?

ଏକ ସନ୍ଦେହଭରା ଚକ୍ଷୁରେ ସେ ନବୀନକୁ ଚାହିଁଲା। ତା' ମନରେ କ'ଣ ଅଛି କେଜାଣି? ମୋ ମନ ସିନା ତା' ପାଖରେ ବନ୍ଧାପଡ଼ିଛି, ମୁଁ ସିନା ତାକୁ ଏତେ ଝୁରିହେଉଛି; ସେ କ'ଣ ସତରେ ମୁଁ ତାକୁ ଭଲପାଇଲାଭଳି ମୋତେ ଏତେ ଭଲପାଉଛି କି? ଏଭଳି ନାନା ପ୍ରଶ୍ନ ତା' ମନରେ ଖେଳିଯାଉଥାଏ। ସତକୁ ସତ ତାକୁ ଜୋରକରି ନବୀନ ଟାଣିନେଇଗଲେ ଗାଁରେ ହଲ୍ଲା ପଡ଼ିଯିବ। ଗାଁଲୋକ ତାକୁ ଥୁ-ଥୁ କରିବେ। ତା' ମା' ବାପ ମୁହଁ ତଳକୁ ହୋଇଯିବ। ନବୀନର ବାପ ମା' ମଧ୍ୟ ଏଥିରେ ସମ୍ମତି ଦେବେନାହିଁ। ଲଜ୍ଜା ଅପମାନରେ

ମୁଣ୍ଡ ଟେକିପାରିବେ ନାହିଁ। ଛି, ଛି, ମୁଁ ଏସବୁ କ'ଣ ଭାବିଯାଉଛି ? ନିଜ ମନର ତୃପ୍ତିପାଇଁ ମୁଁ କ'ଣ ଏତେ ତଳକୁ ଖସିଯିବି ? ବାପ ମା'ଙ୍କ ମୁହଁକୁ ସବୁଦିନପାଇଁ ତଳକୁ ଖସାଇଦେବି ? ନା, ତାହା କେବେ ମୋ ଦେଇ ହୋଇପାରିବନାହିଁ। ନବୀନ ମଧ୍ୟ ସେତକ କରିବନାହିଁ। ସେ ଯାହା କରେ, ଭାବିଚିନ୍ତି କରେ। ଲୋକନିନ୍ଦାକୁ ନବୀନର ଭାରି ଡର।

ଏହା ଭାବି କିଆ ମୁହଁରେ ବିଷାଦର ଛାୟା ଖେଳିଯାଉଥାଏ। ଆଖିରେ ଲୁହ ଭରିଯାଉଥାଏ। ସେ ବ୍ୟତିବ୍ୟସ୍ତ ହୋଇପଡୁଥାଏ। ତାକୁ ଚାରିଆଡ଼ ଅନ୍ଧାର ଦେଖାଯାଉଥାଏ। ବାହାଘର ପିଲାଙ୍କ ଧୂଳିଘର ଖେଳ ନୁହେଁ ପରା ? ସମାଜର ରୀତିନୀତି ଚାଲିଚଳନର ଏକ ଧରାବନ୍ଧା ନିୟମ ଭିତରେ ପୁରୁଷ ଏବଂ ନାରୀର ଦୁଇ ହୃଦୟର ଏକ ମଧୁର ମିଳନ। ସେଥିପାଇଁ ସମାଜର ଏକ କଠୋର ଶୃଙ୍ଖଳା ମଧ୍ୟରେ ଦୁଇ ଅପରିଚିତ ପୁରୁଷ ନାରୀଙ୍କୁ ଏକସୂତ୍ରରେ ଛନ୍ଦିଦେଇ ସମାଜ ତାର କର୍ତ୍ତବ୍ୟ ସମାପନ କରିଚାଲିଛି। କାଳକାଳଧରି ଏହି ଧରାବନ୍ଧା ନିୟମକୁ ସେ ମାନିଚାଲିଛି। ପିଲାବେଳେ ସେ ନବୀନକୁ କେତେ ଗାଳିଦେଇଛି, ତା' ଉପରେ ରାଗ ଅଭିମାନ କରିଛି। ତଥାପି ସେ କେବେ ତା ଉପରେ ରାଗିନାହିଁ, ତାକୁ ଅଭିମାନ କରିନାହିଁ; ବରଂ ହସି ହସି ତା' କଥାକୁ ସହଜ ସରଳ ଭାବରେ ହସରେ ଉଡ଼ାଇଦେଇଥାଏ। କେବେକେବେ ରାଗ ଅଭିମାନରେ ସେ କାନ୍ଦି-ପକାଇଲେ, ସେ କୁଁଆଁଳେଇ ବୁଝାଇ ତାକୁ ସାନ୍ତ୍ୱନା ଦିଏ, ତା' ମୁହଁରେ ହସ ଚହଟାଇଦିଏ। ତା'ରି କଥା ପଦକ ଶୁଣିଲେ ସବୁ ରାଗ ଅଭିମାନ ଭୁଲିଯାଏଁ। ମନ ମୋର ପୁଲକିତ ହୋଇଉଠେ। ସେହି ପିଲାଦିନର ସାଥୀ ନବୀନ ଆଉ ତାର ହୋଇ ରହିବନାହିଁ; ସେ ତାର ପରହୋଇଯିବ। ପରକୁ ସେ ଏଥର ଆପଣାର କରିବାପାଇଁ ନୂଆ ଚେଷ୍ଟା କରିବ। ଏତକ ଜାଣିଲାପରେ ମନ ତାର ଦୋହଲିଯାଏ, ଦେହ ଶିହରିଉଠେ। ପୁଣି ମନକୁ ମନ ସାନ୍ତ୍ୱନା ଦିଏ। ମୋତେ ତା'ଠୁଁ କିଏ ଛଡ଼ାଇନେଇପାରିବ ନାହିଁ। ଯେଉଁଠି ଥିଲେ ମଧ୍ୟ ମୁଁ ତାର... ସେ ମୋର। ସେହି ତା'ରି ପିଲାଦିନର ସାଥୀ ନବୀନ ତାକୁ କେତେ କଥା ପଚାରୁଛି। ମାତ୍ର କିଆ ତାକୁ କିଛି ଉତ୍ତର ଦେଇପାରୁନାହିଁ। କିଆଠୁ ଉତ୍ତର ନ ଶୁଣି ନବୀନର ମୁହଁ ଝାଉଁଳିଯାଉଥାଏ।

ନବୀନର ବେଦନାଭରା ମୁହଁକୁ ଦେଖି କିଆ ମନରେ ଆଶଙ୍କା ଖେଳିଗଲା। ସେ ମନରେ କେତେ କଥା ପାଂଚି ଆସିଥିଲା; ମାତ୍ର ଏ କ'ଣ ସେ ଗୋଟିଏ ବି କଥା ନବୀନକୁ କହିପାରିଲାନାହିଁ। ହୃଦୟ ତାର ଅସ୍ଥିର ହୋଇଉଠୁଥିଲା। ତାକୁ ନବୀନ ଅବିଶ୍ୱାସ କରୁଛି କି ? ତାର ବାହାଘର ଭୋଜିକୁ ଡାକିବୁ କି ନାହିଁ ବୋଲି ପଚାରୁଛି ?

କିଆ ତାର ଅତି ନିକଟକୁ ଚାଲିଆସି ଥରିଲା କଣ୍ଠରେ ନବୀନର ଉଦାସ ମୁହଁକୁ ଚାହିଁ କହିଲା– "ହଁ, ମୋର ବାହାଘର ଠିକ୍‌ହୋଇଯାଇଛି। ବାପାଙ୍କ ମାମୁଘର ପୁଅ। ଆମ ଜାତି ଲୋକ। ମୁଁ ତ ଏତେକଥା ଜାଣିନଥିଲି। ବାପ ମା' କଥା ହେଉଥିବା ଯାହା ଶୁଣିଥିଲି।"

ସେ ତାର ଶାନ୍ତ ମଳିନ ମୁହଁରେ ଏକ ସ୍ନିଗ୍ଧ ଦୃଷ୍ଟି ନବୀନ ଉପରେ ରଖି ଏତକ କହିଲା। ନବୀନ ଅତି ନିକଟରୁ କିଆର କଥାସବୁ ଶୁଣିଗଲା। କିଆ ମନର ଭାବନା ଜାଣିବାକୁ ତା' ମନରେ ଉତ୍କଣ୍ଠା ଖେଳିଗଲା। କୌତୂହଳୀ ହୋଇ ମୁହଁରେ ଉଦାସ ହସ ଫୁଟାଇ ପୁଣି ପ୍ରଶ୍ନ କଲା– ତୋ' ବର କେମିତି, ଦେଖିଛୁ ନା ?

ନବୀନର ଏଭଳି ପ୍ରଶ୍ନରେ ଚମକିଉଠିଲା। ତାର ସ୍ୱର ତାକୁ କେମିତି ଅସ୍ୱାଭାବିକ ମନେହେଲା। କିଆ ମୁହଁର ସରସତାଟିକକ ଲିଭିଗଲା। ମୁଣ୍ଡ ହଲାଇ 'ନା'କଲା। ସେହି ଅଜଣା ପୁରୁଷର କଥା ଭାବି ମୁହଁ ତାର ଗମ୍ଭୀରହୋଇଗଲା।

–"ମୁଁ ଶୁଣିଛି, ସେ ତ ସୁନ୍ଦର ପିଲାଟା।" –ନବୀନ କହିଲା।

କିଆ ଛଳଛଳ ଆଖିରେ କେବଳ ତାକୁ ଅନାଇରହିଲା। ନବୀନ କିଆକୁ ସତୃଷ୍ଣ ନୟନରେ କୋହଭରା ଚାହାଣିରେ ଅନାଇରହିଥାଏ। ତାର ଉଚ୍ଛୁଳା ଯୌବନ ଆଜି ତା' ମନରେ ପ୍ରତିକ୍ରିୟା ସୃଷ୍ଟି ନ କରି ଏକ ବିଷାଦର ଭାବ ଖେଳାଇଦେଉଥାଏ – ତାର ପ୍ରାଣର କିଆ, ତାର ଅତି ଆପଣାର କିଆ ଆଉ ତାର ହୋଇପାରିବ ନାହିଁ। ସେ ଆଉ ଜଣକର ଜାୟା ହେବାକୁ ଯାଉଛି। ଯାହା ସେ ନିଜେ ଭାବି ନଥିଲା, ଆଜି ତାହା ସତ ବୋଲି ମନେହେଉଛି। ଏତେଦିନର ହସଖୁସି ଆଜି ସବୁ ଛିଣ୍ଡିଗଲାଭଳି ମନେ ହେଉଛି।

ନବୀନର ଅନ୍ତର ଭିତରୁ ଏକ ଦୀର୍ଘଶ୍ୱାସ ବାହାରିଆସିଲା। କିଆ ପାଖରେ ଛିଡ଼ାହୋଇଥାଏ। ନବୀନର ନିଶ୍ୱାସ ତାର ଛାତିରେ ବାଜୁଥାଏ। ତାର ତପ୍ତ ନିଶ୍ୱାସରେ ପୂରିରହିଛି କେତେ ଯେ ମାଦକତା ... ମନକୁ ସମ୍ମୋହିତ କରିଦିଏ। ସେହି ଉଷ୍ମ ନିଶ୍ୱାସରେ ଛାତି ତାର ଥରିଉଠିଲା। ମନ ଦୋହଲିଗଲା। ନବୀନକୁ ତା' ମନକଥା ପଚାରିବ ବୋଲି ସେ ଭାବୁଥିଲା। ମାତ୍ର ମୁଖଲଜ୍ଜାରେ ସେ କିଛି ପଚାରିପାରିଲାନାହିଁ। ଏମିତି କିଛିକ୍ଷଣ କଟିଗଲାପରେ, ନବୀନକୁ ସେ ପଚାରିବ ବୋଲି ପାଟି ତାର ଖଜବଜ ହେଉଥାଏ। ତଥାପି ମନର କୋହକୁ ମନରେ ଚାପିରଖି ଥରିଲା କଣ୍ଠରେ ଡାକିଲା– "ନ ... ବୀ ... ନ ...!"

କିଆର ଏଭଳି ଅସ୍ୱାଭାବିକ ଥରିଲା କଣ୍ଠର ଡାକ ଶୁଣି ନବୀନ ତାକୁ ବିସ୍ମୟରେ ଅନାଇ ପ୍ରଶ୍ନିଳ ଦୃଷ୍ଟିରେ ତା'ରି ମୁହଁକୁ ଚାହିଁରହିଲା। କିଆ ଥରିଲା କଣ୍ଠରେ କହିଲା– "ନବୀନ, ତୁ ବି ବାହାହୋଇପଡ଼।"

କିଆ ଏତକ କହି ନବୀନ ମୁହଁକୁ ଅନାଇରହିଲା ତା'ଠୁ ଉତ୍ତର ଶୁଣିବ

ବୋଲି। ଆଖିରୁ ତାର ଅମାନିଆ ଲୁହ ଥପ୍‌ଥପ୍ ହୋଇ ଗଡ଼ିପଡୁଥାଏ। ନବୀନ କିଆର ଏଭଳି କଥା ଶୁଣି ଚମକିପଡ଼ିଲା– ଆଜି ଏ କି କଥା ସେ ଶୁଣୁଛି? କିଆକୁ ଥରେ ଭଲକରି ଦେଖିନେଇ ତା' ମୁହଁରେ ଆଖି ରଖି କହିଲା– କାହାକୁ ବାହାହେବି? କିଏ ମୋତେ ବାହାହେବ? ଯାହାକୁ ବାହାହେବି ବୋଲି ମନ ମୋର ଛନଛନ ହେଉଥିଲା, ଯାହାକୁ ମୋର ହୃଦୟର ସିଂହାସନରେ ବସାଇରଖିଥିଲି . . . ସେ . . . ତ'' –ସେ ଆଉ କହି ପାରିଲା ନାହିଁ। ଶ୍ୱାସନଳି ରୁଦ୍ଧ ହୋଇଗଲାଭଳି ମନେହେଲା। ତାର ଆଖିରୁ ଦୁଇବିନ୍ଦୁ ଅଶ୍ରୁ ଗଡ଼ିପଡ଼ିଲା। ମନରେ ଏକ ଅକୁହା ବେଦନା ଖେଳିଗଲା। କିଆ ସ୍ତମ୍ଭୀଭୂତ ହୋଇ ଛିଡ଼ାହୋଇରହିଲା; ପାଟିରୁ କଥା ବାହାରିଲାନାହିଁ।

ସେ କଣ ଏଭଳି ଉତ୍ତରଟିଏ ଶୁଣିବ ବୋଲି ଆଶାକରିଥିଲା? ମୁଁ କାହିଁକି ଏଭଳି ପ୍ରଶ୍ନ କରି ତା' ମନରେ କଷ୍ଟ ଦେଲି? ଖାଲି ତା' ମନରେ ଯେ କଷ୍ଟ ହେଲା ସେତକ ନୁହେଁ, ମୋ ମନରେ ମଧ୍ୟ କେତେ ଯେ କଷ୍ଟ ହେଲା। ନବୀନର ଆଶାଟିକକ ସତରେ ସବୁଦିନ ପାଇଁ ମଉଳିଗଲା। ଆଶା ମଉଳିଗଲେ ମନରେ କେତେ କଷ୍ଟ ହୋଇଥାଏ, ଅନୁଭବୀହିଁ ଜାଣିପାରିବ। ନବୀନ ଏକ ନିରାଶ ଚାହାଣିରେ କିଆକୁ ଅନାଇରହିଲା। ଉଭୟେ ନୀରବରେ ଛିଡ଼ାହୋଇରହିଲେ।

ଏଭଳି କେତେ ସମୟ ଯେ ନୀରବରେ ଛିଡ଼ାହୋଇ ରହିଲେ, ସେମାନେ ଜାଣିପାରିଲେନାହିଁ। କିଆ ଯେତେବେଳେ ସଚେତନ ହୋଇଉଠିଲା, ସେ ଆଉ ନବୀନ ଏଭଳି ଛିଡ଼ାହୋଇଥିବା ଯୋଗୁଁ ତା' ମନରେ ଆଶଙ୍କା ଖେଳିଗଲା। କାଳେ କିଏ ଦେଖିଦେବ? କେତେ କଥା କିଏ କହିବ? ମାଳତୀ ମିଛଟାରେ ମୋ ନାଁରେ କେତେକଥା କହି ଗାଁରେ ମୋର ମାନମହତକୁ ତଳକୁ କରିଦେଇଛି। ବାପ ମା'ଙ୍କ ମନରେ କେତେ କଷ୍ଟ ହୋଇଛି। ପୁଣି ଆଜି କଥାକୁ ଯୋଡ଼ାଯୋଡ଼ି କରି ପୁଣି ନାଚ ଲଗାଇଦେଲେ ଗାଁରେ ମୁଁ ଆଉ ମୁହଁ ଦେଖାଇପାରିବିନାହିଁ।

ଭାବବିହ୍ୱଳ ହୋଇ କିଆ କହିଲା– ''କାଳେ କିଏ ଦେଖିଦେବ, ମିଛ ସତ ଯୋଡ଼ି କେତେ କଥା ଗାଁରେ ପ୍ରଚାର କରିଦେବ।''

–''ସତେ ତ।'' ନବୀନର ମନରେ ମଧ୍ୟ ଆଶଙ୍କା ଖେଳିଗଲା। ମିଛଟାରେ ଗୋଟିଏ ନିରୀହ ନିଷ୍ପାପ ଝିଅ ନାଁରେ କାହିଁକି କିଏ କହିବ? ତା' ନାଁରେ କଳଙ୍କ ବୋଳିବ। ସେ ମଧ୍ୟ ସଚେତନ ହୋଇଉଠିଲା।

କିଆ ତା'ଠୁ ଟିକିଏ ଦୂରେଇ ଯାଇ ଆଗକୁ ପାଦ ବଢ଼େଇଲା। ଆଗକୁ ସିନା ଯାଉଥାଏ, ମନ କିନ୍ତୁ ନବୀନଠୁ ଦୂରେଇଯିବାପାଇଁ ଚାହୁଁନଥାଏ। ତା' ସହିତ ପାଖକୁ ପାଖ ଛିଡ଼ାହୋଇ କଥା କହିବାକୁ ମନ ତାର ବ୍ୟାକୁଳ ହେଉଥାଏ। ମାତ୍ର ଏଣେ ଲୋକଲଜ୍ଜା, ମିଛ ସତ ଯୋଡ଼ି କିଏ କ'ଣ କହିଦେବ ଭାବି ମନ

ଶଙ୍କିଯାଉଥାଏ । ମୁହଁରେ ଅଜଣା ଆଶଙ୍କା ଖେଳିଯାଉଥାଏ ।

କିଆ କିଛି ଦୂର ଚାଲିଗଲାପରେ ନବୀନ ଭାବବିହ୍ୱଳ ହୋଇ ଡାକିଲା— ‘‘କି . . . ଆ !’’

ନବୀନର ସେହି ମଧୁର ଡାକ ଶୁଣି ତା’ ହୃଦୟରେ ପୁଲକ ସୃଷ୍ଟିହେଲା । ଭାବବିହ୍ୱଳ ହୋଇ କିଆ ଛିଡ଼ାହୋଇ ପଛକୁ ବୁଲି ତାକୁ ଅନାଇଲା । ନବୀନର ସେହି ଚାହାଣି ସତେ କେତେ ମର୍ମସ୍ପର୍ଶୀ; କେତେ ବେଦନାଦାୟକ । ଅତୀତରେ ନବୀନ ତାକୁ ଏମିତି କେତେ ଡାକିଛି, ଯେଉଁ ଡାକରେ ତାର ହୃଦୟରେ ଆନନ୍ଦର ଲହରୀ ଖେଳାଇଦିଏ । ମାତ୍ର ଆଜିର ଡାକ, ଆଜିର ଦରଦୀ ସ୍ୱର କେବେ ସେ ଶୁଣିନଥିଲା । ସେ ଡାକ, ସେ ସ୍ୱର କେତେ ହୃଦୟସ୍ପର୍ଶୀ; କେତେ ମାଦକତା ଭରିରହିଛି । ସେ ଡାକ ତା’ ହୃଦୟରେ ପୁଲକମିଶା କୋହ ସୃଷ୍ଟିକରୁଛି ।

କିଆ ଛିଡ଼ାହୋଇଯାଇ ଅପଲକ ନୟନରେ ନବୀନକୁ ଅନାଇରହିଲା । ନବୀନ ଭାବବିହ୍ୱଳ ହୋଇ କିଆର ଆଖିରେ ଆଖି ମିଳାଇ ଥରିଲା କଣ୍ଠରେ ପ୍ରଶ୍ନକଲା— ‘‘କି . . . ଆ . . . ସତରେ ତୁ ମୋତେ ଭଲପାଉ ନା ?’’

କିଆର ଆଖି ଦୁଇଟି ବିସ୍ଫାରିତ ହୋଇଗଲା । ତାର ସର୍ବାଙ୍ଗରେ ଶିହରଣ ଖେଳିଗଲା । ନବୀନର ଏଭଳି ମଧୁର ପ୍ରଶ୍ନରେ କିଆ କ’ଣ ଉତ୍ତର ଦେବ . . . ଏ ପ୍ରଶ୍ନର ଉତ୍ତର ଦେବାକୁ ତା’ଠି କ’ଣ ବାକି ରହିଛି ? ତାର ମନକୁ ସେ ନବୀନକୁ ବହୁ ଆଗରୁ ଅର୍ପଣ କରିସାରିଛି । ତଥାପି ନବୀନ ତା’ ତୁଣ୍ଡରୁ ତାର ମନ ଏବଂ ହୃଦୟର ସେହି ପଦକ କଥା ଶୁଣିବାପାଇଁ ବ୍ୟାକୁଳ ହୋଇ ତାକୁ ସତୃଷ୍ଣ ନୟନରେ ଅନାଇରହିଛି ।

କିଆ ତୁଣ୍ଡରୁ କଥା ସ୍ଫୁରିଲା ନାହିଁ । ସେ କେବଳ ନବୀନକୁ ପଲକ-ବିହୀନ ଆଖିରେ ଅନାଇରହିଥାଏ । ନବୀନ ବ୍ୟାକୁଳ ହୋଇ ପୁଣି ପ୍ରଶ୍ନ କଲା— ‘‘ସତରେ ତୁ ମୋତେ ଭଲପାଉ, ନା ?’’

ନବୀନର ସେହି ପ୍ରଶ୍ନିଳ ମୁହଁକୁ ସତୃଷ୍ଣ ନୟନରେ ଚାହିଁ କିଆ କହିଲା— ‘‘ହଁ ଗୋ ହଁ, ବହୁତ ଭଲପାଏ । ମୋ ଜୀବନଠୁଁ ମଧ ବଳି ଭଲ ପାଏ ।’’ —ଏତିକି କହି ନବୀନର ଫୁଟିଉଠୁଥିବା ଉଲ୍ଲସିତ ଭାବକୁ ଅନାଇ ତା’ ମନର ଭାବକୁ ଖୋଲିଦେଇଥିବା ଯୋଗୁଁ ତା’ ମନ ମଧ ହାଲୁକା ଲାଗିଲାଭଳି ମନେହେଲା । ନବୀନର ମୁହଁର ହସ ଦେଖି ତା’ ମୁହଁରେ ମଧ ହସ ଚହଟିଆସିଲା । ସେ ଏକ ବଙ୍କିମ ଚାହାଣି ପକାଇ ଦୌଡ଼ି ଦୌଡ଼ି ସେଠୁ ପଳାଇଗଲା ।

ନବୀନ ଏତିକି ଶୁଣିଲାପରେ ତାର ମନର ସବୁ ଚିନ୍ତା କ୍ଷଣକେ କୁଆଡ଼େ ଉଭେଇଗଲା । ମନ ଆନନ୍ଦରେ ଉଲ୍ଲସିତ ହୋଇଉଠିଲା । ଭାବନାରେ ଜୁଆର ସୃଷ୍ଟିହେଲା  ମୁହଁରେ ଆନନ୍ଦର ଲହରୀ ଖେଳି ମନ ଉଡ଼ିବୁଲିବାକୁ ବ୍ୟାକୁଳହେଲା ।

ନାରୀ ଥରେ ପ୍ରେମରେ ପଡ଼ିଲେ ତନୁ, ମନ ଓ ପ୍ରାଣକୁ ତାର ପ୍ରେମିକ ପାଖରେ ଅର୍ପଣ କରିବାକୁ ପଛାଇଯାଏନାହିଁ। ପ୍ରେମର ପୂଜାଫୁଲ ଅର୍ପଣ କରି ସେ ପାଇଥାଏ ଆନନ୍ଦ, ପରମ ତୃପ୍ତି। ତାର ତନୁ ମନରେ ଖେଳେ ବିଜୁଳିର ଚମକ। ମନ ପୁଲକିତ ହୋଇଉଠେ। ସେ ଆତ୍ମବିଭୋର ହୋଇଉଠେ। ଆଜି ସେହିଭଳି ଅବସ୍ଥାରେ କିଆ ତାର ପ୍ରାଣର ଆବେଗଟିକକ ନବୀନ ଆଗରେ ଖୋଲିଦେଇଗଲା। ତା'ର ମନର କଥା ଖୋଲିଦେଲା ବୋଲି ଲାଜରେ ସେ ଦୌଡ଼ିପଳାଇଗଲା। ସେ କେଡ଼େ ଲାଜକୁଳୀ! ତାର ହୃଦୟ କେଡ଼େ ସରଳ, କେତେ କୋମଳ! ନବୀନ ଭାବବିହ୍ୱଳ ହୋଇଯାଇଥାଏ। କିଆର କଥା, ତା'ର ଚାହାଣୀ ମନେପକାଇ ସେ ପୁଲକିତ ହୋଇଉଠୁଥାଏ।

କିଆ ମୁହଁରେ ଭରିରହିଥାଏ ହସ, ଦେହରେ ଉଛୁଳା ଯୌବନ। ସତରେ ସେ କେଡ଼େ ଲୋଭନୀୟ, କେଡ଼େ ଆକର୍ଷଣୀୟ! ଯାହା କିଛି ତାର କହିବାର ଥିଲା, ସବୁ କିଛି ଆଜି ସେ ଖୋଲିଦେଲା। ଏହା ତାର ହୃଦୟର କଥା। ଦୁହିଁଙ୍କ ହୃଦୟ ଦୁହେଁ ଆଜି ଖୋଲିଦେଇଛନ୍ତି— ଆପେ ଆପେ ଖୋଲିଯାଇଛି।

ନବୀନର ମୁହଁରେ ହସ ଚହଟିଯାଇଥାଏ। ଆନନ୍ଦରେ ସେ ଅଧୀର ହୋଇପଡ଼ିଥାଏ। ମନ ହାଲୁକା ଲାଗୁଥାଏ। ଉଲ୍ଲସିତ ମନରେ ଅନାଇରହିଥାଏ। ଆକାଶ ନିର୍ମଳ। ଚତୁର୍ଦ୍ଦିଗରେ ସୁନେଲି କିରଣ ବିଛାଇ ହୋଇ ପଡ଼ିଥାଏ। ଆକାଶରେ ଦଳ ଦଳ ବିହଙ୍ଗ ଉଡ଼ିବୁଲୁଥାନ୍ତି। ଶୀତଳ ପବନ ବୋହି ମନକୁ ତାର ପୁଲକିତ କରିଦେଉଥାଏ। ନବୀନ ଆତ୍ମ-ବିଭୋର ହୋଇଯାଇଥାଏ। ତା' ମନରେ ଏଭଳି ଆନନ୍ଦ ସେ ଜୀବନରେ କେବେ ଅନୁଭବ କରିନଥିଲା ଭଳି ମନେହେଉଥାଏ।

## (୧୯)

—''ଆରେ ତମେ ସବୁ ଗଲ କୁଆଡ଼େ? କାହାର ଦେଖା-ଦର୍ଶନ ନାହିଁ?'' ତରତର ହୋଇ ମଦନ ବାହାରୁ ପାଟିକରି ଆସିଲା।

ସ୍ୱାମୀର ଡାକ ଶୁଣି ଘର ଭିତରୁ ରେବତୀ ମନ ଆଶଙ୍କାରେ ବାହାରିପଡ଼ିଲା —''କ'ଣ ହେଲା କି? ଏତେ ପାଟି କରୁଛ। କ'ଣ କିଛି ମିଳିଗଲା କି?''

—''ହଁ ପରା, କିଛି ମିଳିଛି ବୋଲି ତୋତେ କହିବାପାଇଁ ଚାଲିଆସିଲି।'' ମଦନ ହସହସ ମୁହଁରେ ରେବତୀକୁ ଅନାଇଲା।

—''କ'ଣ ମିଳିଛି, କହୁ ନା?'' ରେବତୀ ବ୍ୟଗ୍ର ହୋଇ ଉତ୍ସୁକ ମନରେ ତା' ମୁହଁକୁ ଚାହିଁରହିଲା।

ମଦନ ମୁହଁରେ ହସ ଫୁଟାଇ କହିଲା – ''ଗତକାଲି ରତନା ହାଟକୁ ଯାଇଥିଲା । ରତନ ହାତରେ ମାମୁ ଖବର ଦେଇଛନ୍ତି । ପଅରଦିନ ମଙ୍ଗଳ ଯାଇ ବୁଧବାର ଦିନ ସେ ଆଉ ତାଙ୍କ ନାତି ଆସିବେ ଝିଅ ଦେଖି ।'' କେଡ଼େ ଶୁଭ ଖବର ଆଣିଦେଇଛି ।

ରେବତୀ ଆଗ୍ରହରେ କଥାଟା ଶୁଣି ମୁହଁରେ ହସ ଚହଟାଇ କହିଲା – ଯେଉଁ ଖବର ପାଇଁ ମୁଁ ଏତେଦିନହେଲା ଟାକିରହିଛି, ସେହି ଶୁଭ ଖବର ଆସି ପହଞ୍ଚିଯାଇଛି । ହେଇଟି, ତୁମ ମାମୁ ଆସିବେ, ତାଙ୍କ ସହିତ ତାଙ୍କ ନାତି ଆସିବେ – ଆମ ନୂଆ ଜ୍ୱାଇଁ ମ ! ଆମକୁ କେତେ କଥା କରିବାକୁ ପଡ଼ିବ । ଏ ମା'... ମୋତେ କେତେ କାମ କରିବାକୁ ପଡ଼ିବ । ଦିନ ଆଉ କାହିଁ ? ରାତି ପାହିଲେ ଆଉ ଦୁଇଟିଦିନ ମାତ୍ର । ସବୁକାମ ମୋତେ ସାରିବାକୁ ପଡ଼ିବ । ଘରର ଲିପାପୋଛାଠୁଁ କେତେ କାମ କରିବାକୁ ପଡ଼ିବ । ହଁ ଶୁଣ, ଗାଁର ଦୁଇ-ଚାରି ଜଣଙ୍କୁ ଡାକିଦେବ । ଗାଁର ମୁରବିମାନେ ଥିବେ । ତାଙ୍କ ଆଗରେ କଥା ପଡ଼ିବ । ଦେବାନେବା କଥା ଛିଣ୍ଡିଯିବ । ବିଭାତିଥି ମଧ ତା' ସଙ୍ଗେ ଠିକ୍‌ହୋଇଯିବ । ଘରକୁ କୁଣିଆ ଆସିବେ । ବନ୍ଧୁବାନ୍ଧବ ଆସିବେ ।

ରେବତୀ ସ୍ୱାମୀକୁ ଚାହିଁ କଥାଗୁଡ଼ିକ କହିଚାଲିଥାଏ । ମଦନ ଆଉ ଟିକିଏ ତା' ମୁହଁକୁ ଚାହିଁ କହିଲା – ''କ'ଣ ଆଉ କିଛି ବାକି ରହିଗଲା କି ?''

–''ଘରକୁ ପ୍ରଥମ କରି ଏତେ ବର୍ଷ ପରେ ମାମୁ ଆସୁଛନ୍ତି । ତାଙ୍କ ସଙ୍ଗେ ତାଙ୍କ ନାତି ଆସୁଛନ୍ତି । ସେ ତ ପରନୁହନ୍ତି, ଘରପୁଅ ଭଳି । ତାଙ୍କୁ ବିଦାୟ ଦେଲାବେଳେ ଖଣ୍ଡିଏ ଲେଖାଏଁ ଧୋତି, ଗାମୁଛା ଦେଲେ କେମିତି ହୁଅନ୍ତା ?''

ମଦନ କହିଲା – ଭଲହୁଅନ୍ତା, ତା' ତ ଆମ ବିଧି ବିଧାନ । ସେତକ ଆମକୁ କରିବାକୁ ପଡ଼ିବ ।

ତା' କଥାକୁ ତାର ସ୍ୱାମୀ ଅନୁମୋଦନ କରିଥିବା ଜାଣି ରେବତୀ ଖୁସି ହୋଇ କହିଲା – ବନ୍ଧୁବାନ୍ଧବ ଆସୁଛନ୍ତି । ଘର ଇଷ୍ଟଦେବୀଙ୍କୁ ଭୋଗ ଦେବି । ଘରେ ଆମର କୁକୁଡ଼ା ଅଛି । ତହିଁରୁ ତିନି-ଚାରିପଟ ମାରିଦେବା । ବାକି ରହିଲା ପିଠା । ହଁ, ମୁଁ ଆରିସା ପିଠା କରିଦେବି । ପୁରୁଣା ଗୁଡ଼ ରଖିଛି । ସେଥିକି ତୁମେ ଚିନ୍ତାକରନାହିଁ । ମୁଁ ସବୁ ଠିକ୍‌ଠାକ୍ କରିଦେବି । କାହାଠୁ ପଦେ କଥା ଯେମିତି ଶୁଣିବାକୁ ନଥିବ ।''

କିଛିକ୍ଷଣ ଭାବି ପୁଣି ତାର ସ୍ୱାମୀର ମୁହଁକୁ ଚାହିଁ କହିଲା – ''ତୁମେ ବନ୍ଧୁ ଚରଚ୍ଚାପାଇଁ ଯୋଗାଡ଼କରିଦିଅ । ଯାହାକୁ ଖବର ଦେବାକଥା, ଆଜିହିଁ ଦେଇଦିଅ । ଆଗରୁ ଖବର ନ ଦେଲେ କିଏ କ'ଣ କହିବ । କାହାର କେଉଁଠି କାମ ରହିଯାଇଥିବ, ସବୁ ଦେଖିକରି କରିବାକୁ ପଡ଼ିବ ।'' ରେବତୀ ଏକ ପୋଖତ୍ ଘରଣୀଭଳି ସବୁକଥା

ଗୋଟି ଗୋଟିକରି କହିଦେଇଯାଉଥାଏ । ମଦନ ତାର କେଉଁ କଥାକୁ ଅମଙ୍ଗ ହେବାର ନାହିଁ। ବାପ ହିସାବରେ ଝିଅ ପାଇଁ ଏତକ କରିବାକୁ ପଡ଼ିବ– ସେ ଆଉ କ'ଣ ଅଧିକା କରୁଛି କି ?

(୨୦)

କିଆ ସକାଳୁ ଉଠି ଦେଖିଲା; ଘର ଲିପାପୋଛା ହୋଇ ପରିଷ୍କାର-ପରିଚ୍ଛନ୍ନ ଦେଖାଯାଉଛି। ଗୋବର ସହିତ ପୋଡ଼ାପାଳର ଗୁଣ୍ଡ ମିଶାଇ ଲୁଣ୍ଡା କରାଯାଇଛି। ପରିଷ୍କାର ଭାବରେ ଝାଡୁ କରିଦିଆଯାଇଛି। ଏତେ ସକାଳୁ ସବୁ କାମ ସରିଯାଇଛି। କିଆ ତା' ମା'ର କାମ କରିବା ଢଙ୍ଗ ଦେଖୁଥାଏ; ମା'ର ପାଦ ଆଉ ଥୟ ଧରି ରହୁନଥାଏ। ବଡ଼ ବ୍ୟସ୍ତହୋଇ ସବୁ କାମ ଗୋଟି ଗୋଟି କରିଯାଉଥାଏ। ମା' ତାକୁ ଆଗରୁ କହିଦେଇଛି– କାଲିକି ଘରକୁ କୁଣିଆ ଆସିବେ। କିଆ ସବୁ କଥା ଜାଣିଯାଇଛି। କାମଦାମ କଥାବାର୍ତ୍ତାରୁ ସବୁକଥା ସେ ଅନୁମାନ କରିନେଇଛି।

ତାକୁ ଦେଖିବାପାଇଁ ବରଘର ଲୋକ ଆସୁଛନ୍ତି। ବାପା ମା'ଙ୍କ କଥାବାର୍ତ୍ତାରୁ ଆଉ କିଛି ଅଛପା ରହିନଥାଏ। ସବୁ ସେ ଜାଣିଯାଇଥାଏ। ମନ ଆଜି ତାର ଉଦାସ ହୋଇଯାଇଛି। ଏକ ଅଜଣା ଆଶଙ୍କାରେ ମନ ତାର ଥରିଉଠୁଥାଏ। ସେହି ଯେଉଁ ଅଜଣା ପୁରୁଷ, ଯେ ତାକୁ ଦେଖିବାପାଇଁ ଆସୁଛି, ସେ ତାକୁ ଦେଖି ପସନ୍ଦକଲେ ତାର ବାହାଘର ଠିକ୍‌ହୋଇଯିବ। ପୁରୁଷର ପସନ୍ଦ ଉପରେ ସବୁ ନିର୍ଭର କରୁଛି। ସେ କେବଳ ଜିଅଁନ୍ତା ପୁତଳୀ ସଦୃଶ ତା' ଆଗରେ ବେଶ ହୋଇ ଆସି ଛିଡ଼ାହେବ। ସେ ତାକୁ ଦେଖି ତା' ମନପସନ୍ଦ ହେଲେ ସବୁ ଠିକ୍‌ଠାକ୍ ହୋଇଯିବ। ତାର କହିବାର କିଛି ଅଧିକାର ନାହିଁ। ବାପ ମା' ଯାହା କହିବେ, ଯାହା କରିବେ, ସେଥିରେ ସେ ହଁ ଭରିବା ଛଡ଼ା ଅନ୍ୟ କିଛି କହିବାର ନାହିଁ।

ମନ ତାର ବିଦ୍ରୋହୀ ହୋଇଉଠିଲା। ତାର କ'ଣ ନିଜର କିଛି କହିବାର ନାହିଁ? ସେ ଏତେ ଅଲୋଡ଼ା ହୋଇପଡ଼ିଛି? ହାଟ ବଜାରରେ ଛେଳିମେଣ୍ଢା ଦେଖି ଗରାଖ କିଣିଲାଭଳି ସେ କେବଳ ଜଣକ ପାଖରେ ତା'ରି ପସନ୍ଦ ମୁତାବକ ସବୁଦିନପାଇଁ ତାର ମନ ପ୍ରାଣ ଶରୀରକୁ ଅର୍ପଣ କରିଦେବ!! କିଆ ମନରେ ଅନେକ ପ୍ରଶ୍ନ ଖେଳିଗଲା। ସେ କେତେ କ'ଣ ଭାବିଚାଲିଛି। ଭାବନା ଭିତରେ ମଣିଷ ବେଳେବେଳେ କେତେ ଦୂରକୁ ଉଡ଼ିଚାଲିଯାଏ।

ମାତ୍ର ଭାବନା ଆଉ ବାସ୍ତବତା ମଧ୍ୟରେ କେତେ ଯେ ତଫାତ୍, କେତେ ଯେ ତାରତମ୍ୟ ରହିଥାଏ, ତାର କଳନା କରିହେବନାହିଁ। ବାପ ମା'କୁ କିଆ ମନାକରିଦେବ– ସେ ବାହାହେବନାହିଁ। ଏମିତି ବାହା ନହୋଇ ଅନେକ ଝିଅ

ରହିଯାଉଛନ୍ତି, ସେ ବି ସେମିତି ବାହା ନହୋଇ ରହିଯିବ। କିଏ ବି ତାକୁ ପଦଟିଏ ପଚାରିଲେ ନାହିଁ? ତାର ମତାମତର ଆବଶ୍ୟକତା ବା କ'ଣ? ସତେ କ'ଣ ସେ ଛେଳି-ମେଣ୍ଢାଠୁ ମଧ୍ୟ ଏତେ ହୀନ! ନାରୀ ଜୀବନ ସତେ କେତେ ହୀନମାନ। ଆଜି କିଛି କହିପାରୁନାହିଁ କି ସହିପାରୁନାହିଁ। ମନ ମୋର ଡହଳବିକଳ ହୋଇଯାଉଛି।

କିଛିକ୍ଷଣ ଏଭଳି ଭାବିଚାଲିଥାଏ। ତା' ମନରେ ନାନା ଦ୍ୱନ୍ଦ୍ୱ ଦେଖାଦେଉଥାଏ। ଝିଅ-ଜନମ ପରଘରକୁ। ନିଜେ ସଳିତାଭଳି ଜଳି ଅନ୍ୟର ଘରକୁ ଉଜଳାଇବା ତାର କାମ। ନବୀନକୁ ସେ ଭଲପାଏ। ଆମ ଦୁହିଁଙ୍କ ସଂପର୍କ ପିଲାଦିନର। କୈଶୋର ଓ ଯୌବନର ସ୍ୱପ୍ନଭରା ମୁହୂର୍ତ୍ତଗୁଡ଼ିକରେ ଆମେ ପରସ୍ପର ନିକଟତର ହୋଇଯାଇଛୁଁ– ଯାହା ସହଜରେ ଛିଣ୍ଡିପାରିବନାହିଁ। ନବୀନ ବିନା ସେ ବଂଚିପାରିବ ନାହିଁ। ତାର ସ୍ମୃତି, ତାର ପ୍ରୀତି, ତାର ମଧୁର କଥା, ହସ ହସ ମୁହଁ ସବୁ ଆଖିଆଗରେ ନାଚିଉଠୁଛି। ସବୁ ଗୋଟିଗୋଟି ଆଜି ମନେପଡ଼ିଯାଉଛି। କେତେ-ବେଳେ ତାର ଅଜାଣତରେ ମନରେ ହସ ଚହଟିଆସେ, ପୁଣି କେତେବେଳେ ମନ ଉଦାସ ହୋଇଯାଏ; ମୁହଁ ମଳିନପଡ଼ିଯାଏ। ଆଖିରେ ଲୁହ ଜମିଯାଏ। ତାର ଅଜାଣତରେ କାନ୍ଦମାଡ଼ିଆସେ।

ପୁଣି ପରମୁହୂର୍ତ୍ତରେ ଆତ୍ମ-ସଚେତନ ହୋଇଉଠେ କିଆ। ଯାହାକୁ ସେ ବାହାହେବ, ତାକୁ କ'ଣ ସେ ନବୀନକୁ ଭଲପାଇବାଭଳି ଭଲପାଇପାରିବ କି? ମନ ଥରେ ଜଣକ ପାଖରେ ସମର୍ପିଦେଲେ ଆଉ ଜଣକୁ ସେହି ସୁଖ ସେ ଦେଇପାରିବକି? ତାର ଶରୀର ଉପରେ ତାର ଅଧିକାର ରହିବ; ମାତ୍ର ମନ ଆଉ ଜଣକ ପାଖରେ ଛନ୍ଦି ହୋଇ ରହିଯାଇଥିବ। ନବୀନ ତାର ମନର ମଣିଷ– ତା' ବିନା ସେ ବଂଚିପାରିବ ନାହିଁ।

କିଆ ମନରେ ସମୟେ ସମୟେ ଅବିଶ୍ୱାସ ଭାବ ଖେଳିଯାଏ। ଛାତି ତାର ଧଡ଼୍‌ପଡ଼୍ ହୋଇଉଠେ, ସେଦିନର କଥା ଭାବି– ଏଇ କାଲିପରି ଲାଗୁଛି। ଗାଁ ସାରା ରାଷ୍ଟ୍ର ହୋଇଯାଇଥାଏ। ଗାଁ ପଡୁଥାଏ ଉଠୁଥାଏ। ଦଳ ଦଳ ଯୁବକ ଯୁବତୀ, ସ୍ତ୍ରୀ, ବୁଢ଼ା ବୁଢ଼ୀଙ୍କ ତୁଣ୍ଡରେ ଗୋଟିଏ କଥା ଚର୍ଚ୍ଚା ଚାଲିଥାଏ। କେତୋଟି ଗାଁ ମଧ୍ୟରେ ଛୋଟ ଗାଁଟି। ସେ ଦିନର କଥା ମନରେ ପଡ଼ିଲେ ଛାତି ତାର ଦୁଡୁଗୁଡୁ ହୋଇଉଠେ। 'କବିତା' ତାର ପ୍ରେମିକ ସହ କେତେ ମଧୁର ସଂପର୍କ। କେତେଦିନର ଘନିଷ୍ଠତା। କେତେ ଗଭୀର ସେ ସଂପର୍କ। ମାତ୍ର ହେଲା କ'ଣ? ତାର ଗର୍ଭରେ ଭ୍ରୂଣ ସଂଚାରକରି ତାର ମନର ପୁରୁଷ ତାକୁ ଠକିଦେଇ ତା'ଠୁ ଚାଲିଗଲା ଦୂରକୁ। କେହି ଜାଣିପାରିଲେ ନାହିଁ। ତାକୁ ପତ୍ନୀ କରିବାର ସମସ୍ତ ଆଶା ଦେଇ କେଉଁଆଡ଼େ ଚାଲିଗଲା। କବି ତାର କୁଆଁରୀ ଜୀବନରେ କଳଙ୍କ କାଳିମା ବୋଳିହୋଇଗଲା। ତାର ଜୀବନ ଯୌବନ ଜଳିପୋଡ଼ି ଆଜି ଛାରଖାର ହୋଇଯାଇଛି। ସେ କାହାକୁ

ମୁହଁ ଦେଖାଇପାରୁନାହିଁ। ପାଗଳିନୀ ଭଳି ହୋଇଯାଉଛି।

ପ୍ରେମର ଏ ପରିଣତି ଦେଖି ମୁହଁ ତାର ଝାଉଁଳିଯାଏ। ମନରେ ପାପ ଛୁଏଁ। ଆଶା ଆଶଙ୍କାରେ ଛାତି ତାର ଦୋହଲିଯାଏ। ମାତ୍ର ପରମୁହୂର୍ତ୍ତରେ ମନରେ ଆଶାର ଆଲୋକ ଝଲସିଉଠେ। ଘନ ଅନ୍ଧକାର ଆକାଶରେ ବିଜୁଳିର ଚମକ କ୍ଷଣିକପାଇଁ ଅନ୍ଧକାରକୁ ଦୂରେଇ ମନରେ ଯେଉଁ ବିସ୍ମୟ ସୃଷ୍ଟିକରେ, ତାହା ଯେପରି କମନୀୟ ଏବଂ ଲୋଭନୀୟ ହୋଇଉଠେ, ଠିକ୍ ସେହିଭଳି ହା-ହତାଶ ମଧ୍ୟରେ ନବୀନର ହସହସ ମୁହଁ ତା' ମନରେ ଆଶାର ଆଲୋକ ସୃଷ୍ଟିକଲା। କବିତାର ପ୍ରେମିକ ଭଳି ତାର ନବୀନ ଏତେ ଛୋଟ ହୋଇପାରେନା; ସେ ସଂଯତ ଏବଂ ମାର୍ଜିତ। ସେ ନମ୍ର ଏବଂ କମନୀୟ। ପରକ୍ଷଣରେ ସେ ପୁଣି ଭାବିଚାଲେ– ପୁରୁଷ ମାତ୍ରକେ ସଭିଏଁ ପ୍ରାୟ ସମାନ। ସମୟ ଏବଂ ସୁଯୋଗ ପାଇଲେ ସେମାନଙ୍କ ପୁରୁଷତ୍ୱ ପ୍ରକାଶପାଇବା ସ୍ୱାଭାବିକ। ସ୍ୱାର୍ଥାନ୍ଧ ପୁରୁଷ ଭ୍ରମରଭଳି ମଧୁପାନ କରି କେଉଁଆଡ଼େ ପୁଣି ଖସିଯାଏ। ପୁରୁଷ ମନ ସଦା ଚଳଚଞ୍ଚଳ; ତେଣୁ ସେହି ସୁଯୋଗରେ କବିତାର ପ୍ରେମିକ ତାକୁ ଏତେସରି କରି ତାର ସର୍ବସ୍ୱ ଲୁଟି କେଉଁଆଡ଼େ ପଳାଇଯାଇଛି। ଏବେ ମଧ୍ୟ କବିତା ମନରେ ତାର ବିଶ୍ୱାସ ତୁଟିନାହିଁ– ସେ ଯେଉଁଆଡ଼େ ଗଲେ ମଧ୍ୟ ଦିନେ ନିଶ୍ଚେ ତା' ପାଖକୁ ଫେରିଆସିବ। ତାକୁ ଛାଡ଼ି ସେ କେଉଁଠି ସବୁଦିନ ରହିପାରିବ ନାହିଁ; ମାତ୍ର ତାର ଆଶାଟିକକ ଆଶାରେହିଁ ରହିଯାଇଛି। ଆଜିପର୍ଯ୍ୟନ୍ତ ତାର ପ୍ରେମିକର ପତ୍ତା ମିଳୁନାହିଁ।

ତେବେ ସଦାବେଳେ ପୁରୁଷକୁ ଦୋଷ ଦେଲେ ଚଳିବ କେମିତି? କବିତାର କ'ଣ ଦୋଷ ନାହିଁ କି? ଭଲମନ୍ଦ ବିଚାରକରିବାକୁ ତା'ର କ'ଣ ଜ୍ଞାନ ହୋଇନାହିଁ କି? ତାର ସେହି ଜ୍ଞାନଟିକକ କୁଆଡ଼େ ଗଲା? କ୍ଷଣିକର ସୁଖ ପାଇଁ ନିଜର ସର୍ବସ୍ୱ ତା' ପାଖରେ ଅର୍ପଣକରିଦେଲା। ପ୍ରେମ ମଣିଷକୁ ଅନ୍ଧ କରିଦିଏ; ହିତାହିତ ଜ୍ଞାନ ତାର ରହେନାହିଁ। ପ୍ରେମ ନାମରେ ଦୈହିକ ମିଳନ ପାଇଁ ବ୍ୟାକୁଳହେଲେ ପରିଣାମରେ ଫଳ ଅମଙ୍ଗଳ ହୋଇଥାଏ, ତାହା ଦୁଃଖଦାୟକ ହୋଇଥାଏ। ଯେ ନିଜକୁ ସଂଯତ କରିପାରେନାହିଁ, ନିଜ ବିବେକକୁ ଜଗି ଚଳିଜାଣେନାହିଁ, ତା'ର ଫଳ କବିତାଭଳି ହେବା ସ୍ୱାଭାବିକ। ହଁ, ପୁରୁଷର ନାରୀପ୍ରତି ଆକୃଷ୍ଟ ହେବା ସହଜାତ ପ୍ରବୃତ୍ତି। ଥରେ ସେ ନାରୀର କୋମଳ ସ୍ପର୍ଶ ପାଇଲେ ତାର ସୁପ୍ତ ପ୍ରବୃତ୍ତି ଜାଗ୍ରତ ହୋଇଉଠେ। ଏହି ସ୍ପର୍ଶ ପାଇ ଭିତରେ ଛପିରହିଥିବା ବରଫଖଣ୍ଡଟି ସ୍ପର୍ଶର ଉଷ୍ମତାରେ ତରଳିବାକୁଲାଗେ। ନାରୀପ୍ରତି ପୁରୁଷର ଏକ ସହଜାତ ମୋହ ଏବଂ ଲାଳସା ରହିଛି। ସେଥିରୁ ନିଜକୁ ବଞ୍ଚାଇ ଚଳିବା ନାରୀର ପ୍ରଥମ ଦାୟିତ୍ୱ।

କିଆ ମନରେ ନାନା ପ୍ରଶ୍ନ ଖେଳିଯାଉଥାଏ। ପୁରାଣରେ ପଢ଼ିଥିବା ଏକ ଘଟଣା ତାର ମନରେ ଉଙ୍କିମାରିଲା। ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କୁ ମଧ୍ୟ ନାରୀଦ୍ୱାରା

ବଶକରାଯାଇଥିଲା। ବିଭାଣ୍ଡକ ମୁନିଙ୍କ ପୁତ୍ର ଋଷ୍ୟଶୃଙ୍ଗ ଜୀବନରେ ପ୍ରଥମଥର ପାଇଁ ରୂପସୀ ନାରୀକୁ ଦେଖି ବିସ୍ମୟରେ ଅଭିଭୂତ ହୋଇଯାଇଥିଲେ। କିଆ ଏମିତି ଭାବିଚାଲିଥାଏ। ମଣିଷ ଥରେ ଭାବନା ଭିତରେ ପଶିଗଲେ ସହଜରେ ସେଠୁ ଖସିଆସିପାରିନଥାଏ। ଭାବନାର ସ୍ରୋତ ଅନନ୍ତ, ଅସରନ୍ତି। କିଆ ଭାବବିହ୍ୱଳରେ କାଛକୁ ଆଉଜି ଛିଡ଼ାହୋଇରହିଲା।

କିଆ ମନରେ ପୁଣି ତା' ନିଜ କଥା ଆସି ଢକ୍କିମାରିଯାଉଥାଏ। ତାର ଏଇ ଛୋଟ କଥାକୁ ନେଇ ଗାଁରେ କେତେ ଚର୍ଚ୍ଚା ହୋଇଗଲା। ଅତି ତୁଚ୍ଛ କଥା, ମୁଢ଼ି ଖାଇବା କଥାକୁ ଆଳକରି ଗାଁର ପୋଖରୀ ତୁଠରେ କେତେ ଗୁଜବ ରଟିଗଲା। ନିଜର ଖ୍ୟାତି ପାଇଁ ମଣିଷ ଯେପରି ବ୍ୟାକୁଳ, ପରନିନ୍ଦା ପରଚର୍ଚ୍ଚା କରିବାପାଇଁ ସେମିତି ବ୍ୟଗ୍ରହୋଇପଡ଼େ। ପରର ନିନ୍ଦା ଓ କୁତ୍ସାରଟନା କରି ସେ ଆତ୍ମତୃପ୍ତି-ପାଇଥାଏ। ଆଜି ସେ କଥା ଭାବିଲେ ମନରେ ବିଷାଦର କାଳିମା କିଆ ମନକୁ ଆଚ୍ଛାଦିତ କରୁଥାଏ। ମୁହଁ ତାର ବିଷଣ୍ଣ ଏବଂ ଶୁଷ୍କ ହୋଇଯାଇଥାଏ।

ପ୍ରେମ ମଣିଷକୁ କେବେ ଭାବବିହ୍ୱଳ କରେ ତ କେତେବେଳେ ମୌନ ଓ କେତେବେଳେ ଭାବଗମ୍ଭୀର କରିପକାଏ। ଆଜି ଠିକ୍ ସେହିଭଳି କିଆ ମନରେ ଭାବାନ୍ତର ସୃଷ୍ଟିହୋଇଛି। ଏଭଳି ଚିନ୍ତା ଭିତରେ ଛନ୍ଦିହୋଇ ପଡ଼ିଥିଲାବେଳେ ମା' ତାର ହାବଭାବ ଠଉରାଇ ପାଖକୁ ଆସି ଥରେ ତାର ଶୁଖିଲା ମୁହଁକୁ ଅନାଇ କହିଲା – ''ଆଲୋ ମା', ତୋତେ ପରା ଲୋକ ଦେଖିବାକୁ ଆସୁଛନ୍ତି। ତୋର ନିର୍ବନ୍ଧ ପାଇଁ ଏତେ ଯୋଗାଡ଼ ଚାଲିଛି। ତୁ ଏଣେ ମୁହଁମାରି ବସିଛୁ ?''

କିଆ ତାର ଭାବନାରାଜ୍ୟରୁ ଫେରିଆସି ଥରେ ତା ମା' ମୁହଁକୁ ଚାହିଁଦେଲା। ଏଇ ତାର ମା', ସେ ତାକୁ ଦଶମାସ ଗର୍ଭରେ ଧାରଣକରିଛି। ମା'ର ମନ ରଖି ତାକୁ ଆଜି ଚଳିବାକୁ ପଡ଼ିବ। ଆଜି ସେହି ମା' ଯାହାର ରକ୍ତ ତାର ଶିରାପ୍ରଶିରାରେ ପ୍ରବାହିତ ହେଉଛି, ସେ ତା' ପାଖରେ ଛିଡ଼ାହୋଇ ତାକୁ ବିକଳ ନୟନରେ ଅନାଇରହିଛି ତା'ଠୁଁ ଉତ୍ତର ଶୁଣିବବୋଲି। ମନ ତାର ଘାଣ୍ଟିହୋଇଗଲା। କେଜାଣି କାହିଁକି ଏକ ଅଜଣା କୋହ ତା' ମନରେ ଖେଳିଗଲା। କିଆ ଭାବିଲା, ସବୁକଥା ଗୋଟିଗୋଟି କରି ତା' ମା'କୁ କହିଦେବ କି ? ଜନ୍ମଦାତ୍ରୀ ମା'। ଝିଅ ମନକଥା କେବଳ ମା'ହିଁ ବୁଝିଥାଏ। ମାଆ ମାତ୍ରକେ ପୁଅ ଝିଅ ପାଇଁ ସଦା ସଚେତନ। ସବୁ ମା'ଙ୍କର ସେହି ଅବସ୍ଥା – ପୁଅଝିଅଙ୍କ ସୁଖରେ ସୁଖୀ ହୁଅନ୍ତି, ଦୁଃଖରେ ମ୍ରିୟମାଣ ହୋଇପଡ଼ନ୍ତି; ବେଦନାରେ ଅସ୍ଥିର ହୋଇଉଠନ୍ତି। ଯେତେହେଲେ ବି ସ୍ନେହମୟୀ ସେ। ସେ ବାହାହେବନାହିଁ ବୋଲି ତା' ମା'କୁ କହିଦେବ। ଜଣକ ପାଖରେ ସେ ତାର ମନକୁ ସଅଁପିଦେଇଛି। ମନ ଜଣକ ପାଖରେ ଥିଲେ ତାର ଶରୀର ଅନ୍ୟଜଣକ ପାଖରେ ରହିଲେ ସେ କେବେ ସୁଖୀ

ହୋଇପାରିବ କି ? ଶାନ୍ତିରେ ବଞ୍ଚିପାରିବ କି ? ମା' ହୋଇ ତା' ଝିଅର ଏତକ ମନକଥା ବୁଝିପାରୁନାହିଁ କି ?

ମାତ୍ର ପରମୁହୂର୍ତ୍ତରେ ଏକ ଅଜଣା ଭୟ ତାର ମୁଖମଣ୍ଡଳକୁ ଗ୍ରାସ କରିଗଲା। ସମାଜର ନାଲି ଆଖି ତା' ଆଗରେ ଦପ୍‌ଦପ୍ ହୋଇ ଜଳିଉଠିଲା ଭଳି ମନେହେଲା। ବଳି ପଶୁ ଯେମିତି ଆତଙ୍କରେ ଆଖିରୁ ଅଶ୍ରୁବର୍ଷଣ କରି ଘାତକର କ୍ରୂର ଅସ୍ତ୍ରପ୍ରହାରକୁ ଅପେକ୍ଷାକରି ରହିଥାଏ, ଆଜି କିଆର ଅବସ୍ଥା ମଧ୍ୟ ଠିକ୍ ସେହିଭଳି ମନେହେଉଥାଏ। ସେ ମନକୁ ବୁଝାଇ ଭାବିଲା– ଛି...: ମୁଁ ଏସବୁ କ'ଣ ଭାବିଯାଉଛି ? ବାପ, ମା' ଯାହା କରୁଛନ୍ତି, ମୋର ମଙ୍ଗଳପାଇଁ। ବାପ ମା' କେବେ ଝିଅର ଅମଙ୍ଗଳ କରିପାରନ୍ତି କି ?

ସେ ନିଜ ମନକୁ ବୁଝାଇବାକୁ ଚେଷ୍ଟାକଲା। ନବୀନ ତାଙ୍କ ଜାତିର ଲୋକ ନୁହେଁ। ଏଇନେ କଥା ଜଣାପଡ଼ିଲେ ସବୁ ପ୍ରଘଟ ହୋଇଯିବ; ନଜାଣିବା ଲୋକେ ସବୁ ଜାଣିଯିବେ– ତାକୁ ଛି-ଛି କରିବେ। ତାର ମା' ବାପର ମାନମହତ ତଳକୁ ହୋଇଯିବ। ସମାଜ କଥାକୁ ଧରିବସିବ। କୁଟୁମ୍ବଲୋକେ ତାକୁ ବାସନ୍ଦକରିବେ। ଲାଜ ମହତ ଗଲେ ସବୁ ଗଲା। ତାକୁ ଆଜି କଇଁଛଭଳି ମୁଣ୍ଡ ଜାକି ରହିବାକୁ ପଡ଼ିବ। ଆମେ ସମସ୍ତେ ସମାଜକୁ ଡରି ରହିଥାଉଁ। ଲୋକମତ ପ୍ରତି ମଧ୍ୟ ଆମର ଭୟ ରହିଛି। ସେଥିରୁ ସେ ଅବା କେମିତି ବାଦ୍ ଯାଇପାରିବ ? ମଣିଷ ଏକ ସାମାଜିକ ପ୍ରାଣୀ। ଯେ ଯାହା ମନମୁଖୀ କରିବସିଲେ ସମାଜରେ ବିଶୃଙ୍ଖଳା ସୃଷ୍ଟିହେବ। ମଣିଷ ମନରେ ଭୟ ଓ ସଙ୍କୋଚ଼ ଭାବ ଥିଲେ, ମଣିଷକୁ ବିପଥଗାମୀ ହେବାରୁ ନିବର୍ତ୍ତାଇଥାଏ। ସମାଜ ପ୍ରତି ତାର ଭୟଥିବା ଯୋଗୁଁ ତାର ଦୁର୍ବଳତାକୁ ଲୋକଲୋଚ଼ନକୁ ଆସିବାକୁ ଦେଇନଥାଏ। ସମାଜର ସ୍ୱଚ୍ଛ ଦର୍ପଣରେ ନିଜର ବିକୃତ ସ୍ୱରୂପକୁ ଦେଖିବାପାଇଁ ସାହସ ହୋଇନଥାଏ। ପ୍ରତ୍ୟେକ କ୍ଷେତ୍ରରେ ସାମାଜିକ ସ୍ୱୀକୃତି ରହିଛି। ତାକୁ ବାଦ୍‌ଦେଇ କେହି ଆଗକୁ ପାଦଟିଏ ମଧ୍ୟ ବଢ଼ିପାରିବନାହିଁ। ଆଗକୁ ବଢ଼ିବାକୁ ମନ ବଳିଲେ ମଧ୍ୟ ବିବେକ ତାକୁ ଟାଣିଧରିବ।

ଏଭଳି ଅନେକ ଚିନ୍ତା କିଆ ମନରେ ଉଙ୍କିମାରିଚାଲିଥାଏ। କିଆ ତାର ମା'କୁ ଅପଲକ ନୟନରେ ଅନାଇରହିଥାଏ। ବହୁ ପ୍ରଶ୍ନିଳ ଚାହାଣି ତା'ରି ଆଖିରେ ଝଲସି ଉଠୁଥାଏ। ରେବତୀ ତାର ମନର ବେଦନା ବୁଝିପାରିଲା। ମା' ହିଁ ଝିଅର ମନକଥା ବୁଝିପାରିଥାଏ। ସେ ଭଲଭାବରେ ବୁଝିପାରିଲା କିଆ ମନର ବେଦନା। କିଆ ମୁଣ୍ଡ ତଳକୁ କରି ଗୋଡ଼ର ବୁଢ଼ାଆଙ୍ଗୁଠି ନଖରେ ମାଟିରେ ଗାର ଟାଣୁଥାଏ। କଥାଟାକୁ ଏଇନେ ସମ୍ଭାଳି ନନେଲେ କେଉଁଠି ଯାଇ ପଡ଼ିଯିବ। ନେଡ଼ିଗୁଡ଼ ସେତେବେଳେ କହୁଣିକୁ ବୋହିଯିବ। ରେବତୀ ତା' ଉପରେ ସ୍ନେହ-ମମତାଭରା ଚାହାଣି ପକାଇ ତା' ମୁଣ୍ଡରେ ହାତ ବୁଲାଇଆଣି ତାକୁ ବୁଝାଇଲାଭଳି କହିଲା।

କିଆ ମା'ର ସ୍ନେହବୋଳା ହାତପରଶ ପାଇ କିଆ ମନର କୋହ ଉଦ୍‌ବେଳିତ ହୋଇଉଠିଲା। ସେ ସକେଇ ସକେଇ କାନ୍ଦିପକାଇ ମା' ପଣତକାନିରେ ମୁହଁ ଗୁଞ୍ଜିଦେଲା। ରେବତୀ ଆଖିରେ ମଧ ଲୁହ ଚହଟିଗଲା। ଗଭୀର ଆବେଗରେ କିଆକୁ ଟାଣିଆଣି ଚାପିଧରିଲା ଛାତିଉପରେ। କିଆ ତା' ମା' ଛାତିର ଉଷ୍ମତା ଅନୁଭବକଲା – ମନର କୋହ ଏବଂ ଆବେଗକୁ ଚାପିଧରିବାପାଇଁ ଚେଷ୍ଟାକଲା।

ରେବତୀ ମନରେ ଗୋଟିଏ କଥା ଖେଳିଗଲା – ସବୁ ଝିଅ ସମାନ। ଯେତେବେଳେ ସେମାନଙ୍କ ବାହାଘର କଥା ପଡ଼େ ସେମାନେ ଲାଜେଇଯାଆନ୍ତି। ଅଜଣା ଆଶଙ୍କାରେ ଛାତି ଥରିଉଠେ। ମନରେ ଭରିଦିଏ କୋହ। ଆଜି ଠିକ୍ ସେହିଭଳି ଅବସ୍ଥା କିଆର।

କିଆ ତା' ମା'ର କୋଳରୁ ମୁଣ୍ଡ ଉଠାଇ ତା' ମା'କୁ ସତୃଷ୍ଣ ଆଖିରେ ଅନାଇରହିଲା। ଭାବିଲା – ମନର କଥା ଖୋଲି କହିଦେବ କି? ମାତ୍ର ତା' ତୁଣ୍ଡରୁ କଥା ବାହାରିଲାନାହିଁ। ସେ ପଦଟିଏ ମଧ କହିପାରିଲା ନାହିଁ। କେବଳ ତା' ମା'କୁ ବଲବଲ କରି ଅନାଇରହିଲା।

ରେବତୀ କିଆକୁ ତାଳୁରୁ ତଳିପାଯାଏ ଅନେଇନେଲା। ତା'ର ବିଷଣ୍ଣ ମୁହଁକୁ ଅନାଇ କଅଁଳେଇ କହିଲା – "ଆଲୋ ମା କିଆ, ଏମାନେ ସମସ୍ତେ ଆମର ପୁରୁଣା ବନ୍ଧୁ – ତୋର ବାପାଙ୍କ ମାମୁଘର ଲୋକ। ଅତି ଆପଣାର ସେମାନେ। ନଗେନ ମଧ ଭଲପିଲା, କାମିକା ପିଲା। ଜମି ମଧ ତା' ଭାଗରେ ଦୁଇଏକର ଅଛି। ଆମେ ଚାଷୀଘର ମଣିଷ। ଚାଷ ନକଲେ ଦିନଟିଏ ବଞ୍ଚିପାରିବାନାହିଁ। ହଳ, ଗାଈ, ଛେଳି, ମେଣ୍ଢା କେଉଁଥିରେ ଅଭାବ ନାହିଁ। ତୋର କେଉଁଥିରେ ଅଭାବ ପଡ଼ିବନାହିଁ।"

ମା' ଆଖିରେ ଝିଅର ସୁଖ-ସ୍ୱାଚ୍ଛନ୍ଦ୍ୟ କଥା ବେଶି ଦେଖାଦିଏ। ଝିଅ ସୁଖରେ ଖାଇପିଇ ରହିପାରିଲେ ତା' ମନରେ ଆନନ୍ଦ ମିଳିଥାଏ। କିଆ କିଛିକ୍ଷଣ ତା' ମୁହଁକୁ ଚାହିଁରହିଲା। ଆଖିରୁ ଅମାନିଆ ଲୁହ ଝରଝର ହୋଇ ଗଡ଼ିପଡ଼ିଲା। କିଆ କାନ୍ଦୁଥିବା ଦେଖି ରେବତୀର ବୁଦ୍ଧି ବଣାହୋଇଗଲା। ସେ ଯେତେ ବୁଝାଇଲେ ମଧ ବୁଝିବାକୁ ନାହିଁ; କରିବ କଅଣ। ସେ କିଛି ଜାଣିପାରିଲା ନାହିଁ; ତାକୁ ଯେତେ ବୁଝାଉଥିଲେ ସେତେ କୋହ ତୁହାକୁତୁହା ଉଠୁଥାଏ।

ରେବତୀ ଝିଅ ଆଖିରୁ ତା' ପଣତକାନିରେ ଲୁହ ପୋଛିଦେଲା। ତା' ଚିବୁକରେ ହାତ ରଖି ତା' ମୁହଁକୁ ଚାହିଁ କହିଲା – "ତୁ ଯାହା କଥା ଭାବୁଛୁ, ମୁଁ ସବୁ ବୁଝୁଛି।"

କିଆ ତା' ମା' ମୁହଁକୁ ବଲବଲ କରି ଅନାଇରହିଲା।

–"ପିଲାଦିନର ଧୂଳିଖେଳ ସାଥୀ ଜୀବନର ସାଥୀ କେବେ ହୋଇପାରେନା

ଲୋ ମା ! ସେ ଫେର୍ ଆମ କୁଳର ପିଲା ନୁହେଁ। କୁଳ କୁଟୁମ୍ବ କଥାଟା ଜାଣିଲେ ଆମରି ସବୁ ମହତ ଚାଲିଯିବ। ଏକଘରକିଆ କରିଦେବେ। ଯା' ହାଣ୍ଡିରେ ଯେ ଚାଉଳ ପକାଇଛି, ସେ ତାର ହେବ।''

ସେ କିଆର ପିଠିରେ ହାତ ବୁଲାଇଆଣି ପୁଣି କହିଲା— ତୁ ତ ଜାଣିବା ଶୁଣିବା ଝିଅ, କିଛି ପାଠ ପଢ଼ିଛୁ, ପୁରାଣ ପଢ଼ିଛୁ, ଭଲମନ୍ଦ ବିଚାର କରିବା ଜ୍ଞାନ ତୋର ହୋଇଯାଇଛି। ତୁ ତ ଆଉ ଛୋଟ ଝିଅ ହୋଇ ରହିନାହୁଁ; ବଡ଼ହୋଇଗଲୁଣି। ବୁଝିଶୁଝି କାମ କରିବାକୁ ପଡ଼ିବ। ମାନ-ମହତକୁ ଜଗି ଚଳିବାକୁ ପଡ଼ିବ ଲୋ ମା ! ତୋର ବାପ, ମା'ର ମହତକୁ ତୋତେ ଜଗିବାକୁ ପଡ଼ିବ। ମୁଣ୍ଡ ତଳକୁ କରିଦେବୁନି ଲୋ ମା !

ରେବତୀର ସ୍ୱରରେ ତାର ଅନ୍ତରର ମର୍ମବେଦନାଟିକକ ଫୁଟିଉଠିଲା। ରେବତୀ କେତେ ମିନତି ହୋଇ ତାର ଝିଅ କିଆକୁ ବୁଝାଇଦେଲା; ତାକୁ ସାନ୍ତ୍ୱନା ଦେଇ, ପରାମର୍ଶ ଦେଇ ଅନ୍ୟ କାମରେ ଚାଲିଗଲା। ଏକୁଟିଆ ଲୋକ, ଅତିଥିମାନେ ଆସିବା ଆଗରୁ ତାକୁ କେତେ କାମ ସାରିବାକୁ ପଡ଼ିବ।

କିଆ ମନରେ ତା' ମା' କଥା ଗୋଟି ଗୋଟିକରି ହେଜିହେବାକୁ ଲାଗିଲା। ତାର ମନର ଆଶାଟିକକ ମଉଳିଗଲା ଭଳି ମନେହେଲା। ମଣିଷର ଆଶା ଯେତେବେଳେ ସଫଳ ହୁଏନାହିଁ, ସେତେବେଳେ ମଣିଷ ମନରେ କେତେ କଳ୍ପନାଜଳ୍ପନା ଖେଳିଯାଏ; ଶେଷରେ ସେ ଭାଗ୍ୟ ଉପରେ ଦୋଷ ଲଦିଦିଏ।

ମାନମହତ ହେଲା ବଡ଼ପଣ। ମହତ ଗଲେ ସବୁ ଗଲା। କିଆ ମନରେ ଭାବନା ସୃଷ୍ଟି ହୋଇଚାଲିଥାଏ। ସେ ତା' ବାପ ମା' ମନରେ କଷ୍ଟଦେଇ ନିଜକୁ ସୁଖୀ କରିପାରିବନାହିଁ। ସମାଜଠୁଁ ସେ ଅଲଗା ରହିପାରିବନାହିଁ। ତାର ମୁହଁ ଧୀରେ ଧୀରେ ଶେତା ପଡ଼ିଗଲା। ସେ ବୁଝିବାପାଇଁ ଚେଷ୍ଟାକଲା; ମାତ୍ର ଥଳକୂଳ ପାଇପାରିଲା ନାହିଁ। ଜୀବନରେ ଥଳକୂଳ ପାଇବା ମୁସ୍କିଲ୍। ଏତେ କଥା ଜାଣିବା ମଧ୍ୟ ସହଜ ନୁହେଁ। ତାକୁ ବେଶି ଖୋଳତାଡ଼ କରିବା ମଧ୍ୟ ଠିକ୍ ହେବନାହିଁ। ଯେଉଁଠି ଅଛି, ସେଇଠି ଥାଉ। ବେଶୀ ଭିତରକୁ ଯିବାପାଇଁ ଉଦ୍ୟମ କଲେ ହତାଶ ହେବାଛଡ଼ା ଅନ୍ୟ କିଛି ମିଳିବନାହିଁ।

ମା' ତାକୁ ଠିକ୍ କଥା କହିଛି; କିଛି ନୂଆକଥା କହିନି। ଯାହା ପୁରୁଷପୁରୁଷଧରି ଚଳିଆସୁଛି, ତାହାହିଁ ତାକୁ ବୁଝାଇଦେଇଛି। ସେ ସିନା ବୟସରେ ଛୋଟ, ମା' ତାର ଅନେକ କଥା ଦେଖିଛି, ଅନେକ ଶୁଣିଛି; ଆଉ ଅନେକ କଥା ଅଙ୍ଗେନିଭାଇଛି। ତେଣୁ ତାର ଅନୁଭୂତିରେ ସେ ଏତେ କଥା କହିପାରୁଛି। ସମାଜର ଚାଲିଚ଼ଳନ, ରୀତିନୀତିକୁ ଏତେ ସହଜରେ ପରିବର୍ତ୍ତନ କରିବା କେବେ ସମ୍ଭବପରନୁହେଁ। ସମୁଦ୍ରର ଜୁଆର ଫୁଲିଫୁଲି ଆଗକୁ ଆଗକୁ ମାଡ଼ିଆସେ; କିନ୍ତୁ କୂଳରେ ବାଡ଼େଇହୋଇ

ପୁଣି ମୁଣ୍ଡପାତି ଫେରିଯାଏ । ଠିକ୍ ସେହିଭଳି ଆଜି ମୋର ମଧ୍ୟ ସେହି ଅବସ୍ଥା । ମୁଣ୍ଡ ବାଡ଼େଇଦେଲେ ମଧ୍ୟ ମୁଁ ଯାହା ଚାହୁଁଛି ତାହା କେବେ ହୋଇପାରିବନାହିଁ। ସମାଜର ରୀତିନୀତିକୁ ଆଡ଼େଇଦେଇ ମୁଁ କେବେ ଆଗକୁ ଯାଇପାରିବିନାହିଁ। ଏତକ ସେ ଆଜି ଠିକ୍ ରୂପେ ବୁଝିଯାଇଛି। ତା' ମା'ର ପ୍ରତି କଥାର ମର୍ମ ସେ ଭଲରୂପେ ଉପଲବ୍ଧି କରିପାରିଛି। ମା' ତାକୁ କହିଦେଇଛି– ସଂସାର ଭିତରେ ଥିଲେ କେତେ କଥା ବୁଝିଶୁଝି କରିବାକୁ ପଡ଼ିବ। ଏମିତି ଦ୍ୱନ୍ଦ୍ୱ ଭିତରେ ସେ ନୀରବରେ ନୀଳ ଆକାଶକୁ ଚାହିଁ ଛିଡ଼ାହୋଇରହିଲା – ସତେ ଅବା ସେ ସ୍ଥାଣୁ ପାଲଟିଯାଇଛି।

## (୨୧)

ମଦନର ଘରେ ଆଜି ଲୋକଗହଳି। ତାର ବନ୍ଧୁବାନ୍ଧବ ସମସ୍ତେ ଆସିଯାଇଥାନ୍ତି। ଖଣ୍ଡିଏ ସଫା ସତରଞ୍ଜି ବିଛାହୋଇଛି। ଗାଁର ମୁଖିଆ ଲୋକମାନେ ମଧ୍ୟ ଆସିଯାଇଥାନ୍ତି। ସମସ୍ତେ ବସି ସୁଖଦୁଃଖ, ଭଲମନ୍ଦ କଥାବାର୍ତ୍ତା ହେଉଥାନ୍ତି। କେତେଦିନ ପରେ ସେମାନଙ୍କ ଭେଟଘାଟ ହୋଇଛି। ଏଭଳି ଏକ ସୁଯୋଗ ସେମାନଙ୍କୁ ସମସ୍ତଙ୍କୁ ଏକତ୍ରିତ କରିଦେଇଛି। ମଦନ କିନ୍ତୁ ସ୍ଥିର ହୋଇ ବସିପାରୁ ନଥାଏ । କେତେବେଳେ ଘରକୁ ତ କେତେବେଳେ ବାହାରକୁ ଯିବାଆସିବା କରୁଥାଏ । ବନ୍ଧୁବାନ୍ଧବଙ୍କ ଚର୍ଚ୍ଚାରେ ସେ ଲାଗିଥାଏ । କାହାକୁ ପାଣି ଦରକାର, କାହାକୁ ଚାହା ଦରକାର, ସବୁ ସେ ନିଜେ ବୁଝି ଯୋଗାଇଦେଉଥାଏ । ଏମିତି ବେଳ ଗଡ଼ିଚାଲିଥାଏ । ନିର୍ବନ୍ଧ ପାଇଁ ବିଧିବିଧାନ କରିବାକୁ ପଡ଼ିବ। ଗାଁ ମୁଖିଆ ପାଖକୁ ଆସି ମଦନକୁ କହିଲେ, ''ଝିଅକୁ ନେଇଆସ; ମୁହୂର୍ତ୍ତ ହୋଇଗଲା ।''

ମଦନ ତରତର ହୋଇ ଘରଭିତରକୁ ଚାଲିଗଲା। ଘର ଭିତରକୁ ଯାଇ ଡାକ ଦେଲା – ''ଝିଅକୁ ନେଇଆସ; ଲଗ୍ନବେଳ ହୋଇଗଲା ।''

ନଗେନ ତା' ଜେଜେ ପାଖରେ ବସି ସର୍ବିଙ୍କୁ ଦେଖିନେଉଥାଏ । ମନ ତାର ଆଜି କେତେ ଖୁସ୍– ଝିଅ ଦେଖିବ। ତାର ମନ ପସନ୍ଦ ହେବ। ତା' ଗାଁ ପିଲାମାନଙ୍କଠୁଁ ଶୁଣିଛି, ସୁନ୍ଦର ଝିଅଟିଏ । ସେ ସିନା ତା' କାନରେ ଶୁଣିଛି, ଆଜି ସେ ଆଖି ପୂରାଇ ଦେଖିବ। ଯାହାକୁ ସେ ଘରକୁ ନେବ, ସେ କେମିତିକା। ତା' ମନ ପସନ୍ଦ ହେବ ତ ? ସେ ତାକୁ ପସନ୍ଦ କରିବ କି ନାହିଁ? ତା' ମନରେ କ'ଣ ଅଛି, ସେ ତା' ମନକଥା ଜାଣିପାରିବନାହିଁ। ତା' ମନକଥା ଜାଣିବାପାଇଁ ସେ ତାକୁ ଏକୁଟିଆ ପାଇପାରିବନାହିଁ। ତାକୁ ତା' ସାଙ୍ଗମାନେ ବେଢ଼ି ରହିଥିବେ। ସେ ତା' ସହିତ କଥା ଦୁଇପଦ ହୋଇପାରିବନାହିଁ।

ନଗେନ ଦେଖିବାକୁ ହୃଷ୍ଟପୁଷ୍ଟ, ବଳିଲା ବଳିଲା ବାହୁଯୁଗଳ, ସୁନ୍ଦର ଗଠନ।

କଳାକଳା ଆଖିଯୋଡ଼ିକ ସଦା ଘୁରିବୁଲୁଥାଏ। ମୁଣ୍ଡର ବାଳକୁ ଚିକ୍କଣ କରି କୁଣ୍ଡାଇଦେଇଥାଏ। ପିନ୍ଧିଥାଏ ଖଣ୍ଡିଏ ପୂରା ଶାର୍ଟ ଏବଂ ଧୋତି। ଏକୋଇଶି-ବାଇଶି ବର୍ଷର ଯୁବକ। ସଦା ହସହସ ମୁହଁ। ମନରେ ଭରିରହିଥାଏ ଦୃଢ଼ ଆତ୍ମବିଶ୍ୱାସ।

ଘର ଭିତରେ ମାଇପିମାନଙ୍କ ହୁଳହୁଳି ଶବ୍ଦ ଶୁଣାଗଲା। ନଗେନର ମନ ଚଞ୍ଚଳ ହୋଇଉଠିଲା। ଏତେବେଳ ହେଲା ଯେଉଁ ପ୍ରତୀକ୍ଷାରେ ଥିଲା, ଏବେ ଆଖିପୂରାଇ ତାର ଆଗାମୀ ଭବିଷ୍ୟତର ଜୀବନସାଥୀକୁ ଦେଖିବାପାଇଁ ମନ ତାର ଚଳଚଞ୍ଚଳ ହୋଇଉଠିଲା। ଏତେବେଳହେଲା ସଭିଏଁ ସେହି ମୁହୂର୍ତ୍ତକୁ ଅପେକ୍ଷା କରିଥିଲେ। ବସିଥିବା ସଭିଏଁ ସେହି ଭିତର ଦ୍ୱାରକୁ ଅନାଇରହିଲେ। ହୁଳହୁଳି ଧ୍ୱନିରେ ସ୍ଥାନଟି କମ୍ପିଉଠୁଥାଏ।

ସ୍ତ୍ରୀଲୋକମାନଙ୍କ ଗହଣରେ କିଆ ଆଗକୁ ଧୀର ପାଦପାତରେ ଆସୁଥିଲା। ନଗେନ କିଆର ଗୋଲ ଗୋରା ମୁହଁକୁ ଦେଖିନେଲା। ମନ ତାର ଆନନ୍ଦରେ ପୁଲକିତ ହୋଇଉଠିଲା। ସେ ଯାହା ଆଶା କରିଥିଲା, ତା'ଠୁଁ ବଳି ଆହୁରି ଅଧିକ ସୁନ୍ଦରୀ କିଆକୁ ଦେଖି ମନ ତାର ଗଦ୍‌ଗଦ ହୋଇଉଠିଲା। କେଡ଼େ ସୁନ୍ଦର ମୁହଁଟି। ତାର ଶରୀରଗଠନ ମଧ୍ୟ ସୁନ୍ଦର। ଗୋରା ଦେହକୁ ସାଗୁଆ କୁମ୍ଭପକା ଶାଢ଼ି ବେଶ୍ ମାନୁଥାଏ। ତା' ସାଙ୍ଗକୁ ସାଗୁଆ ବ୍ଲାଉଜ୍ ତାର ଯୌବନକୁ ଚହଟାଇ ଦେଉଥାଏ। ଆଖିରେ ଲଗାଇଥାଏ କଜ୍ଜଳ; ପାଦରେ ନାଲି ଅଳତା। ମୁଣ୍ଡରେ ଖୋସିଥାଏ ମଲ୍ଲିଫୁଲ ମାଳ।

କ୍ଷଣିକପାଇଁ ସ୍ଥାନଟି ଫୁଲର ମହକରେ ମହକିଉଠିଲା। ବସିଥିବା ସଭିଏଁ କ୍ଷଣିକପାଇଁ ତନ୍ମୟ ହୋଇ ଅନାଇରହିଲେ। କିଆ ତାର ସଖୀମାନଙ୍କ ଗହଣରେ ଧୀରେ ପାଦ ପକାଇ ଆଗକୁ ଚାଲିଆସିଲା। ତାର ମନରେ ଭୟ ଆଶଙ୍କା ଖେଳିଯାଇଥାଏ। ତାକୁ ଦେଖି ତାର ଭବିଷ୍ୟତର ଜୀବନସାଥୀ ମନରେ କିପରି ଧାରଣା ହେଲା, ସେ ଜାଣିପାରିବନାହିଁ। ମନ ତାର ଦକଦକ କରୁଥାଏ। ଛାତି ଭିତର ଥରିଉଠୁଥାଏ। ଏତେ ଲୋକଙ୍କ ଆଗକୁ ଆସିବାପାଇଁ ପାଦ ତାର ଚଳୁନଥାଏ। ତଥାପି ସାଥୀମେଳରେ ଆସି କ୍ଷଣେ ଛିଡ଼ାହୋଇ ମୁଣ୍ଡ ନୁଆଁଇ ଗୁରୁଜନମାନଙ୍କୁ ପ୍ରଣାମ କରି ପୁଣି ସଭିଙ୍କ ମେଳରେ ଘର ଭିତରକୁ ଚାଲିଗଲା।

ଲାଜରେ ମୁହଁ ତାର ନଇଁଯାଇଥାଏ। ମୁହଁ ଉଠାଇ ତାର ଭାବୀ ସ୍ୱାମୀର ମୁହଁକୁ ଚାହିଁବାକୁ ସାହସ ହେଉନଥାଏ। ସେ ଭଲକରି ତାକୁ ଦେଖିପାରିଲାନାହିଁ କିମ୍ବା କିଛି ଜାଣିପାରିଲାନାହିଁ। ବାପ ମା' ଆଜି ତାକୁ ଏକ ଅଜଣା ଯୁବକ ହାତରେ ସମର୍ପଣ କରିଦେବାପାଇଁ ଅଙ୍ଗୀକାରବଦ୍ଧ ହୋଇଗଲେ। ସେତେବେଳେ ସେ କିଛି କହିନଥିଲା କିମ୍ବା କୌଣସି ଆପତ୍ତି ମଧ୍ୟ କରିନଥିଲା। ମନର କଥା ମନ ଭିତରେ ଛପିରହିଗଲା। ଭୟ, ସଙ୍କୋଚ ତାକୁ ମାଡ଼ିବସିଲା; ଏକ ଅଜଣା

ଭୟ ତା' ମନକୁ ଆଚ୍ଛାଦିତ କରିରଖିଲା ।

କନିଆଦେଖା ପର୍ବ ଶେଷହୋଇଗଲା । ଗାଁଲୋକ ନଗେନକୁ ଦେଖି କିଏ କେତେ ପ୍ରକାର ପଚାରିଲେ– 'କ'ଣ, ତୋ' ମନ ପସନ୍ଦ ହେଲା ତ ? ତୋ' ମନକୁ ପାଇଲା ତ ?' ସେ କେବଳ ହସିଦେଲା । ଆନନ୍ଦରେ ମୁହଁ ତାର ସତେଜ ଦେଖାଗଲା । ମୁହଁରେ ତାର ମନୋଭାବ ପ୍ରକଟିତ ହୋଇଉଠିଲା ।

ତାର କେଙ୍କେ ଶୁକ୍ରୁ ବୁଢ଼ା କହିଲା– "ପସନ୍ଦ ହେବାରେ ଆଉ କ'ଣ ବାକି ରହିଛି ? ଖାଲି ରହିଛି କେବେ ବାହାଦିନ ଠିକ୍‌କରିବା ।"

ଝିଅ ପସନ୍ଦ କାର୍ଯ୍ୟ ଶେଷହୋଇଗଲା ପରେ ଗାଁର ଇଷ୍ଟଦେବୀଙ୍କୁ ଶୁଭ ମନାସି ନଡ଼ିଆ ଅର୍ପଣ କରାଗଲା । ମହୁଲି ରନ୍ଧା ମଦ ଧରଣୀଦେବୀଙ୍କୁ ଅର୍ପଣ କରାଗଲା । ଇଷ୍ଟଦେବୀଙ୍କ ଉଦ୍ଦେଶ୍ୟରେ ହଳଦିଆଚାଉଳ ପକାଇ ମୁଣ୍ଡ ନୁଆଁଇ ନମସ୍କାରକଲେ । ଉଭୟ କୁଳର ବୟସ୍କ ମୁଖିଆମାନେ ବସି ଜାତକ, ଲଗ୍ନ ଦେଖି ସମୟ ଓ ବିବାହ ଦିନ ଠିକ୍‌କଲେ ।

ସମସ୍ତଙ୍କ ମନ ଖୁସି । ଆନନ୍ଦର ହରିବୋଲ ଶବ୍ଦରେ ସ୍ଥାନଟି କମ୍ପିଉଠିଲା । ନଡ଼ିଆ ଗୁଡ଼ ଖାଇବାକୁ ଦିଆଗଲା । ମଦନ ପାଖରେ ବସି ମାମୁଙ୍କଠୁ ସବୁକଥା ଶୁଣିଯାଉଥାଏ । ଆଜି ମନ ତାର ଆନନ୍ଦରେ ନାଚିଉଠୁଥାଏ ।

ସମସ୍ତେ ଭୋଜିଭାତ ଖାଇ ବିଦାୟହୋଇଗଲେ । ମଦନ ସମସ୍ତଙ୍କୁ ଯଥାବିଧି ଦେଇ ବିଦାୟକଲା । ତାର ମାମୁ ଶୁକ୍ରୁ ବୁଢ଼ା ତାକୁ ଧନ୍ୟ ଧନ୍ୟ କହି ତାର ଶୁଭମନାସିଲେ । ମଦନର ମନ ଆଜି ଆନନ୍ଦରେ କୁରୁଳିଉଠୁଥାଏ । ସର୍ବଶୁଭରେ ସବୁକାମ ପଟିଗଲା । ତାର ଭାବୀ ସ୍ତ୍ରୀଙ୍କ ଏକ କାମିକା ଯୁବକ । ଦେଖିବାକୁ ମଧ୍ୟ ସୁନ୍ଦର । ଝିଅକୁ ମାନିବାଭଳି ସ୍ତ୍ରୀଟିଏ ସେ ପାଇଲା ।

ଗାଁଲୋକ ମଧ୍ୟ ବହୁ ପ୍ରଶଂସା କରି କହିଲେ– "ସତରେ ମଦନ, ତୁ ଭାଗ୍ୟବାନ । ସ୍ତ୍ରୀଟିଏ ପାଇଲାଭଳି ପାଇଲୁ । ଭାଗ୍ୟରେ ଥିଲେ ଏଭଳି ଯୁଟେ, ପୁରୁଣା ବନ୍ଧୁ । ସବୁଦିଗରୁ ଭଲହେଲା ।"

ମଦନ ସେମାନଙ୍କ ମୁହଁକୁ ଚାହିଁ, ହସି ହସି କହିଲା– ସବୁ ତୁମମାନଙ୍କ ଆଶୀର୍ବାଦ । ସେହି ମା-ଠାକୁରାଣୀଙ୍କ ଦୟା ।

## (୨୨)

ସବୁଦିନ ପରି ଆଜି ମଧ୍ୟ ନବୀନ ତାର ଗାଈଗୋଠ ନେଇ ଜଙ୍ଗଲକୁ ଚାଲିଗଲା । ଆଗରୁ ତାର ସାଙ୍ଗସାଥୀମାନେ ନିଜ ନିଜ ଗାଈ ବଳଦ ନେଇ ଆସିଯାଇଥାଆନ୍ତି । ନବୀନକୁ ଦେଖି ସମସ୍ତେ ପାଟିକରି ଉଠିଲେ– ହେଇ ନବୀନ ଆସିଗଲା । ଆଜି

ଚାଲ ଡୁ-ଡୁ ଖେଳିବା । ନବୀନ ସେମାନଙ୍କ ପାଖକୁ ଆସିଗଲାପରେ ସାଙ୍ଗ ଗାଣଆଳ ଟୋକାମାନେ ତାକୁ ଭିଡ଼ିନେଇଗଲେ ।

ନବୀନ ଉଦାସ କଣ୍ଠରେ ଡୁ-ଡୁ ଖେଳିବାପାଇଁ ମନାକଲା । ଖେଳକଥା ପଡ଼ିଲେ ନବୀନ ଆଗଭର ହୁଏ । ସେହି ଖେଳୁଆଡ଼ ନବୀନ ଆଜି ଖେଳିବାପାଇଁ ମନାକରୁଛି । ତାର ଏଭଳି ମନାକରିବା ଦେଖି ତାର ସାଙ୍ଗ ଚମାର କହିଲା– "ତୁମେସବୁ ବୁଝୁନାହଁ, କଥାଟା ରହିଲାଣି କେଉଁଠି । କିଆର ନିର୍ବନ୍ଧ ସରିଗଲାପରେ ମନ ତାର ଉଣାପଡ଼ିଯାଇଛି । ତାର ଆପଣାର କିଆକୁ ଆଉ ଜଣକୁ ସଁପିଦେଲା ପରେ ମନ ତାର ଭଲରହିବ କେମିତି ଯେ ? ଖେଳିବ ଅବା କିପରି ? ଏତକ ତୁମେସବୁ ବୁଝିପାରୁନାହଁ ?"

ଚମାର ଜଣେ ସବ୍‌ଜାନ୍‌ତା ଭଳି ମୁହଁରେ ହସ ଖେଳାଇ ସଭିଙ୍କ ମୁହଁକୁ ଥରେ ଅନାଇନେଲା । ମନରେ ତାର ଆତ୍ମତୃପ୍ତି । ସଭିଁଙ୍କୁ ସେ ଏତେବଡ଼ ଭିତରି କଥାଟା ଜଣାଇଦେଲା ବୋଲି ।

ଆଉ ଜଣେ ସାଙ୍ଗ କହିଲା– "ଏତେକଥା ଅଛି ବୋଲି ଆମକୁ କି ଜଣା; 'ମାରିନେଲାଣି ଆଉ ଜଣେ, ଚାହିଁରହିଛି ନବୀନ ଏଣେ' ।

ହୋ-ହୋ ହୋଇ ସମସ୍ତ ହସିଉଠିଲେ । ସେମାନଙ୍କ ଟାହିଟାପରା ହସ ଶୁଣି ନବୀନର ସର୍ବାଙ୍ଗ ରାଗରେ ଜଳିଉଠିଲା ଭଳି ମନେହେଲା । ମନ ରାଗକୁ ମନରେ ମାରି ସେ ସବୁ ଶୁଣିଯାଉଥାଏ; ମାତ୍ର ସେ କାହାକୁ କିଛି କହିପାରୁନଥାଏ । ତାର ମନ ଆଜି ଜଳିପୋଡ଼ିଗଲାଭଳି ଲାଗୁଛି । ଏତେଦିନର ଭାବ, ସ୍ନେହ, ପ୍ରୀତି କ୍ଷଣକେ କୁଆଡ଼େ ଚାଲିଗଲା ! କିଆ ଆଉ ଜଣଙ୍କର ବାଗ୍‌ଦତ୍ତା ହୋଇସାରିଲା ପରେ ଆଉ ତା' ସମ୍ବନ୍ଧରେ ଚିନ୍ତାକରିବା ମଧ୍ୟ ପାପ । ନା, ସେ ଆଉ କିଆ କଥା ଆଦୌ ଚିନ୍ତାକରିବନାହିଁ । ତାକୁ ମନରୁ ପୋଛିଦେବ । ଏତେ ଦିନର ମାୟା-ମମତାକୁ ସେ ଯଦି ତୁଟାଇଦେଇପାରିଲା, ତେବେ ସେ କାହିଁକି ତା' କଥା ହେଜିହେଉଥିବ ? ସେ ତାର କିଏ ? ସେ ତାର କେହି ନୁହେଁ ।

ମନର ଏଇପ୍ରକାର ରାଗ ତା' ମୁହଁସାରା ଖେଳିଗଲା । ମୁହଁ ଲାଲପଡ଼ିଗଲା । ଏକଥା ସେ ଉପରମନରେ ଆଜି କହିପାରୁଛି; ମାତ୍ର ତାର ଅନ୍ତର ଭିତର କିଆ ପାଇଁ ହା-ହାକାର କରୁଛି । ଅନ୍ତରାତ୍ମା ତାର ଥରିଉଠୁଛି । ତାକୁ ଚତୁର୍ଦ୍ଦିଗ ଶୂନ୍ୟମନେହେଉଛି ।

ନବୀନକୁ ଏଭଳି ନୀରବ ନିଶ୍ଚଳ ହୋଇ ଉଦାସ ମନରେ ବସିରହିବା ଦେଖି ତାର ସାଥୀ ଚମାର ତା' ପାଖକୁ ଆସି ପିଠିରେ ହାତମାରି କହିଲା– "ଆରେ, ଯାହା ତ ହେବା କଥା ହୋଇଗଲାଣି– ତୁ ଆଉ ଏତେ ଭାବୁଛୁ କ'ଣ ? ଭାବିଲେ କ'ଣ ସେ ଆଉ ତୋ' ପାଖକୁ ଫେରିଆସିବ ? ନିଜ ଜାତି ଲୋକକୁ ବାହାନହୋଇ

ତୋତେ ଆଉ ସେ ବାହା ହୋଇଥାଆନ୍ତା କି? କିଆ ମଙ୍ଗିଥିଲେ କ'ଣ ଜାତିଭାଇ ଛାଡ଼ିଦେଇଥାନ୍ତେ? ବାହାଦିନ ଠିକ୍‌ଠାକ୍ ହୋଲା; ଆସନ୍ତା ମାଘମାସରେ ବାହାଘର ହୋଇଯିବ। ଚିଡ଼ିଆ ଏ ବଣରୁ ଯାଇ ଆଉ ଗୋଟିଏ ବଣରେ ବସା ବାନ୍ଧିବ। ଏଥିପାଇଁ ତୁ ମନ ଊଣା କରୁଛୁ କାହିଁକି? ତୋତେ କ'ଣ ଝିଅ ମିଳିବେ ନାହିଁ ବୋଲି ଭାବୁଛୁ? କହିବୁ ତ କିଆ ବାହାଘର ଆଗରୁ ତୋର ବାହାଘର ହୋଇଯିବ। ତୋ' ପାଇଁ ଝିଅ ଅଭାବ ହେବନାହିଁ। ତୁମ କୁଳରେ କେତେ ଝିଅ ତୋତେ ବାହା ହେବାପାଇଁ ଟାକିବସିଛନ୍ତି। ମୋ କଥା ମାନି, ତୁ ମନ ଊଣା କରନା।"

ଏତକ କହି ତାକୁ ସାନ୍ତ୍ୱନାଦେଲା। ସାଥୀର ମନୋଦୁଃଖରେ ତାକୁ ସମବେଦନା ଜଣାଇଲା। ଚମାର ସିନା ତାକୁ ସାନ୍ତ୍ୱନା ଦେବାପାଇଁ ଏତେକଥା କହିଲା, ସେ ତାର ମନକଥା ଅବା କ'ଣ ବୁଝିବ? ସେ କ'ଣ କେବେ ଜାଣିପାରିବ, ନବୀନ କିଆକୁ କେତେ ଭଲପାଉଛି! ଭଲପାଇବାର ଅର୍ଥ ସେ କ'ଣ ବୁଝିବ? ଚମାରର ଆଶ୍ୱାସନା ତାକୁ ସାନ୍ତ୍ୱନା ନ ଦେଇ ବରଂ ତାର ହୃଦୟକୁ କୋରିପକାଇଲା ଭଳି ମନେହେଲା। ନବୀନ ଭଲଭାବରେ ଜାଣିଯାଇଛି, ତା' ସହିତ କିଆର ବାହାଘର କେବେ ସମ୍ଭବ ନୁହେଁ। ଯେଉଁଠି ସମାଜକଥା, ଜାତିକଥା ପଡ଼ିଛି, ସେଠି ଏ ବାହାଘର କେବେ ସମ୍ଭବ ନୁହେଁ। ସମାଜକୁ ଆଡ଼େଇ, ବାପ-ମା'ଙ୍କ ମନରେ କଷ୍ଟ ଦେଇ କିଆ କେବେ ତାର ହୋଇପାରିବନାହିଁ। ଏହା ସେ ଭଲଭାବରେ ଜାଣି ସୁଦ୍ଧା ତା' ପାଇଁ ମନ ଖରାପ କରିବା କଥା ନୁହେଁ।

ମାତ୍ର ଏ ଅବୁଝା ମନକୁ ବୁଝାଇବା ସହଜ କଥା କି? ଯେତେ ବୁଝାଇବାକୁ ଚେଷ୍ଟା କଲେ ମଧ ମନ ସହଜରେ ବୁଝୁନାହିଁ। ମନ ଯାହାଠି ଲାଖିଯାଇଛି, ତାକୁ ସହଜରେ ଭୁଲିଯାଇ ହୁଏ କି? ତା'ରି ଭାବନା, ତାରି ଚିନ୍ତା ମନରେ ପୁଲକ ସୃଷ୍ଟିକରେ। ତାର ସାଙ୍ଗମାନେ କହୁଥିଲେ, କିଆର ବରଟି ମଧ ଦେଖିବାକୁ ସୁନ୍ଦର, କାମିକା ପିଲା। ଖଣ୍ଡାଧାର ନାକ ତଳେ ଗଜୁରି ଉଠୁଥିବା ନିଶ ତାକୁ ବେଶ୍ ମାନୁଥାଏ। କିଆ ଏଡ଼େ ସୁନ୍ଦର ବର ପାଇଲା ପରେ ସବୁକଥା ସେ ଭୁଲିଯିବ; ଧୀରେ ଧୀରେ ମନରୁ ତାକୁ ପାସୋରିଦେବ। ଛି... ଆଉ ସେ କିଆ କଥା ଭାବୁଛି କାହିଁକି? ସେ ପରର ସ୍ତ୍ରୀ ହେବାକୁ ଯାଉଛି। ପର ସ୍ତ୍ରୀ ବିଷୟରେ ଭାବିବା ତା'ପକ୍ଷେ ଅନ୍ୟାୟ। ଏକ ମହାପାପ। ନା... ସେ ଆଉ କିଆ କଥା କେବେ ଭାବିବନାହିଁ। ମନକୁ ସେ ଦୃଢ଼ କରିବାକୁ ଚେଷ୍ଟାକଲା। ମନେମନେ ଶପଥ ନେଲା କିଆ କଥା ଆଉ ସେ ମନରେ ପୂରାଇବ ନାହିଁ ବୋଲି।

ମାତ୍ର ସେ ନିଜକୁ ଯେତେ କିଆର ଭାବନାଠୁଁ ଦୂରେଇ ରଖିବାକୁ ଚେଷ୍ଟାକଲା, ସେ ସେତେ ସେଇ ଭାବନା ଭିତରେ ଛନ୍ଦିହୋଇଯାଉଥାଏ। କେତେବେଳେ ଭାବି ଭାବି ଆନନ୍ଦରେ ଅଧୀର ହୋଇପଡୁଥାଏ। ମନ ତାର ସତେଜ ହୋଇଉଠୁଥାଏ;

ଉଲ୍ଲସିତ ହୋଇଉଠୁଥାଏ । ଆଉ କେତେବେଳେ ଭାବାବେଗରେ ଆଖି ତାର ଛଳଛଳ ହୋଇଉଠୁଥାଏ । ହୃଦୟ ଭିତରେ ଭରିଯାଉଥାଏ ଦୁଃଖ ଓ ବେଦନା । କିଛିକ୍ଷଣ ପରେ ମନରେ ତାର ଏକ ଭାବାନ୍ତର ସୃଷ୍ଟିହେଲା । ସେ କିଆକୁ ନେଇ ଏତେ ଭାବିବା ଠିକ୍ ହେଉନାହିଁ— କାଳେ ତାର ଅନିଷ୍ଟ ହୋଇପାରେ ! ଅମଙ୍ଗଳ ଆଶଙ୍କାରେ ମନ ତାର ଉଦ୍‌ବେଳିତ ହୋଇଉଠିଲା । ଭାବାବେଗରେ ତୁଣ୍ଡରୁ ବାହାରିପଡ଼ିଲା— କି . . . ଆ . . . ତୋତେ ଭୁଲିବାପାଇଁ ଅନେକ ଚେଷ୍ଟା କରୁଛି; କିନ୍ତୁ ପାରୁନାହିଁ । ତଥାପି ମୁଁ ତୋର ମଙ୍ଗଳ କାମନା କରୁଛି । ତୋ' ପ୍ରତି ମୋର ବିଦ୍ୱେଷ ନାହିଁ, ଅଭିମାନ କି ଈର୍ଷା ନାହିଁ । ତୁ ଯେଉଁଠି ଥିଲେ ମଧ୍ୟ ତୋର ଶୁଭମନାସୁଥିବି ।

ଏତେ ଦୁଃଖରେ ମଧ୍ୟ ତାର ଓଠ ତଳେ ଏକ କ୍ଷୀଣ ହାସ୍ୟରେଖା ଉକୁଟିଆସିଲା । ମନରେ ପ୍ରସନ୍ନତା ଖେଳିଗଲା । ଧୀରେ ଧୀରେ ମନରେ ଏକପ୍ରକାର ଶାନ୍ତଭାବ ଚହଟିଆସିଲା । ସେ କିଆର ଶୁଭମନାସିଲା ।

## (୨୩)

ନବୀନ ଖାଇବସିଛି । ତା'ର ମା' ରେଖା ତା'ପାଇଁ ଭାତ ପରଷୁଛି । ଗୋବିନ୍ଦ ଖାଇସାରି ଆରାମରେ ବସି ବିଡ଼ି ଟାଣି ଧୂଆଁ ଉପରକୁ ଛାଡୁଛି । କିଛି ସମୟ ବିଡ଼ି ଟାଣିସାରିଲା ପରେ ପାଖରେ ଥିବା ଖଟରେ ଗଡ଼ପଡ଼ ହେଉଛି । ଆଜି ତା' ମନ ଚଳଚଞ୍ଚଳ ହୋଇଉଠୁଛି । ଶୋଇବାଖଟରୁ ଉଠିପଡ଼ି ଚାରିଆଡ଼କୁ ଅନାଇ କାହାକୁ ଖୋଜିବା ଚାହାଣିରେ ଆଖି ବୁଲାଇ ଆଣୁଛି । ରେଖା ପୁଅକୁ ଖାଇବାକୁ ଦେଇ ଘରଭିତରୁ ବାହାରକୁ ଆସିଲା । ରେଖାକୁ ଦେଖି ଗୋବିନ୍ଦ ଡାକଛାଡ଼ିଲା— ''ଆଲୋ ଆ, ମନେପଡ଼ିଗଲା ଗୋଟିଏ କଥା ।''

ରେଖା ଦୂରରୁ ପାଟିକରି କହିଲା— ''କ'ଣ କହିବ କହୁନ, ମୁଁ ଏଇଠି ଅଛି ।''

ନବୀନ ଖାଇସାରି ହାତ ଧୋଇ ବାହାର ପିଣ୍ଡାରେ ବସିପଡ଼ିଲା । ଦୁଇବଖରା ଘର । ଗୋଟିଏ ବଖରାରେ ଗୋବିନ୍ଦ ଏବଂ ରେଖା ଶୁଅନ୍ତି । ଅନ୍ୟ ବଖରାରେ ନବୀନ ଶୁଆବସା କରେ । ଘର ଭିତରେ ଦୁଇଟି ଧାନପୁଡ଼ା ଥୁଆହୋଇଥାଏ । ଘର ସାମନାର ଟିକିଏ ଦୂରରେ ଗାଈଗୁହାଳ । ଦୁଇପଟ ବଳଦ । ଦୁଇପଟ ଦୁଧିଆଳୀ ଗାଈ ।

ଗୋବିନ୍ଦ ହାତଠାରି ପାଖକୁ ଆସିବାପାଇଁ ରେଖାକୁ ଡାକିଲା । ରେଖା ପାଖକୁ ଆସି ଖୁଣ୍ଟ ପାଖରେ ଛିଡ଼ାହୋଇ କହିଲା— ''କ'ଣ ପାଇଁ ଡାକିଲ, କିଛି କହୁନ କାହିଁକି ?''

—''କିଛି କହିବି ବୋଲି ତ ଡାକିଲି ।'' —ଗୋବିନ୍ଦ ଏହା କହି ତାର ସ୍ତ୍ରୀର

ମୁହଁକୁ ଚାହିଁ ହସିଦେଲା ।

—''ହସୁଛ କ'ଣ ମ ! କିଛି କହୁନ କାହିଁକି ? ଏଇଥିପାଇଁ ମୋତେ ଡାକିଲ ।'' ରେଖା ତାର ସ୍ୱାମୀର ଏଭଳି ଢଙ୍ଗ ଦେଖି ବ୍ୟସ୍ତହୋଇ କହିଲା— ''ମୋର ତେଣେ କେତେ କାମ ପଡ଼ିରହିଛି । ତମ ସହିତ ଏଇନେ ବସି ଖୁସି ଗପ କରିବାକୁ ମୋର ବେଳ କାହିଁ ?''

ରେଖା ସେଠାରୁ ଚାଲିଯିବାପାଇଁ ବସିଥିଲା; ଗୋବିନ୍ଦ କହିଲା— ''ତୁ ଏମିତି ବ୍ୟସ୍ତ ହେଲେ ଚଳିବ କେମିତି ?''

ଗୋବିନ୍ଦ ଚାରିଆଡ଼କୁ ଥରେ ଆଖି ବୁଲାଇଆଣି ରେଖାକୁ ପାଖକୁ ଆସିବାପାଇଁ କହିଲା— ଗୋଟିଏ ଖବର ଆସି ପହଞ୍ଚିଛି । ଶୁଭ ଖବର ।

ରେଖା ଶୁଭ ଖବର କଥା ଶୁଣି ଆଗ୍ରହରେ ଶୁଣିବାପାଇଁ ପାଖକୁ ଚାଲିଆସିଲା । ତା' ମୁହଁରେ ହସ ଚହଟିଆସିଲା । ଖବର ଜାଣିବାପାଇଁ ମନ ବ୍ୟାକୁଳ ହୋଇଉଠିଲା ।

—''କ'ଣ ଖବର ଶୀଘ୍ର କହୁନ, ଏମିତି ଲୁଚାଇ ରଖିଛ କାହିଁକି ?''

ରେଖା ସ୍ୱାମୀ ମୁହଁକୁ ସତୃଷ୍ଣ ନୟନରେ ଅନାଇରହିଲା ସେହି ଶୁଭ ଖବରଟିକକ ଜାଣିବାପାଇଁ । ଗୋବିନ୍ଦ ମୁହଁରେ ହସ ଫୁଟାଇ କହିଲା— ନବୀନପାଇଁ ଗୋଟିଏ ପ୍ରସ୍ତାବ ଆସିଛି । ଭଲ ଘର । ଭଲ ସୁନ୍ଦର ଝିଅ । କେଉଁଥିରେ କିଛି ଖୁଣିବାକୁ ନାହିଁ ।''

ରେଖା ବ୍ୟଗ୍ରତା ପ୍ରକାଶକରି କହିଲା— ''କେଉଁଠି, କାହା ଘର, କାହା ଝିଅ, ସବୁ କହିଲେ ସିନା ମୁଁ ଜାଣିବି ।''

—''ନାହିଁ ମ, ତୁ କ'ଣ ଜାଣିନୁ କି ? ତୋର ମାଉସୀଘର ଗାଁ ମ— ଚମ୍ପାଦେଈପୁର । ସେହି ଗାଁର ରଘୁମଣିର ଝିଅ— ନାଁଟି ତାର ଫୁଲମଣି । ସତର-ଅଠର ବର୍ଷର ଝିଅ । ତା' ସହିତ ଆମ ନବୀନପାଇଁ ପ୍ରସ୍ତାବ ଆସିଛି । ଆମେ ମଙ୍ଗିଲେ ହେଲା । ସେମାନଙ୍କ ଆଡୁ ଆପତ୍ତି କିଛି ନାହିଁ । ମୁଁ କ'ଣ ସେହି ଝିଅକୁ ଦେଖିନିକି ? ସୁନ୍ଦର ଝିଅଟିଏ । ଦେଖିବାକୁ ସୁନାଖଡ଼ିକା ଭଳି । ଆମ ନବୀନ ହଁକଲେ ହେଲା ।

—''ନବୀନ ମଙ୍ଗିବନାହିଁ କାହିଁକି ? ପୁଅ ଆମର ବଡ଼ ହୋଇଗଲାଣି । ତାକୁ ବାହାକରିଦେଲେ ଆମ ଦାୟିତ୍ୱ ଆମେ ଛିଣ୍ଡାଇଦେବା । ଲୋକେ ସଦାବେଳେ ପଚାରୁଛନ୍ତି, କିଏ କେତେ କଥା କହୁଛନ୍ତି । ସେହି ମ, ମଦନର ଝିଅ ନାଁ ସହିତ ଯୋଡ଼ି ଆମ ନବୀନକୁ ନେଇ କେତେକଥା କହୁଛନ୍ତି । ମୁଁ ସେଥିରେ କାନଦିଏନାହିଁ । ପିଲାଦିନରୁ ସେମାନେ ସାଙ୍ଗସାଥୀ । ତାକୁ ଧରିବସିଲେ ମଣିଷ ଚଳିବ କେମିତି ? ବାହାଘର କଥା ଲୋକେ ସଦାବେଳେ ପଚାରୁଛନ୍ତି । ମୁଁ ସେମାନଙ୍କୁ ଉତ୍ତର ଦିଏ— ପୁଅ ବାହାଘର କଲେ ତମେ ସବୁ ଜାଣିବ ନାହିଁ କି ? ପୁଅ ବୋହୂଙ୍କୁ ଆଶୀର୍ବାଦ କରିବାପାଇଁ ଆସିବ ନାହିଁ କି ? ପୁଅ ତ ଘରେ ଅଛି, ତାକୁ ମଧ୍ୟ ଥରେ ପଚାରି

ବୁଝିଦିଅ । ସେ କଅଣ କହୁଛି ।''

ଗୋବିନ୍ଦ କହିଲା— ''ମୋ ପୁଅ ଆଉ କ'ଣ ମୋ କଥାରୁ ବଳେଇଯିବ ?''

ସେଖାଠୁଁ ସବୁକଥା ବୁଝି ଗୋବିନ୍ଦ ନବୀନକୁ ଡାକିଲା । ନବୀନ ବାହାର ପିଣ୍ଡାରେ ବସିଥିଲା । ବାପର ଡାକ ଶୁଣି ପାଖକୁ ଚାଲିଆସିବାରୁ ଗୋବିନ୍ଦ ଥରେ ନବୀନକୁ ଦେଖିନେଲା । ପୁଅ ସତେ କେତେ ବଡ଼ ହୋଇଗଲାଣି; ହୃଷ୍ଟପୁଷ୍ଟ ଚେହେରା । ସତେ ଯେପରି ଅନେକ ଦିନ ପରେ ସେ ତା' ପୁଅକୁ ଦେଖୁଛି ।

ବାପ ତାକୁ ଏଭଳି ଅନେଇରହିଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ନବୀନ ପଚାରିଲା— ''ବାପା, ମୋତେ ଡାକିଲ ?''

ଗୋବିନ୍ଦ ଟିକିଏ ବ୍ୟଗ୍ରହୋଇ ଆଗ୍ରହରେ ତା' ମୁହଁକୁ ଚାହିଁ କହିଲା— ହଁ, ହଁ, ବାପ, ତୋତେ ଡାକିଲି । ଏଠି ବସ୍ । ତୋତେ ଗୋଟିଏ କଥା କହିବି ବୋଲି ଡାକିଲି ।''

ବାପର ଏଭଳି ସ୍ନେହପୂର୍ଣ୍ଣ ଡାକ, ଏଭଳି ଶ୍ରଦ୍ଧା ଦେଖି ନବୀନ ଆଶ୍ଚର୍ଯ୍ୟ ହୋଇ ତା' ମା' ମୁହଁକୁ ଅନାଇ ରହିଲା । ବାପ ଏତେ ଆଦରରେ ଡାକି ପାଖରେ ବସେଇବା କଥା ଦେଖି ତା' ମନରେ ନାନା ପ୍ରଶ୍ନ ଖେଳିଗଲା । ସେ ଆଶ୍ଚର୍ଯ୍ୟ ହୋଇ ତା' ବାପର ହସହସ ମୁହଁକୁ କେବଳ ଚାହିଁରହିଲା । ଗୋବିନ୍ଦ ତା' ପୁଅର ମୁଣ୍ଡରେ ହାତ ବୁଲାଇଆଣି କହିଲା— ପୁଅ ମୋର କେଡ଼େଟିଏ ହୋଇଗଲୁଣି । ପୁଅ ବଡ଼ହୋଇଗଲେ, ବାପର କର୍ତ୍ତବ୍ୟ ପୁଅର ହାତକୁ ଦି'ହାତ କରିଦେବା ।''

ବାପର ଏଭଳି କଥା ଶୁଣି ନବୀନ କିଛି ବୁଝିପାରିଲା ନାହିଁ । ସେ ତା' ବାପର ମୁହଁକୁ କେବଳ ବଲବଲ କରି ଅନାଇରହିଲା ।

ଗୋବିନ୍ଦ ତା' ପୁଅର ମୁଣ୍ଡରେ ହାତ ବୁଲାଇ ଆଣିଲା । ମୁଣ୍ଡର ବାଳକୁ ସାଉଁଳି ସାଉଁଳି କହିଲା— ''ହଁ, ତୋର ବାହାଘର ପାଇଁ ଗୋଟିଏ ଝିଅ ଠିକ୍‌କରିଛି । ଏ ବର୍ଷ ବାହା ପାଇଁ ସବୁ ଠିକ୍‌ଠାକ୍ ହୋଇଯାଇଛି ।

ବାପାଠୁଁ ଏତକ ଶୁଣି ନବୀନ ଦେହରେ ଏକ ଚମକ ଖେଳିଗଲା । ସେ କିଛି ଜାଣେନାହିଁ— ଏଣେ ବାପା ତାର ବାହାଘର ପାଇଁ ଝିଅ ଠିକ୍ କରିସାରିଲେଣି । ସେ ଦିନ ଠିକ୍ ଏଭଳି ସେ କିଆ ଉପରେ ମନେମନେ କେତେ ରାଗିଗଲା, ଅଭିମାନ କରିଥିଲା । କିଆ ବାହାଘର ପାଇଁ ଠିକ୍ ହୋଇସାରିଲାଣି, ଅଥଚ କିଆ ତାକୁ କେବେ କଥା କହିନଥିଲା ! ସେ ପ୍ରଥମେ ମାଳତୀଠୁଁ ଶୁଣିଥିଲା । ସେତେବେଳେ ସେ ବିଚାରୀ ଏତେ କଥା କିଛି ଜାଣିନଥିଲା । ଆଜି ଠିକ୍ ସେଭଳି ସେ କିଛି ଜାଣିନାହିଁ । ଏଣେ ବାପ ତାର ଝିଅ ଠିକ୍‌କରିସାରିଲେଣି ।

ମନରେ ତାର ରାଗ ଅଭିମାନ ଚହଟି ଆସିଲା । ପୁଣି ପରମୁହୂର୍ତ୍ତରେ ସେ ଭାବିଲା, ବାପ ହିସାବରେ ସେ ତାଙ୍କ କର୍ତ୍ତବ୍ୟ କରିଚାଲୁଛନ୍ତି । କେତେ ଶ୍ରଦ୍ଧାରେ

ସେ ତାର ବାହାଘର କଥା ପକାଇଛନ୍ତି। କିଆ କଥା ତା' ମନରେ ଉଙ୍କି ମାରିଲା। ସେ କିଆକୁ ଏତେ ଭଲପାଉଛି। ତାକୁ ଛାଡ଼ି ଆଉ ଜଣେ ଅଚିହ୍ନା ଝିଅକୁ ବାହାହେବାପାଇଁ ସେ କେବେ ହଁ କରିଦେଇ ପାରିବନାହିଁ। ମନ ତାର ଚଳଚଞ୍ଚଳ ହୋଇଉଠିଲା। ମନରେ ରାଗ ଓ ଅଭିମାନ ଖେଳିଗଲା। ତଥାପି ସେ ଭାବକୁ ଚାପିରଖି କହିଲା– ''ଏଇନେ ଏତେ ତରତର ହେବା କ'ଣ ଦରକାର ?''

ପୁଅମାନଙ୍କୁ ବାହାଘର କଥା କହିଲେ ସେମାନେ କେବେ ସହଜରେ ହଁକହିନ୍ତିନାହିଁ। ସେମାନଙ୍କ ମନରେ ଏକ ଅଜଣା ଆଶଙ୍କା ଓ ସଂକୋଚ ଖେଳିଯାଏ। ଠିକ୍ ସେଭଳି ନବୀନ ମଧ ତା' ବାପକୁ ଓଲଟା ବୁଝାଇବାକୁ ଲାଗିଲା।

ଗୋବିନ୍ଦ ତା' ପୁଅକୁ ବୁଝାଇ ପୁଣି କହିଲା– ଯେତେବେଳେ ଝିଅ ମୋର ପସନ୍ଦହୋଇଛି, ତୋର ପସନ୍ଦ ପାଇଁ ତୁ ନିଜେ ଥରେ ଦେଖିଆସିବୁ। ସେଥିପାଇଁ ଦିନ ଯୋଗ ଠିକ୍‌କରି ମୁଁ ଖବର ପଠାଇବି।

ନବୀନ ମନରୁ ଆଗ୍ରହଟିକକ ଲିଭିଯାଇଥାଏ। ସେ ତା' ବାପ ପାଖରୁ ଉଠି ମା' ପାଖକୁ ଚାଲିଆସିଲା। ନବୀନକୁ ଏମିତି ମୁହଁମାରି ନୀରବ ରହିବା ଦେଖି ରେଖା ପୁଅର ମନକୁ ବୁଝାଇବାପାଇଁ କହିଲା– ତୋ' ବାପ ତୋ'ରି ଭଲପାଇଁ ସବୁ କରୁଛନ୍ତି। ତୋର ବାହାହେବା ବୟସ ହୋଇଗଲାଣି। ତୋର ସାଙ୍ଗସାଥୀମାନେ ସଭିଏଁ ବାହାହୋଇଗଲେଣି।

ନବୀନ ଦେଖିଲା, ମା' ମଧ ତାକୁ ବୁଝାଇ ବାପାଙ୍କ କଥାରେ ମଙ୍ଗିବାପାଇଁ କହୁଛି। ତାର ଆଶା ନିରାଶାରେ ପରିଣତ ହେଲା। ମାତ୍ର ସେ ମନକୁ ଦୃଢ଼ କରିନେଇଛି, ସେ ଏଇନେ ବାହା ହୋଇପାରିବନାହିଁ।

ଗୋବିନ୍ଦ ପୁଅକୁ ଏମିତି ନୀରବ ରହୁଥିବା ଦେଖି ପୁଣି କହିଲା– ମୁଁ ଯାହା କହୁଛି ତୋର ଭଲପାଇଁ କହୁଛି। ଆଜି ନହେଲେ, କାଲି ତ ବାହା ହେବୁ। ତୋତେ ପଚାରି ଆମେ ଖବର ପଠାଇବୁଁ।''

ନବୀନ ଦେଖିଲା ଏଭଳି ନୀରବ ରହିଲେ ଚଳିବନାହିଁ; ତାକୁ କିଛି କହିବାକୁ ପଡ଼ିବ। ସେ ମନକୁ ଦୃଢ଼ ନିଶ୍ଚିତ କରି କହିଲା– ''ବାପା, ଏଇନେ ମୁଁ ବାହାହେବିନାହିଁ।'' ସେ ରୋକ୍‌ଠୋକ୍ ମନାକରିଦେଲା।

ନବୀନଠୁଁ ଏକଥା ଶୁଣି ଗୋବିନ୍ଦ କାଠପାଲଟିଗଲା। ସେ କେବେ ଆଶା-କରିନଥିଲା ଯେ ତା' ପୁଅ ତା' ଆଗରେ, ତା' କଥା ଉପରେ ମନାକରିଦେବ। ଆଶ୍ଚର୍ଯ୍ୟହୋଇ ତା'ମୁହଁକୁ କିଛିକ୍ଷଣ ଚାହିଁ ପଚାରିଲା– ''କାହିଁକି, କ'ଣ ହେଲାକି ?''

–''ନା ବାପା, ଏଇନେ ମୁଁ ବାହାହୋଇପାରିବିନାହିଁ।''

ନବୀନର କଥା ଶୁଣି, ରାଗରେ ଗୋବିନ୍ଦର ମୁହଁ ଲାଲପଡ଼ିଗଲା। ରାଗ ତମତମ ହୋଇ ପାଟିକରି କହିଲା– ''ମୁଁ ପରା ଏଣେ ତୋ' ବାହାପାଇଁ

କଥାଦେଇସାରିଲିଣି ?''

ରେଖା ପୁଅ ପାଖକୁ ଆସି ମୁଣ୍ଡରେ ହାତ ବୁଲାଇଆଣି କଅଁଳେଇ ତା' ମୁହଁକୁ ଚାହିଁ କହିଲା– ''ମୋ ଧନଟା ପରା, ବାପାଙ୍କ କଥା ଟାଳିଦେନା ପୁଅ ! ବାପାଙ୍କ ମନରେ କଷ୍ଟହେବ । କଥାଟା ପଡ଼ିସାରିଲାଣି ଯେତେବେଳେ, ସର୍ବଶୁଭରେ ଛିଣ୍ଡିଯିବା ଭଲ । ଝିଅଟି ମଧ୍ୟ ଦେଖିବାକୁ ଗୋଟିଏ ଚାଉଳରେ ଗଢ଼ା, ସୁନ୍ଦର ଝିଅଟା । ତାକୁ ମୁଁ ବୋହୂ କରିବି ବୋଲି ଭାବିଛି । ମୋ ସୁନାପୁଅଟା ପରା, ମୋ ସାନକୁହା ମାନ ।''

ରେଖା କେତେ ଅନୁନୟ ବିନୟ ହୋଇ ପୁଅକୁ ବୁଝାଇବାକୁ ଚେଷ୍ଟାକଲା । ନବୀନ ଦେଖିଲା– ତା' ମା'ର ବିକଳ ମୁହଁ, ଶୁଣିଲା କରୁଣ ସ୍ୱର । ତା' ମା'ର କଥା ଶୁଣି ତା' ମନରେ ଦୁଃଖହେଲା । ସେ ମନେ ମନେ ଭାବିଲା, ମା'କୁ ସବୁକଥା କହିଦେବ କି– ମୁଁ ମୋର ମନ ଓ ପ୍ରାଣ ଜଣକୁ ଅର୍ପଣ କରିଦେଇ ଆଉ ଗୋଟିଏ ଝିଅକୁ କେବେ ସୁଖୀ କରିପାରିବି କି ? ମାତ୍ର ସେ ଏତକ କଥା ତା ମା'କୁ କହିପାରିଲାନାହିଁ ।

ନବୀନ ମୁହଁ ଗମ୍ଭୀର କରି ତା' ମା'କୁ କହିଲା– ''ମା' ! ମୋତେ ଆଉ ବାହା କଥା କହନା । ମୁଁ ଏଇନେ ବାହାହୋଇପାରିବିନାହିଁ ।'' ଆଖି ତାର ଛଳଛଳ ହୋଇଉଠିଲା ।

ରେଖା ଏକ ଅଜଣା ଆଶଙ୍କାରେ ଥରିଉଠିଲା ।

–''ବାହାହେବିନାହିଁ କହିଲେ କ'ଣ କଥାଟା ଛିଣ୍ଡିଗଲା ?'' ଗୋବିନ୍ଦ ପାଟିକରି ଏତକ କହି ତା' ପୁଅ ମୁହଁକୁ ରାଗରେ ଅନାଇରହିଲା । ମୁଁ ତେଣେ କଥା ଦେଇଛି; ପୁଅ ଏଣେ କହୁଛି ବାହାହେବିନାହିଁ ।

ଗୋବିନ୍ଦର ମନରେ ଆଶଙ୍କା ଉଙ୍କିମାରିଲା । ଗାଁଲୋକଙ୍କ ତୁଣ୍ଡରୁ ଯାହା ଶୁଣୁଥିଲା ତାହା ତେବେ କ'ଣ ସତ ? କିଆର ତ ବାହାଘର ଠିକ୍ ହୋଇଗଲା, ନିର୍ବନ୍ଧ ସରିଗଲା, ବାହାପାଇଁ ଦିନକାଳ ସ୍ଥିରହୋଇଗଲା । ତେବେ ଏ ଆଉ ଏତେ ଅଝଟ ହେଉଛି କାହିଁକି ? ହଁ, ଏଇନେ ତାକୁ ଭୁଲିପାରିନି, ପରେ ମନ ବୁଝିଯିବନାହିଁ କି ?

ମନର ରାଗ ମନରେ ମାରି ନବୀନକୁ ବୁଝାଇବାପାଇଁ ଚେଷ୍ଟାକଲା– ''ଆମ କୁଳର ଏଡ଼େ ସୁନ୍ଦର ଝିଅଟି ହାତଛଡ଼ା ହୋଇଗଲେ ମୋ ମନରେ କଷ୍ଟହେବ ।''

ନବୀନ ନୀରବ ନିଶ୍ଚଳ ହୋଇ ଛିଡ଼ାହୋଇରହିଥାଏ । ସେ ଆଜି ତା' ବାପ-ମା'ଙ୍କ କଥାକୁ ଟାଳିଦେଇଛି । ଗୋବିନ୍ଦ ସମୟେ ସମୟେ ଉତ୍ତେଜିତ ହୋଇପଡୁଥାଏ । ପୁଅ ଉପରର ରାଗ ତାର ସ୍ତ୍ରୀ ଉପରେ ଝାଡ଼ିଦେଉଥାଏ– ''ତୁମ ଗୁଣବନ୍ତ ପୁଅର କୀର୍ତ୍ତି ଦେଖ । ବାପମା'ଙ୍କୁ କିପରି ଜବାବ ଦେଉଛି, ସବୁ ଶୁଣ । ମୋ କଥା ନ ରହିଲେ ମୋ ମହତ ଆଉ ରହିଲା କେଉଁଠି ?''

ରେଖା ବ୍ୟସ୍ତହୋଇପଡ଼ିଲା । ଏଣେ ତା ବାପ ରାଗି ଘର କମ୍ପାଇଦେଉଛି; ତେଣେ ପୁଅ ମୁହଁମାରି ତୁନିହୋଇ ଛିଡ଼ାହୋଇରହିଛି । ପୁଅ ତାର ଏତେ ଅବୁଝା ନୁହେଁ; ବଳେ ବୁଝିଯିବ । ଗାଁ ମାଇପିମାନଙ୍କ ଉଡ଼ାଖବର ତା' କାନରେ ମଧ୍ୟ ପଡ଼ିଥିଲା; ମାତ୍ର କିଆର ବାହାଘର ଖବର ଶୁଣିଲା ପରଠୁଁ ତା' ମନରୁ ମଧ୍ୟ ସବୁ ଦୁଃଶ୍ଚିନ୍ତା ଉଭେଇଯାଇଥିଲା । କିଆ ଜାଣିବା ଶୁଣିବା ଝିଅ; ଚାଲାଖ୍ ଝିଅ । ସେ ତ ଆମ କୁଳର ନୁହେଁ । ଆମ କୁଳ ଲୋକ ମଧ୍ୟ କେବେ ମଙ୍ଗିନଥାନ୍ତେ । ପୁଅ କିଛି ଅଘଟଣ ଘଟାଇଥିଲେ ଆମକୁ କୁଳରୁ ଅନ୍ତରକରିଦେଇଥାନ୍ତେ । ଏକ ଅଜଣା ଆଶଙ୍କାରେ ମନ ତାର ଥରିଉଠିଲା ।

ପୁଅ ମଧ୍ୟ ସବୁକଥା ବୁଝିଯାଇଛି । ଯାହା ଆମ କୁଳରେ କେବେ ଘଟିନାହିଁ, ସେଭଳି କଥା ସେ କରିବନାହିଁ । ରେଖା ମନେ ମନେ ଭାବିଲା – ପୁଅ ଏଇନେ ମଙ୍ଗୁନି, ପରେ ନିଶ୍ଚେ ମଙ୍ଗିଯିବ । ଝିଅ ଦେଖିଲାପରେ ମନ ତାର ନିଶ୍ଚୟ ବଦଳିଯିବ । ସମୟେ ସମୟେ ପୁଅମାନେ ଏ ବୟସରେ ବାହା କଥା କହିଲେ ପ୍ରଥମେ ମଙ୍ଗିବେ ନାହିଁ, ପରେ ସବୁକଥାରେ ହଁଭରିବେ । ଝିଅ ଦେଖିଲେ ମନ ବଦଳିଯିବ । ଏ ହେଉଛି ବୟସର ଦୋଷ । ସଭିଏଁ ଏଭଳି ଆଚରଣ ଦେଖାଇଥାନ୍ତି । ନବୀନର ବାପା ମଧ୍ୟ ପ୍ରଥମେ ବାହାହେବିନାହିଁ ବୋଲି ଜିଦ୍‌ଧରି ବସିଥିଲେ । ପରେ ଗାଁଲୋକ ବୁଝାଶୁଝା କରି କନିଆ ଦେଖାଇଦେଲା ପରେ ସବୁ ଓଲଟିଗଲା । ସେ ଭାବିଲା – ଏବେ କେତେଟା ଦିନ ଗଡ଼ିଯାଉ; ପରେ ସବୁ ଠିକ୍ ହୋଇଯିବନି କି ?

ରେଖା ତାର ସ୍ୱାମୀକୁ ଚାହିଁ କହିଲା – ''ଏଇନେ ତୁମେ ତାକୁ ଆଉ କିଛି କହନାହିଁ; ସମୟ ଆସିଲେ ବଳେ ସବୁ ଠିକ୍‌ହୋଇଯିବ । ଏଇନେ ତା' ମନ ଠିକ୍‌ନାହିଁ । ମନ ଠିକ୍ ଥିଲାବେଳେ ମୁଁ ତାକୁ ବୁଝାଇଦେବି । ଆମ ପୁଅ, ଆମ କଥା ରଖିବ ନାହିଁ କି ?''

ସ୍ତ୍ରୀର କଥା ଶୁଣି ଗୋବିନ୍ଦର ମନ ମଧ୍ୟ ବୁଝିଗଲା । ଆଶା ଏବଂ ବିଶ୍ୱାସରେ ସେ ତାର ସ୍ତ୍ରୀର ମୁହଁକୁ ଅନାଇରହିଲା ।

## (୨୪)

କିଆ ନିରୋଳାରେ ବାଡ଼ିପଟ କୂଅଁମୂଳେ ବସି କେତେ କ'ଣ ଭାବିଚାଲିଥାଏ । ଆଉ କିଛିଦିନ ପରେ ସେ ଏ ଗାଁର ମାୟା-ମମତା ଛାଡ଼ି ଅନ୍ୟ ଗାଁକୁ ଚାଲିଯିବ । ସେଠି ତାର ଆପଣାର ନୂଆ ଘର-ସଂସାର ଗଢ଼ିବ । ନୂଆ ଲୋକଙ୍କ ସହିତ ପରିଚିତହେବ । ନୂଆ ବନ୍ଧୁବାନ୍ଧବ ତାର ଆପଣାର ହେବେ । ସେମାନଙ୍କ ଭଲମନ୍ଦ ସହିତ ସେ ନିଜକୁ ମିଶାଇନେବ । ପର ହେବେ ଆପଣାର । ବାପ ମା' ଓ

ନିଜ ଲୋକଙ୍କ ମୁହଁ ଆଉ ଦେଖିବାକୁ ମିଳିବନାହିଁ। ତାର ଗେହ୍ଲା ସାନଭଉଣୀର ଦରଦଭରା କଅଁଳିଆ କଥା ଆଉ ଶୁଣିପାରିବନାହିଁ; ତାର ମମତାଭରା ନାନୀ ଡାକ ଆଉ ତା' କାନରେ ପଡ଼ିବନାହିଁ। ତାର ମନରେ ଏକ ଅକୁହା ବେଦନା ଭରିଉଠିଲା। ଆଖି ତାର ଛଳଛଳ ହୋଇଗଲା।

ଏତେ ଦୁଃଖ ବିଷାଦରେ ମଧ୍ୟ ନବୀନ କଥା ତାର ମନେପଡ଼ିଯାଉଥାଏ। ତା' ପ୍ରତି ତାର ଏକପ୍ରକାର ମମତା ଜାଗିଉଠିଲା। ତା' ପାଖରେ ଏଭଳି ଏକ ଆକର୍ଷଣ ଅଛି, ସେହି ଆକର୍ଷଣବଳରେ ମନ ତାର ଆପଣାଛାଏଁ ଅଧୀର ହୋଇଉଠୁଥିଲା। ତାର ମଧୁର କଥାପଦକ ଶୁଣିବାପାଇଁ ମନ ତାର ବ୍ୟାକୁଳ ହୋଇଉଠୁଥିଲା।

କ୍ଷଣିକପାଇଁ ତା' ଓଠରେ ହସ ଚହଟିଆସିଲା; ମାତ୍ର ତାର ପ୍ରେମକଳିକା ପ୍ରସ୍ଫୁଟିତ ହେବାପୂର୍ବରୁ ମଉଳିଗଲା। ପରମୁହୂର୍ତ୍ତରେ ପୁଣି ମନ ତାର ଉଦାସ ହୋଇଉଠିଲା। ପୁଣି ଚତୁର୍ଦ୍ଦିଗରେ ଅନ୍ଧକାର ଘୋଟିଗଲାଭଳି ମନେହେଲା।

ପୁଣି ମନରେ ଆଶା ସଂଚ଼ରିଯାଏ। ସେ ଏମିତି ସମୟେ ସମୟେ ଭାବେ— ତା' ମନକଥା ସବୁ ଗୋଟି ଗୋଟି ତା' ମା' ଆଗରେ କହିଦେବ କି? ନବୀନକୁ ଏକୁଟିଆ ଛାଡ଼ିଦେଇ ଚାଲିଯିବାପାଇଁ ମନ ତାର ମାନୁନାହିଁ। ସେ ତାକୁ ଭଲପାଇ କ'ଣ ଭୁଲ୍ କରିଛି? ନିଜକୁ ନିଜେ ସେ ଧିକ୍କାରିବାକୁ ଲାଗିଲା। ନିଜର ଏପରି ହୀନିମାନ ଜୀବନ ତାକୁ ଆଜି ତୁଚ୍ଛମନେହେଲା। ସେ ହତଭାଗିନୀ। ତା' ପାଇଁ ନବୀନ ଆଜି କେତେ କଲବଲ ହେଉଛି। ଭଲ ଝିଅଟିଏ ଦେଖି ବାହାହୋଇ ପଡ଼ିବାପାଇଁ ତାକୁ କହିଲାବେଳେ ସେ କେତେ ବିକଳ ହୋଇ ମୋ ମୁହଁକୁ ଅନାଇରହିଥିଲା। ମନରେ ତାର କେତେ ଆଘାତ ଲାଗିଛି। କେତେ କରୁଣ ତାର ଚାହାଣି, କେତେ କରୁଣ ତାର ସ୍ୱର ସେଦିନ ସେ ଶୁଣିପାରିଥିଲା— ମୋତେ କିଏ ବାହାହେବ? ଆଉ କାହାକୁ ବାହାହେବି? ଯାହାକୁ ବାହାହେବି ବୋଲି ମୋର ହୃଦୟ-ସିଂହାସନରେ ବସାଇରଖିଥିଲି ସେ . . . ତ . . . ଆଉ କହିପାରିଲା ନାହିଁ। ଆଖି ତାର ଛଳଛଳ ହୋଇଗଲା। ଅଶ୍ରୁସଜଳ ଦୃଷ୍ଟିରେ ସେ କେବଳ ମୋତେ ଚାହିଁରହିଥିଲା। ସେ-ହିଁ ସେହି ହତଭାଗିନୀ। ତା' ହୃଦୟର ରାଣୀ। ଆଜି ତାର ଏହି ଦୟନୀୟ ଅବସ୍ଥା। ନିଜେ ଜଳି ଆଉ ଜଣକୁ ଜଳାଇ ପୋଡ଼ାଇ କନ୍ଦାଇ ଯାଉଛି। ସବୁଦିନ ପାଇଁ ସବୁ ମାୟା-ମମତା ଛିଣ୍ଡାଇ ବିଦାୟ ହୋଇଯାଉଛି। ଏଥିରେ କାହାର ମଙ୍ଗଳ ହେବନାହିଁ।

ଏକ ଅଜଣା ଆଶଙ୍କାରେ ମନ ତାର ଦବିଗଲା। ଅତୀତର ସମସ୍ତ ସ୍ମୃତି ବିକଟାଳ ରୂପ ଧରି ତାକୁ ଗ୍ରାସ କରିବାକୁ ଉଦ୍ୟତ। ଭୟରେ ଚିତ୍କାରକରି ବେହୋସ ହୋଇ ତଳେ ପଡ଼ିଗଲାଭଳି ମନେହେଲା। ଦେହରୁ ଗମ୍‌ଗମ୍ ଝାଳ ବୋହିପଡ଼ିଲା।

ଛାତି ତାର ଧଡ଼୍‌ଧଡ଼୍ ହୋଇଉଠିଲା । ହୃଦୟର ସ୍ପନ୍ଦନ ବଢ଼ିଚାଲିଲା । ଏକ ଆତଙ୍କ ଭାବ ତାର ମନରେ ଖେଳିଗଲା । ତାକୁ ସବୁଆଡ଼ ଅନ୍ଧକାରମୟ ଜଣାପଡ଼ିଲା । ତାର ମନ ବ୍ୟତିବ୍ୟସ୍ତ ହୋଇଗଲା । ତାର ଆପଣାର ନବୀନର କିଛି ଅମଙ୍ଗଳ ହେବନାହିଁ ତ ? ତାର କିଛି ଅନିଷ୍ଟ ହେବନାହିଁ ତ ?

ସେ ସେହି ଅଦୃଷ୍ଟ ଶକ୍ତି ଉଦ୍ଦେଶ୍ୟରେ ହାତ ଯୋଡ଼ି ନବୀନର ଶୁଭମନାସିଲା । ଭୟରେ ଭକ୍ତିରେ ମୁଣ୍ଡ ଆପଣାଛାଏଁ ନଇଁଗଲା । ଏମିତି ଭାବନା ଭିତରେ ଭୟଭୀତ ହୋଇ ସେ ବହୁକ୍ଷଣ ବୁଡ଼ିରହିଲା । ଆଜି ସେ ତା' ମନକୁ ସ୍ଥିର ରଖିପାରିଲାନାହିଁ । ମନ ଉଦ୍‌ଭ୍ରାନ୍ତ ଓ ଚଞ୍ଚଳ ହୋଇଉଠିଲା । ଏକ ଅର୍ଥହୀନ କୁହେଳିକା ସଦୃଶ ମନ ଆଚ୍ଛନ୍ନ ହୋଇ ରହିଲା । ଏକ ଉଦାସ ଭାବ ତା' ମନ ଭିତରେ ଖେଳିଯାଇଥାଏ ।

ସେତିକିବେଳେ ତାର ମା' ବାଡ଼ିପଟକୁ ଆସି କିଆକୁ ଏଭଳି ଅବସ୍ଥାରେ ଏକୁଟିଆ ବସିଥିବା ଦେଖି ତା' ମନରେ ନାନା ଆଶଙ୍କା ଖେଳିଗଲା । ପାଖକୁ ଆସି ତାର ଭୟାର୍ତ୍ତ ଚାହାଣି ଏବଂ ଝାଉଁଳିପଡ଼ିଥିବା ମୁହଁକୁ ଦେଖି ତା' ମା' ମନରେ ଭୟ ଜାତହେଲା । ପଚାରିଲା – ''ଆଲୋ, ଏମିତି କିଆଁ ମନ ମାରି ବସିଛୁ ? କ'ଣ ହୋଇଛି ତୋର, କହୁନାହୁଁ କାହିଁକି ମୋତେ ?''

ମା'ର ସ୍ନେହାସିକ୍ତ ଆତୁର କଥା ତାର ହୃଦୟକୁ ଟହଲାଇଦେଲା । ମଣିଷର ଦୁଃଖ ସମୟରେ ସମବେଦନା ପାଇଲେ ହୃଦୟର ନିଭୃତ କୋଣରେ ଲୁଚିରହିଥିବା କୋହ ଭାବୋଚ୍ଛ୍ୱାସରେ ଲୋତକ ଆକାରେ ବୋହିପଡ଼େ । ମା'ର ମମତାଭରା କଥା କେତେ ପଦ ଶୁଣି କିଆର ଆଖିରୁ ଲୁହ ଗଡ଼ିପଡ଼ିଲା । ସେ ତାର ମା'କୁ ଭିଡ଼ିଧରି ସକେଇସକେଇ କାନ୍ଦିଉଠିଲା । ଝିଅ ଏଭଳି କାନ୍ଦୁଥିବା ଦେଖି ମା'ର ମନ ବିଚଳିତ ହୋଇପଡ଼ିଲା । ତା' ଆଖିରେ ମଧ୍ୟ ଅମାନିଆ ଲୁହ ଭରିଗଲା । ଝିଅର ଲୋତକସିକ୍ତ ମୁହଁକୁ ଉପରକୁ ଟେକି ତାର ପଣତକାନିରେ ଝିଅର ଆଖିରୁ ଲୁହ ପୋଛିଦେଇ ତାକୁ ସାନ୍ତ୍ୱନାଦେଲା । ସେ ବୁଝିଲା, ଝିଅ ତାର ମା'-ବାପଙ୍କୁ ଛାଡ଼ି ଶାଶୁଘରକୁ ଯାଉଛି; ଘରକଥା ହେଜି ବାହୁନିହେଉଛି ।

ତାକୁ ବୁଝାଇବାଭଳି ମା' କହିଲା – ''ଆଲୋ ମା, ଝିଅଜନମ ଶାଶୁଘରକୁ । ଏତେଦିନ ଗେହ୍ଲବସରରେ ଖୁଆଇ ପିଆଇ ବଢ଼ାଇଥିଲି; ଏବେ ତୁ ତୋର ସଂସାର ଗଢ଼ିବୁ । ଝିଅ ବଡ଼ହୋଇଗଲେ ଆଉ ଜଣକୁ ଆପଣାର କରିନିଏ । ମା'ଘରେ ଝିଅ ଜନମ ହୋଇ ବଡ଼ହେଲେ ପରଘରକୁ ଚାଲିଯାଏ – ଏ ତ ଦୁନିଆର ନିତିଦିନିଆ କଥା । ସଂସାରରେ ସବୁ ଝିଅ ପାଇଁ ଏକା କଥା ।''

କିଆ ମନରେ ଲୁଚିରହିଥିଲା ଅନ୍ୟ ପାଇଁ ଏକ ଗଭୀର ମମତା, ଯା'ଠୁଁ ସେ ଆଉ ଅଳ୍ପଦିନ ପରେ ଦୂରେଇଯିବ– ତା' କଥା ଆଉ ସେ ପରେ ଭାବିପାରିବ ନାହିଁ– ଭାବିବା ଅନୁଚିତ ହେବ, ପାପ ହେବ– ମାତ୍ର ସେହି କଥାପଦକ ସେ

କେବେ ତା' ମା'କୁ କହିପାରିବନାହିଁ। ତାହା ତାର ମରମକଥା। ମନଗହନରେ ଲୁଚିରହିଥିବା କଥା। ଏଭଳି ମନଗହନର କଥା କେବେ ଅନ୍ୟ ଆଗରେ କହିହୁଏ କି? କହିବାପାଇଁ କେତେବେଳେ ମନ ଚାହିଁଲେ ମଧ୍ୟ ସହଜରେ ମନଭିତରୁ ସେହି କଥା ବାହାରିପାରେନାହିଁ। ହୃଦୟରେ ଲାଗିରହେ କଣ୍ଟାଭଳି। ସେ କଥା ଭାବିଲେ, ନିଜ ହୃଦୟରେ ସେ କଣ୍ଟା ବାଜି କେବଳ କ୍ଷତବିକ୍ଷତକରେ। ସେ କଣ୍ଟା କାଢ଼ିବା ତା'ପକ୍ଷେ ସହଜ ନୁହେଁ; ହୃଦୟର ଗଭୀରତମ ପ୍ରଦେଶରେ ଲାଖିରହିଛି।

ମା'ର ଅଶ୍ରୁଭିଜା ଆଖିକୁ ଦେଖି କିଆ ଆଉ ଅନ୍ତରର କୋହକୁ ସମ୍ଭାଳି ପାରିଲା ନାହିଁ। କଇଁକଇଁ ହୋଇ କାନ୍ଦିପକାଇ ତା' ମା' ପଣତକାନିରେ ମୁହଁ ଘୋଡ଼େଇଦେଲା। ତାର କାନ୍ଦ ଦେଖି ତା' ମା' ଆଖିରୁ ମଧ୍ୟ ଲୁହ ଗଡ଼ିପଡ଼ିଲା। କାନ୍ଦିଲେ-କୁଟିଲେ ମଧ୍ୟ କିଆ ମନର ଗହନ କଥା ମା' ବୁଝିପାରିଲାନାହିଁ। ସେ କେବଳ ଏତକ ଜାଣିଲା, ଝିଅ ତାର ଶାଶୁଘରକୁ ଚାଲିଯାଉଛି ବୋଲି ମନ ତାର ଦୁଃଖରେ ଭାଙ୍ଗିପଡ଼ିଛି। ମନର ଦୁଃଖ ଲୁହ ଆକାରରେ ଆଖିରୁ ଗଡ଼ିପଡୁଛି। ଏମିତି ସବୁ ଝିଅଙ୍କର ବାପଘର ଛାଡ଼ି ଶାଶୁଘରକୁ ଗଲାବେଳେ ମନରେ ବେଦନା ସୃଷ୍ଟିହୋଇଥାଏ।

କୁଆଁରୀ ଜୀବନ ଉଚ୍ଛଳ ଝରଣାପରି। ଝରଣାଭଳି ମନ ଚଳଚଞ୍ଚଳ। କୁଆଁରୀ କନ୍ୟା ମନ ଟିକକରେ ଚହଲିଯାଏ। ସାବଧାନ ନହେଲେ ଗୋଡ଼ ଖସିଯିବାକୁ ବେଳ ଲାଗେନାହିଁ। ଥରେ ଗୋଡ଼ ଖସିଗଲେ ଆଉ ସେ ଗୋଡ଼ ଲେଉଟି ଆସିପାରେନାହିଁ; ଆହୁରି ଗହୀରରୁ ଗହୀରକୁ ଗୋଡ଼ ଖସି ଖସି ଚାଲିଯାଏ। ପଛକୁ ହେଜି ଦେଖିଲାବେଳକୁ ସେ ବହୁ ଆଗକୁ ଠେଲିହୋଇଯାଇଛି; ଯେଉଁଠୁ ସେ ଫେରି ଆସି ପାରିବ ନାହିଁ। ସେଥିପାଇଁ କୁଆଁରୀକନ୍ୟା ସଦା ସାବଧାନରେ ଚଳିଥାଏ। ଏ ଚଳିବାଟା ତାକୁ କେହି ଶିଖାଇଦେଇନଥାଏ; ଆପେ ଆପେ ସବୁ ଶିଖିଯାଇଥାଏ। ସଂସାରର ଚାଲିଚଳଣ ଦେଖି ସେ ସବୁକଥା ବୁଝିଯାଉଥାଏ ଏବଂ ଆପେ ଆପେ ନିଜକୁ ଖାପ ଖୁଆଇ ନେଉଥାଏ। ଯେତେ ଜାଣିବାକଥା, ଯେତେ ତାର ଦରକାର, ସେତକ ଦେଖି ଦେଖି ଶିଖିଯାଇଥାଏ।

ପୁରୁଷ ସେହି ବୟସରେ ଯେତକ ଜାଣିବାକଥା, ଶିଖିବାକଥା ସେତକ ଶିଖିପାରିନଥାଏ। ସେହି ବୟସର ଝିଅ ତା'ଠୁ ଅଧିକ ଶିଖିଯାଇଥାଏ, ଅଧିକ ସଚେତନ ହୋଇପଡ଼ିଥାଏ। ସଂସାରରେ ନାରୀ ପୁରୁଷଠୁ ବହୁ ଆଗରୁ ବହୁକଥା ଜାଣିଯାଇଥାଏ। ସେଇଥିପାଇଁ ସେ ସଦାବେଳେ ସବୁପାଇଁ ପ୍ରସ୍ତୁତ ହୋଇଯାଇଥାଏ।

ଘରଭିତରୁ କାହାର ଡାକ ଶୁଣି ରେବତୀ ହୃଦୟର କୋହ ଏବଂ ଆଖିର ଲୁହକୁ ଚାପିରଖି ମୁହଁକୁ ପଣତକାନିରେ ପୋଛିଦେଇ ତରତର ହୋଇ ସେଠୁ ଚାଲିଆସିଲା। ଦେଖେ ତ ଗାଁମାଇପେ ଦଳ ଦଳ ହୋଇ ଆସୁଛନ୍ତି। ସମସ୍ତଙ୍କ ମୁହଁରେ ହସ। ଝିଅ ବାହା ଆଗରୁ କିଏ ଦୁଇପଦ କଥା ହେବାପାଇଁ ଆସିଥାଏ।

କିଆ ଶାଶୁଘରକୁ ଚାଲିଗଲେ ଆଉ କଥା ହୋଇ ପାରିବେ ନାହିଁ। କିଏ ଝିଅକୁ ଭେଟିଦେବାପାଇଁ ଆସିଥାଏ। ଶାଶୁଘରେ ତାକୁ ହେତୁକରୁଥିବ ବୋଲି କହି ତା' ସହିତ ବସି ମନଖୁସିରେ ଦୁଇପଦ କଥା ହେବାପାଇଁ ଆସିଯାଇଥାନ୍ତି।

ରେବତୀ ଘର ଭିତରକୁ ଆସି ଏତେ ସ୍ତ୍ରୀଲୋକଙ୍କୁ ଦେଖି କିଆକୁ ଡାକଦେଲା – ''ଆଲୋ ମା କିଆ, ଆ ଘରକୁ ଆ। ତୋତେ ଦେଖିବାପାଇଁ କେତେ ଲୋକ ଆସିଛନ୍ତି।''

କିଆ ମା'ର ଡାକ ଶୁଣି ପଣତକାନିରେ ତା' ଆଖିର ଲୁହକୁ ପୋଛିଦେଇ ମୁହଁରେ ହସ ଫୁଟାଇ ଗାଁ ମାଇପିଙ୍କୁ ଭେଟିବାପାଇଁ ଆସିଲା। କିଏ ତାର ମାଉସୀ, କିଏ ତାର ଖୁଡ଼ୀ, କିଏ ତାର ଭାଉଜ, କିଏ ତାର ସାଙ୍ଗସାଥୀ ଏମିତି କେତେ ଲୋକ ଆସି ରୁଣ୍ଡହୋଇଯାଇଥାନ୍ତି। ଜୀବନର ଚଲାପଥରେ ଚାଲିବାକୁ ହେଲେ ଆଖିରେ କାନ୍ଦି ମୁହଁରେ ହସଫୁଟାଇବାକୁପଡ଼ିବ।

କିଆ ଆସି ସେମାନଙ୍କ ପାଖରେ ବସି ସମସ୍ତିଙ୍କ ସହିତ ହସି କଥା ହେଉଥାଏ। କିଏ ଶ୍ରଦ୍ଧାରେ ତା' ସହିତ ଦୁଇପଦ କଥା ହୋଇ ତା' ମୁହଁକୁ ଚାହିଁରହିଥାଏ। ''ଆମକୁ ମନେପକାଉଥିବ, ଭୁଲିଯିବନାହିଁ'' ବୋଲି କହି ତାର ଚିବୁକକୁ ହଲାଇଦେଉଥାନ୍ତି। ସେମାନେ ଆନନ୍ଦରେ କୁରୁଳିଉଠୁଥାନ୍ତି। କିଆ ମଧ୍ୟ ସେମାନଙ୍କ ହସ ସହିତ ହସ ମିଳାଇ ଦେଉଥାଏ।

କଥାବାର୍ତ୍ତା ସାରି ଘରଜଞ୍ଜାଳୀ ସ୍ତ୍ରୀଲୋକମାନେ ବସିବା ସ୍ଥାନରୁ ଉଠିପଡ଼ିଲେ। କିଏ କହୁଥାଏ, 'ପୁଅ ତେଣେ କାନ୍ଦୁଥିବ', ଆଉ କିଏ କହୁଥାଏ, 'ତାଙ୍କର ଆସିବା ବେଳ ହୋଇଗଲାଣି, ସେ ଆସିଯାଇଥିବେ'; କିଏ କହୁଥାଏ – 'ତେଣେ କେତେ କାମ ଘରେ ପଡ଼ିରହିଛି।' ଏମିତି କଥା ହୋଇ ହସି ହସି କିଆକୁ ଅନାଇ ନିଜ ନିଜ ଘରକୁ ଫେରିଯାଉଥାନ୍ତି।

ବୟସ୍କା ମହିଳାମାନେ ତାକୁ ସାନ୍ତ୍ୱନା ଦେଇ ସ୍ୱାମୀ ମନକୁ ଜଗିରଖି ଚଳାଇ ନେବାପାଇଁ ଉପଦେଶ ଦେଇ ଚାଲିଯାଉଥାନ୍ତି। ନୂଆ ବାହାହୋଇ ଥିବା ଭୁଆସୁଣୀ ତାର ସାଙ୍ଗ ମେଳରେ ଆସି କିଆ ପାଖରେ ବସିପଡ଼ି କେତେ ଥଟ୍ଟା-ଟାପରା ହେଉଥାଏ। ଲେଖାଯୋଖାରେ ସେ ତାର ଭାଉଜ ହେବ। ଯୌବନ ସାରା ଅଙ୍ଗରେ ଲହଡ଼ିମାରୁଥାଏ। କୋମଳ ଅଙ୍ଗରେ ତାର ସୌନ୍ଦର୍ଯ୍ୟ ଚହଟିଉଠୁଥାଏ। ମୁହଁରେ ଲଜ୍ଜାଭାବ, କନକନ ଚାହାଣି, ବଳିଷ୍ଠ ଗୌର ତନୁ, ତୀକ୍ଷ୍ଣ ନାସିକା, ହାସ୍ୟମୁଖର ମୁଖମଣ୍ଡଳ ଦେଖିଲେ ମନରେ ଆବେଗ ସୃଷ୍ଟିକରୁଥାଏ।

ସେ କିଆର ଅତି ନିକଟରେ ବସି ଅପଲକ ନୟନରେ କିଆକୁ ଅନାଇଲା। ତାର ନୂଆ ଭାଉଜର ଚାହାଣିରେ ସେ ଲାଜେଇଗଲା; ମୁହଁ ଆପେ ଆପେ ତଳକୁ ହୋଇଗଲା। ମୁହଁ ଟେକି ତାକୁ ଚାହିଁବାକୁ ସଂକୋଚ ଲାଗୁଥାଏ। ମନରେ

ଏକପ୍ରକାର ଅହେତୁକ କୁତୁହଳ ଜାତହେଲା। ତାର ନୂଆଭାଉଜ ମୁହଁରେ ହସ ଫୁଟାଇ ମଧୁର ସ୍ୱରରେ କହିଲା – ''ନୂଆ ବର ପାଇଲେ ଆମ କଥା ମନେପଡ଼ିବ ତ ? ଆମକୁ ଭୁଲିଯିବନି ତ ?''

କିଆ ଆସ୍ତେ ମୁହଁ ଟେକି, ଥରେ ତା' ଭାଉଜଙ୍କର ସୁନ୍ଦର ମୁହଁକୁ ଦେଖିନେଇ ମୁହଁରେ ହସ ଫୁଟାଇ କହିଲା – ''ତୁମେ ଯେମିତି ଭାଇଙ୍କୁ ପାଇଲାପରେ, ତୁମ ସାଙ୍ଗସାଥୀମାନଙ୍କୁ ଭୁଲିଗଲ, ସେମିତି ଭୁଲିଯିବି ବୋଲି ଭାବୁଛ କି ?''

ନୂଆ ଭୁଆସୁଣୀ କିଆ କଥା ଶୁଣି ଖିଲିଖିଲି ହୋଇ ହସିଉଠିଲା। ତାର ହସରେ ଓଠର ଦୁଇ ଫାଙ୍କରୁ କୁନ୍ଦିହେଲାଭଳି ଦନ୍ତପଂକ୍ତି ଫୁଟିଉଠିଲା।

ପତିସୋହାଗିନୀ ନାରୀ ପାଇଁ ପୁରୁଷ ତାର ପରମଦେବତା। କିଆ ତାର ନୂଆଭାଉଜଙ୍କ ମୁହଁକୁ ଦେଖି ତା' ମନରେ କେତେ ସ୍ୱପ୍ନ ଜାଗିଉଠିଲା। କୁଆଁରୀ କନ୍ୟା ପାଇଁ ବାହାଘର କେତେ ଆକର୍ଷଣୀୟ; ମନରେ ସୃଷ୍ଟିକରେ କେତେ ପୁଲକ। ହୃଦୟରେ ଭରିଦିଏ କେତେ ସ୍ୱପ୍ନ, କେତେ ସ୍ପନ୍ଦନ। ସମାଜ ପାଇଁ ବିବାହ କେବଳ ଔପଚାରିକ ବିଧିବିଧାନ। ତାହା ନାରୀ ପୁରୁଷର ମିଳନ ପାଇଁ ସାମାଜିକ ସମ୍ମତି, ଏକ ବିଧିସମ୍ମତ ଅନୁମତି। ଦୁଇ ଆତ୍ମାର ମଧୁର ମିଳନ। କିନ୍ତୁ ନାରୀପାଇଁ ତାହା ଆହୁରି ଅଧିକ, ଆହୁରି ଅଧିକ ମହତ୍ୱପୂର୍ଣ୍ଣ। ତାର ଜୀବନର ପୂର୍ଣ୍ଣତା ପାଇଁ ଛନ୍ଦି-ହୋଇଯାଇଥାଏ ଘଟସୂତ୍ରର ମଧୁର ବନ୍ଧନ ମଧ୍ୟରେ। ସେହି ମଧୁର ମିଳନପାଇଁ ନାରୀ କେତେଦିନରୁ ଅପେକ୍ଷା କରି ରହିଥାଏ। ସେଥିପାଇଁ କେତେ ପୂଜା ଓଷାବ୍ରତ ପାଳନକରିଥାଏ। ତା' ମନରେ ଖେଳିଯାଇଥାଏ କେତେ ଯେ ସ୍ୱପ୍ନ। ସମୟେ ସମୟେ ସେ ହୋଇପଡ଼ିଥାଏ ଆତ୍ମହରା। ବିବାହର ବାସର ରାତି, ତାର ଜୀବନର ମଧୁର ମିଳନ ପାଇଁ କେତେ ଦିନର ପ୍ରତୀକ୍ଷା ଯେତେବେଳେ ହୁଏ ସାକାର ସେତେ-ବେଳେ ସେ ଆତ୍ମବିଭୋର ହେବା ସ୍ୱାଭାବିକ। ବିବାହର ବାସର ରଜନୀରେ ପ୍ରିୟତମ ସହ ପ୍ରଥମ ମିଳନ। ପ୍ରତ୍ୟେକ କୁଆଁରୀକନ୍ୟା ଏହି ଦିନଟି ପାଇଁ କେତେ ଆଶାରେ ପ୍ରତୀକ୍ଷା କରି ରହିଥାଏ। ତାର ପ୍ରାଣପ୍ରିୟର ବାହୁବନ୍ଧନରେ ମଧୁର ଛନ୍ଦରେ ଛନ୍ଦିହୋଇ ତାର ସଞ୍ଚିତ ସର୍ବସ୍ୱ ପ୍ରିୟତମକୁ ଅର୍ପଣକରି ସେ ହୋଇପଡ଼େ ଆତ୍ମହରା, ପାଏ ପରମ ତୃପ୍ତି। ସେହି ମିଳନରାତ୍ରି ହୋଇଉଠେ ସୁଖମୟ ଆନନ୍ଦମୟ।

କିଆ ଆତ୍ମବିଭୋର ହୋଇ ତାର ନୂଆ ଭାଉଜଙ୍କର ସଜଫୁଟା ଫୁଲଟିଏ ଭଳି ସୁନ୍ଦର ମୁହଁକୁ ଚାହିଁରହିଥାଏ। ଭାଉଜ କିଆର ଚିବୁକରେ ହାତ ମାରି ମୁହଁକୁ ଅନାଇଁ ନିଜ ଜୀବନର ମଧୁର ଅନୁଭୂତି କଥା ଭାବି ପୁଲକିତ ମନରେ କିଆକୁ କହୁଥାଏ – ''ତୁମର ମଧ୍ୟ ସେ ଦିନ ନିକଟହୋଇ ଆସୁଛି, ଯାହାକୁ ଭେଟିବା ପାଇଁ ମନ ଛନଛନ ହେଉଛି।'' କିଆକୁ ଧରି ଟିକିଏ ହଲାଇ ଦେଇ କହୁଛି, ''ଏତେ ଡରିବାର କିଛି ନାହିଁ. . .ମ।''

ଏତକ କହି ଖିଲିଖିଲି ହସିଉଠିଲା । ତା' ହସରେ ହସ ମିଳାଇ ସାଥୀମାନେ ମଧ୍ୟ ହସିଉଠିଲେ । ଏମିତି ହସ ଟାହିଟାପରା ମଧ୍ୟରେ ଅନେକ ସମୟ ବିତିଗଲା; ସେମାନେ ଜାଣିପାରିଲେନାହିଁ । ଏତେବେଳେ ବାହାରେ କାହାର ଡାକ ଶୁଣି ଭାଉଜ ତାଙ୍କ ସାଙ୍ଗମେଳରେ ବସି ଗପୁଥିବା ଅସରନ୍ତି ଗପକୁ ଛିଣ୍ଡାଇ ଉଠିପଡ଼ି କହିଲା – ''ହେଇ, ଆଉ କେତେ ଲୋକ ଆସିଲେଣି । ଏଇନେ ଯାଉଛି, ଘରେ କେତେ କାମ ପଡ଼ିଛି । କିଆ ଗୋ, ଯାଉଛି... ମନେରଖିଥିବ ଗୋ, ଭୁଲିବ ନାହିଁ ।'' – ଏହା କହି ମୁହଁରେ ହସ ଫୁଟାଇ ବିଦାୟନେଇଗଲା ।

ସମସ୍ତେ ଗୋଟି ଗୋଟି ହୋଇ ଚାଲିଗଲେଣି । କିଆର ଲେଖାଯୋଖାରେ ଆଈ ସତୁରି ବର୍ଷର ବୁଢ଼ୀ କିଆ ପାଖକୁ ଚାଲିଆସି ହସି ହସି କହିଲା – ''ଆଲୋ ନାତୁଣୀ, ନୂଆ ବରକୁ ଦେଖି ଆମକୁ ଭୁଲିଯିବୁନି ତ ? ନୂଆ ମରଦ ସଙ୍ଗେ ହସଖୁସିରେ ରାତି ପୋହିଦେବୁ । ଜଗିରଖି ଚଳୁଥିବୁ ଲୋ ନାତୁଣୀ ।'' ଏହା କହି କିଆ ମୁଣ୍ଡରେ ହାତ ବୁଲାଇଆଣିଲା । କିଆ ତାକୁ ଆସନ ପାରି ହାତ ଧରି ବସାଇଦେଲା ।

''ଯୁବତୀ ଝିଅର ହାତକୁ ଦି'ହାତ ହେବା, ମଥାରେ ସିନ୍ଦୂର ଲଗାଇ କୋଳରେ ପିଲା ଧରିବା ତାର ପରମ ଧର୍ମ । ସେଥିରେହିଁ ନାରୀ ଜୀବନ ସାର୍ଥକ ହୋଇଥାଏ ।'' ଏହା କହି ବୁଢ଼ୀ ତାର ଚିବୁକ ଧରି ହଲାଇଦେଲା ।

କିଆ ତାର ଆଈର ଶରଧାଟିକକ ଦେଖି ମୁହଁରେ ହସ ଖେଳାଇ କହିଲା – ''ସତେ ଆଈ, ତୁମକୁ କେବେ ମୁଁ ଭୁଲିପାରିବି ନାହିଁ । ସବୁବେଳେ ତୁମ କଥା ମୋର ମନେପଡୁଥିବ ।''

–''ହଁ ଲୋ ହଁ, ଏସବୁ କଥା ମନଭୁଲାଣିଆ କଥା । ନୂଆ ମରଦକୁ ପାଇଲେ ଆମ କଥା ଆଉ ମନେପଡ଼ିବନା ?''

ଆଈର କଥାରେ କିଆର ମନ ଉଲ୍ଲସିତ ହୋଇଉଠିଲା । ତା' ମନରେ ଖେଳିଗଲା ଭାବନାର ତରଙ୍ଗ, ଆଖିରେ ସୃଷ୍ଟିହେଲା ପ୍ରଶ୍ନବାଚୀର ଚିହ୍ନ । କିଆ ମୁହଁରେ ହସ ଚହଟାଇ ବୁଢ଼ୀର ମୁହଁକୁ ଚାହିଁ ପ୍ରଶ୍ନକଲା – ''ଆଈ ଗୋ, ଗୋଟିଏ କଥା ପଚାରିବି ପଚାରିବି ହେଉଛି; ପଚାରିପାରୁନି ।'' କିଆ ଥରେ ଚାରିଆଡ଼କୁ ଦେଖିନେଇ କୌତୂହଳୀ ହୋଇ ବୁଢ଼ୀର ମୁହଁକୁ ଅନାଇରହିଲା ।

ଆଈବୁଢ଼ୀ କିଆକୁ ପୁଣି ହସି ହସି କହିଲା – ''ଆଲୋ, କ'ଣ ପଚାରିବୁ ପଚାରୁନୁ ! କେଉଁ କଥା ଜାଣିବାପାଇଁ ମନ ତୋର ଛନଛନ ହେଉଛି, କହୁନୁ ।''

–''ସତ କହିଲେ ପଚାରିବି । ମୋ ଦେହ ଛୁଇଁ କହିଲ, ସତ କହିବ ତ ?'' କିଆ ଏହା କହି ଆଈ ବୁଢ଼ୀକୁ ସତୃଷ୍ଣ ନୟନରେ ଅନାଇରହିଲା ।

ବୁଢ଼ୀ ତାର ସୁନ୍ଦର ଗୋଲ ମୁହଁକୁ ନିଠେଇ ଚାହିଁ କହିଲା – ''ଆଲୋ,

ପଚାରୁନୁ, କ'ଣ ପଚାରିବୁ। ଦେହ ଛୁଇଁବି କାହିଁକି ? ତୁ ଯାହା ପଚାରିବୁ କହିବିନାହିଁ କି? ଆଜି ନ କହିଲେ ଆଉ କହିବି କେବେ? ଏତକ କ'ଣ ତୋ' ଆଈକୁ ବିଶ୍ୱାସ ନାହିଁ?''

—''ସେତକ ବିଶ୍ୱାସ ନଥିଲେ ତୁମକୁ ମୁଁ ଆଉ ଏତେ ଆଗ୍ରହରେ ପଚାରନ୍ତି କାହିଁକି?'' କିଆ ଆଈ ପାଖକୁ ଟିକିଏ ଘୁଞ୍ଚିଆସି ତା' ମୁହଁକୁ ଚାହିଁଲା। ମନର କୌତୂହଳ ତାର ବଢ଼ି ବଢ଼ି ଚାଲିଥାଏ। ମନରେ ଉତ୍‌କଣ୍ଠା ଭାବ ଖେଳିଯାଇଥାଏ। ଆଈର ମନରେ ମଧ୍ୟ କିଆର ଭାବ ଭଙ୍ଗି ଦେଖି କୌତୂହଳ ବଢ଼ିଯାଇଥାଏ।

କିଆ ମୁହଁରେ ହସ ଫୁଟାଇ ଆଈକୁ ପଚାରିଲା— ''ସତେ ଆଈ, ତୁମେ ବାହାହେବା ଆଗରୁ ଆଉ କାହାକୁ ଭଲପାଉଥିଲ ନା?'' ଏତକ ପଚାରି କିଆ ବୁଢ଼ୀ ମୁହଁକୁ ଅନାଇରହିଲା ଉତ୍ତର ଶୁଣିବ ବୋଲି।

ବୁଢ଼ୀ ତା' କଥା ଶୁଣି ଚମକିପଡ଼ିଲା; ଆଶ୍ଚର୍ଯ୍ୟ ହୋଇ ତା' ମୁହଁକୁ ଅନାଇରହିଲା। ବୁଢ଼ୀର ମରମ କଥାଟି ଆଜି କିଆ ପଚାରିଦେଲା। କେତେ ଦିନର ମନଗହନ କଥା; କାହାକୁ କହିବା କଥା ନୁହେଁ। ଆଉ କିଛିଦିନ ପରେ ବାହା ହୋଇ ନୂଆ ବର ସହ ଗାଁ ଛାଡ଼ି ଚାଲିଯିବାକୁ ସଜହେଉଥିବା ନାତୁଣୀ କିଆ ଯେ ତାକୁ ରାଣ ନିୟମ ପକାଇ ପଚାରିଦେଇଛି— ସତ ନ କହିଲେ ପାପ ହେବ; ତାର ଅମଙ୍ଗଳ ହେବ।

ମନଗହନରେ ଲୁଚିରହିଥିବା ମରମ କଥାଟି ବୁଢ଼ୀ ସାତତାଳ ଗହୀର ପଙ୍କ ଭିତରେ ରହିଥିବା ଫରୁଆର ଢାଙ୍କୁଣୀକୁ ଖୋଲିଦେଲା। ମୁହଁ ତାର ଝଲସିଉଠିଲା। ଆଖି ଦୁଇଟି ସତେଜ ହୋଇ ଜଳିଉଠିଲା ଭଳି ମନେହେଲା। ମନଗହନ ତଳରେ ଅନେକ ଦିନର ଛପିରହିଥିବା ଗୋପନ କଥାକୁ ହେତୁ କରି କରି କହିଲା— ''ହଁ ଲୋ, ତୋତେ ଆଉ ଲୁଚାଇବି କାହିଁକି? ସବୁକଥା ତୋତେ ଖୋଲି କହିଦେବି। ପଚାରିଦେଲୁଣି ଯେତେବେଳେ ଆଉ ଲୁଚାଇ ରଖିବି କାହିଁକି? ମୁଁ ବି ତୋ'ରି ବୟସରେ ମୋ ମନର ଜଣେ ପୁରୁଷକୁ ଭଲପାଉଥିଲି; ମାତ୍ର ମୁଁ ତାକୁ ବାହା ହୋଇ ପାରିଲି ନାହିଁ। ଶେଷକୁ ତୋରି ଅଜାର ହାତ ଧରିଲି। ଅବୁଝାମନକୁ ବୁଝାଇନେଲି। ବାପା ମା ଯାହାକୁ ମୋ'ପାଇଁ ଠିକ୍ ବୋଲି ଭାବି ମୋତେ ତା' ସହିତ ଛନ୍ଦିଦେଲେ, ତାକୁ ମୁଁ ବାହାହୋଇପଡ଼ିଲି। ମାଇକିନା ଜୀବନ ଜନ୍ମରୁ ଦୁଃଖରେ ଭରା। ନିଜେ ଜଳିପୋଡ଼ି ଅନ୍ୟ ମନରେ ହସ ଚହଟାଇପାରିଲେ ନାରୀ ଜୀବନ ସାର୍ଥକ ହୋଇଥାଏ। ଝିଅ ବଡ଼ହୋଇଗଲେ ହାତକୁ ଦି'ହାତ ହେବାକୁ ପଡ଼ିବ। ବିନା ଆଶ୍ରାରେ ସେ ଆଗକୁ ବଢ଼ିପାରିବ ନାହିଁ। ସେହି ଦିନଠୁ ତୋର ଅଜା ପାଖେ ପଡ଼ିରହିଛି। ଯାହା ହାଣ୍ଡିରେ ଯିଏ ଚାଉଳ ପକାଇଛି, ସେ ହିଁ ତାର। ଦଇବର ଏ ଘଟସୂତ୍ର। ତାକୁ ଆଡ଼େଇଦେଇ ହେବନାହିଁ। ମନରେ ହେଜିହେଲେ

ଆଉ କ'ଣ ଗଲାକଥା ଫେରିଆସିବ ? ଯାହା ନିଜର ହୋଇନପାରେ, ତାକୁ ଆଉ ଭାବି ଲାଭ କ'ଣ ?''

ବୁଢ଼ୀ ମନଗହନତଳେ ଲୁଚିରହିଥିବା ଗୋପନ କଥା ଟିକକ କିଆ ଆଗରେ ଖୋଲିଦେଇ ଥରେ ଚାରିଆଡ଼କୁ ଆଖି ବୁଲାଇଆଣି କହିଲା– କୁଆଁରୀ ଜୀବନରେ ଯାହାକୁ ଦେଖିଲେ ମୋ ମନରେ ପୁଲକ ସୃଷ୍ଟି କରୁଥିଲା, ତୁ ତା' କଥା ହେଜୁ କରାଇଦେଇ ଆଜି ମୋ ମନକୁ ଚହଲାଇଦେଲୁ।''

ପରମୁହୂର୍ତ୍ତରେ ବୁଢ଼ୀର ମୁହଁ ଧୀରେ ଧୀରେ ଗମ୍ଭୀର ହୋଇଗଲା। କିଆ ଗୋଟିଏ ଲୟରେ ତା'ରି କଥା ଶୁଣିଯାଉଥିଲା; ତା' ମୁହଁକୁ ବିସ୍ଫାରିତ ନୟନରେ ଅନାଇ ରହିଲା।

ବୁଢ଼ୀ କିଆକୁ ଅନାଇ କହିଲା– ''ବାହାହୋଇପଡ଼ିଲେ ସ୍ୱାମୀହିଁ ନାରୀର ସର୍ବସ୍ୱ। ସ୍ୱାମୀହିଁ ଦେବତା ସମାନ। ମୋ କଥାକୁ ମନରେ ଧରିବୁ ନାହିଁ ଲୋ। ତୁ ପଚାରିଦେଲୁ, ସବୁ ମନକଥା କହିଦେଲି। ମଣିଷ ଯାହା ଚାହେଁ, ତାହା ସଦାବେଳେ ପାଇପାରେନା। ମଣିଷର ଇଚ୍ଛାମତେ ସବୁକଥା ଯଦି ହୁଅନ୍ତା, ଏ ସଂସାର ସ୍ୱର୍ଗ ପାଲଟିଯାଆନ୍ତା ପରା। ତେଣୁ ସମୟକୁ ନେଇ ସବୁକଥା ଚଳାଇନେବା ହେଲା ବଡ଼କଥା। ପଛକଥାକୁ ପଛରେ ରଖି ଆଗେଇଯିବା ହେଲା ମଣିଷପଣିଆ।''

ଆଈବୁଢ଼ୀ ପୁଣି କହିଲା– ''କିଆ, ତୋ' ମନ ଗହନ କଥା ମୁଁ ବୁଝିଛି, ମୁଁ ସବୁ ଜାଣିଛି। ହେଲେ ଆମେ ଯେଉଁ ସମାଜରେ ଚଳିଆସିଛୁଁ ତାକୁ ଛାଡ଼ି ଆମେ ପାଦଟିଏ ବି ଆଗେଇପାରିବା ନାହିଁ। ତୁ ଯାହାକୁ ମନରେ ଭଲପାଇବସିଛୁ, ତାକୁ ପାଇପାରିବୁନାହିଁ। ଏ ସମାଜ ତାହା ହେବାକୁ ଦେବନାହିଁ। ଆମେ ସଭିଏଁ ଗୋଟିଏ ସୂତାରେ ବନ୍ଧାହୋଇଛୁଁ; ତାକୁ ଛିଣ୍ଡାଇ ଦେବା ଏତେ ସହଜ ନୁହେଁ।''

ବୁଢ଼ୀ କିଆମନରେ ସାନ୍ତ୍ୱନା ଦେବାପାଇଁ ଏବଂ ମନରେ ବିଶ୍ୱାସ ଜନ୍ମାଇବାପାଇଁ ପୁଣି କହିଲା– ''ସ୍ୱପ୍ନ କେବେ ସତ୍ୟରେ ପରିଣତ ହୁଏନାହିଁ; ସ୍ୱପ୍ନ ସ୍ୱପ୍ନରେହିଁ ରହିଯାଏ। ମୁଁ କିଛି ନୂଆକଥା କହୁନାହିଁ ଲୋ। ଯାହା ପୁରୁଷ-ପୁରୁଷ ଧରି ଚଳିଆସୁଛି ତାହାହିଁ ତୋତେ କହୁଛି। ଅନେକ କଥା ଦେଖିଛି, ଅନେକ କଥା ଶୁଣିଛି; ଆଉ ଅନେକ କଥା ଅଙ୍ଗେ ନିଭାଇଛି। ତେଣୁ ତା'ରି ଅନୁଭୂତିରୁ ତୋତେ କହିଯାଉଛି।''

ବୁଢ଼ୀ ହସି ହସି କିଆର ଚିବୁକରେ ହାତ ମାରି କହିଲା– ''ହଁ ଲୋ, ତୋଅରି କୋଳରେ ଯେତେବେଳେ ଝିଅ ଖେଳିବ ବଡ଼ ହେବ, ତାକୁ ତୁ ଯେତେବେଳେ ଶାଶୁଘରକୁ ବିଦାୟଦେବୁ, ମୋତେ ହେଜୁକରୁଥିବୁ। ମୁଁ ନଥିଲେ ବି ମୋ କଥାପଦକ ତୋତେ ସଦାବେଳେ ମନେପକାଇଦେଉଥିବ।''

ଏତକ କହି ବୁଢ଼ୀ କିଆ ମୁଣ୍ଡରେ ହାତ ବୁଲାଇଆଣି ମୁହଁକୁ ଅନାଇ ହସିଦେଇଥିଲା। ବୁଢ଼ୀର ସେହି ହସଟିକକ କିଆ ମନକୁ ଚହଲାଇଦେଇଥିଲା।

"ମୁଁ ଯାଉଛି ଲୋ ନାତୁଣୀ, ମନେରଖିଥିବୁ ଲୋ ସବୁଦିନ ପାଇଁ।"

ବୁଢ଼ୀଆଈ ଚାଲିଗଲା। କିଆ ନୀରବ ନିଶ୍ଚଳ ହୋଇ ବସିରହିଥାଏ। ଆଈବୁଢ଼ୀର କଥା ଶୁଣି କିଆ ମନରେ ଟିକିଏ ଶାନ୍ତି ପାଇଲା। ମନ ତାର ହାଲୁକାଲାଗିଲା। ସେ ମନେ ମନେ ଭାବିଲା, ସେ ଏକା କେବଳ ପ୍ରେମରେ ପଡ଼ିନାହିଁ; ତା'ଭଳି ଅନେକ ନାରୀ ପ୍ରେମରେ ପଡ଼ିଛନ୍ତି। ଏବେ ମଧ୍ୟ ତାର ଆଈ ମୁହଁରେ ଜଣକ କଥା ମନେରହିଯାଇଛି; ତାକୁ ପାଶୋରିପାରିନାହିଁ। ପାଶୋରିବାକୁ ଚେଷ୍ଟାକରି ମଧ୍ୟ ବିଫଳହୋଇଛି। ସେ କ'ଣ ଏତେ ସହଜ କଥା ? ଯେ ଥରେ ତାର ହୃଦୟର ନିଭୃତ କୋଣରେ ଜଣକୁ ସ୍ଥାନଦେଇସାରିଛି, ତାକୁ କ'ଣ ସହଜରେ ପାଶୋରିଦେଇପାରିବ ?

ଜଣେ ଆଉ ଜଣକ ପାଇଁ ଭାବିହେବା ହେଉଛି ପ୍ରେମ। ମନର ଉଦ୍‌ବେଗ ଭାବନା ହେଉଛି ପ୍ରେମର ନିଦର୍ଶନ। ପ୍ରକୃତ ପ୍ରେମ ମଣିଷର ହୃଦୟ ଭିତରେ ସବୁଦିନ ସ୍ଥାୟୀ ହୋଇ ରହିଯାଇଥାଏ। ପ୍ରେମ ଭିତରେ ଯେତେବେଳେ ସ୍ୱାର୍ଥପରତା ପଶିଯାଏ; ସେତେବେଳେ ପ୍ରେମ ହୋଇଥାଏ କଳୁଷିତ; ମନ ହୋଇଯାଏ ସଂକୀର୍ଣ୍ଣ। ସ୍ୱାର୍ଥପାଇଁ ମନ ହୋଇଉଠେ ଲାଳାୟିତ। ସେତେବେଳେ ମନରେ ଖେଳେ ପାପ। ସ୍ୱାର୍ଥାନ୍ଧ ମଣିଷ ବିବେକକୁ ବଳିଦେଇ ନିଜର ସ୍ୱାର୍ଥ ହାସଲ ପାଇଁ ହୋଇଉଠେ ତତ୍‌ପର। ପାପ ପଶିଲେ ସବୁ ଅନିଷ୍ଟ ହୋଇଥାଏ। ଯେଉଁଠି ମଣିଷ ମନରେ ପାପ ସ୍ପର୍ଶ କରେନାହିଁ, ସେଇଠି ପ୍ରେମ ହୁଏ ଗଙ୍ଗାଜଳ ସଦୃଶ ପବିତ୍ର। ପ୍ରେମ ମଣିଷର ଏକ ସହଜାତ ପ୍ରବୃତ୍ତି। ସମୟ ଏବଂ ସୁଯୋଗରେ ତାହା ଆପେ ଆପେ ପ୍ରସ୍ଫୁଟିତ ହୋଇଉଠେ। ପୁରୁଷ ଏବଂ ପ୍ରକୃତିର ଆକର୍ଷଣ ଅନନ୍ତ ସମୟରୁ ଗଡ଼ିଚାଲିଛି— ଏଭଳି ଚାଲିଥିବ ଯୁଗ ଯୁଗଧରି।

କିଆ ଏବଂ ନବୀନ ପିଲାଟିଦିନରୁ ଏକାଠି ବଢ଼ିଉଠିଥିଲେ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କ ମନରେ ମଧ୍ୟ ପ୍ରେମର କୁସୁମ ପ୍ରସ୍ଫୁଟିତ ହୋଇ ତାର ସୌରଭରେ ଉଦ୍‌ଭାସିତ ହେବା ପୂର୍ବରୁ ଏକ ସାମାଜିକ ଚେତନା ଭିତରେ, ଏକ ସାମାଜିକ ବନ୍ଧନ ଭିତରେ, ତାର ପୂର୍ଣ୍ଣଚ୍ଛେଦ ଘଟିଯାଉଛି। କିଆ ବସି ସବୁକଥାକୁ ମନରେ ଓଲଟପାଲଟ କରିଚାଲିଥାଏ। ଗାଁ ମାଇପିମାନେ, ଯେଉଁମାନେ କିଆକୁ ଦେଖିବାପାଇଁ ଆସିଥିଲେ, ଗୋଟି ଗୋଟି ହୋଇ ଚାଲଗିଲେଣି। କ୍ଷଣିକ ପୂର୍ବରୁ ଯେଉଁ ଘର ଲୋକଗହଳିରେ ମାଇପିମାନଙ୍କ ପାଟିତୁଣ୍ଡରେ କମ୍ପିଉଠୁଥିଲା, ଏବେ ଘର ଶୂନ୍‌ଶାନ ହୋଇଗଲା— ନିଛାଟିଆ ନିଛାଟିଆ ଜଣାଗଲା।

ସେ ଚତୁର୍ଦ୍ଦିଗକୁ ଅନାଇ କେମିତି ଅସହାୟ ମନେକଲା। ଲୋକଗହଳି ଥିଲାବେଳେ ମନରେ ଆନନ୍ଦ ଖେଳୁଥିଲା। ଏଇନେ ତାକୁ ଏକା ଏକା ମନେହେଲା। ସଭିଏଁ ଚାଲିଗଲାପରେ ମନ ତାର ଉଦାସ ହୋଇ ଏକ ଅକୁହା ବେଦନା ତା' ହୃଦୟରେ ଖେଳିଗଲା। ସାଥୀ-ସରାଗ ଭାଙ୍ଗି, ଗାଁ ମାୟାମମତା ତୁଟାଇ ସେ

ଚାଲିଯିବ ଏକ ଅଜଣା ଜାଗାକୁ। ସ୍ମୃତିର ସରୁ ଲମ୍ବା ଖିଅଟିଏ ମନରେ ଟହଲିଗଲା। ତଥାପି ମନକଥା ମନରେ ମାରି, ମୁହଁ ଶୁଖାଇ ଆକାଶକୁ ଅନାଇ ସେଇଠି ବସି-ରହିଲା। ଏକପ୍ରକାର ଅବସାଦ ସାରା ଦେହକୁ ଆଚ୍ଛନ୍ନ କରି ରଖିଲାଭଳି ମନେହେଲା।

କିଆ ଏମିତି କେତେ ସମୟ ବସିରହିଲା, ସେ ଜାଣିପାରିଲାନାହିଁ। ମା' ରେବତୀ ଆସି ତାକୁ ଖାଇବାପାଇଁ ଡାକଦେଲାପରେ ସେ ସଚେତନ ହେଲା। ଦେଖିଲା ଆକାଶରେ ଅଗଣିତ ତାରା ଆଖିମିଟିକା ମାରି ତାକୁ ଅନାଇରହିଛନ୍ତି। ଶୀତଳ ପବନ ଦେହରେ ଲାଗି ଦେହକୁ ଶୀତଳାଇଦେଉଥାଏ। କିଆ ତରତର ହୋଇ ଗୋଡ଼ ହାତ ଧୋଇ ଆସି ମା' ପାଖରେ ବସି ପଡ଼ିଲା। ମା' ତାକୁ ବଳେଇ ବଳେଇ ଖୁଆଇଲା। ଦୁହେଁ ଏକାଠି ବସି ଖାଇଲେ। କିଆ ଯାହାତାହା ଗଣ୍ଡେ ଖାଇ ଉଠିଆସି ମୁହଁହାତ ଧୋଇ ଖଟରେ ଶୋଇପଡ଼ିଲା। ମା' ତାକୁ କାମଦାମ କରିବାକୁ ମନାକରୁଛି। ସେ ଅଇଁଠା ଥାଳି ଉଠାଇବାକୁ ଗଲେ, ମା ତାକୁ ନାହିଁକରି କହୁଛି– "ଆଲୋ, ତୁ ଶାଶୁଘରକୁ ଗଲେ ସେହି କାମ ମୋତେ ତ କରିବାକୁ ପଡ଼ିବ। ତୋର ସାନଭଉଣୀ ତ ସାନପିଲା; ସେତକ କରିବାକୁ ସମୟ ହୋଇନାହିଁ। ଖାଇଲେ ସେ ଯାଇ ଖଟରେ ଗଡ଼ିପଡ଼େ; ନିଘୋଡ଼ ନିଦରେ ଶୋଇଯାଏ। ଏଇନେ ଜଙ୍ଗଲକୁ ଯାଉଛି ଛେଳି ଚରାଇବାକୁ; ହାଲିଆ ହୋଇ ଫେରୁଛି। ତେଣୁ ଖଟ ଧରୁ ଧରୁ ନିଦ ମାଡ଼ିଆସୁଛି।"

କିଆ ଖଟରେ ଶୋଇ କେତେ କ'ଣ ଭାବିଚାଲିଛି। ତାର ଆଖିକୁ ନିଦ ଆସୁନାହିଁ। ସେ ଯାହାକୁ ବାହାହେବ, ଲାଜରେ ସେଦିନ ସେ ତା' ମୁହଁକୁ ଦେଖିପାରିଲାନାହିଁ। ସାଙ୍ଗମାନେ କହୁଥିଲେ, ସେ ଦେଖିବାକୁ ସୁନ୍ଦର। ସତେ କ'ଣ ସେ ନବୀନଠୁଁ ଅଧିକ ସୁନ୍ଦର ହେବ? ନବୀନ ଭଳି ମିଠା ମିଠା କଥା କହିପାରିବ? ନବୀନ ଭଳି ତା' ମୁହଁ ସଦା ହସହସ ହୋଇଥିବ? କାହିଁ, ଗାଁରେ ତ ଏତେ ଟୋକା ଅଛନ୍ତି; କିଏ ନବୀନ ସରି ହୋଇ ପାରିବେ ନାହିଁ। କାମରେ ଓ କଥାରେ ନବୀନକୁ କେହି ଟପି ଯାଇ ପାରିବେ ନାହିଁ। ଖେଳରେ ତାକୁ କେହି ହଟାଇ ଦେଇ ପାରିବେ ନାହିଁ।

ପରକ୍ଷଣରେ ସେ ଆତ୍ମସଚେତନ ହୋଇପଡ଼ିଲା। ଛି... ସେ ନବୀନ କଥା ଆଉ କାହିଁକି ଭାବୁଛି? ଯାହାକୁ ବାହାହେବାକୁ ଯାଉଛି, ସେ ତାର ହେବ ସ୍ୱାମୀ। ତାର ଶୁଭ ମନାସିବା, ତାର ମଙ୍ଗଳ ଚିନ୍ତାକରିବା ତାର କାମ। ତା' ପାଇଁ ହିଁ ତାର ଧର୍ମ-କର୍ମ। ଆଈବୁଢ଼ୀ କହୁଥିଲେ, ସ୍ୱାମୀହିଁ ଦେବତା, ସ୍ୱାମୀହିଁ ସର୍ବସ୍ୱ। ତେଣୁ ତା' ମନ ଭିତରେ ତାର ସ୍ୱାମୀକଥା ଭାବିଚାଲିଲା। ସେ ଦେଖିବାକୁ କେମିତି ହୋଇଥିବ? ତାଙ୍କ ଗାଁ କିଭଳି ହୋଇଥିବ? ମା' କହୁଥିଲା ଘରେ କିଛି ଅଭାବ ନାହିଁ। ଗାଈ, ଗୋରୁ, ଛେଳି, ମେଣ୍ଢାରେ ଘର ଭରିରହିଛି। ଘରଖର୍ଚ୍ଚ ଯାଇ

ପୁରୁଣା ଚାଉଳ ଘରେ ବଳକା ରହିଯାଉଛି । କେଉଁଥିରେ ତାର ଅଭାବ ହେବନାହିଁ । ତେଣୁ ସେ ନିତି ନ ଖଟିଲେ ମଧ୍ୟ ଭଲରେ ଚଳିଯିବ ।

ସେ ଯେଉଁ ଗାଁକୁ ବୋହୂହୋଇ ଯିବ ତାକୁ ଦେଖି ଗାଁଲୋକେ କ'ଣ କହିବେ ? ଏତେ ଅଚିହ୍ନା ଲୋକଙ୍କୁ ଦେଖି ତା' ମନ କେମିତି ହେବ ? କିଏ କେତେ କଥା କହିବେ, କାହାକୁ କିଭଳି ଉତ୍ତର ଦେବ ? କାହାକୁ କ'ଣ କହି ମନତୋଷ କରିପାରିବ ? ଶାଶୁ, ଶ୍ୱଶୁର ତାକୁ ଆଦର କରିବେ ତ ? ଶ୍ୱଶୁର ପରା ଶାନ୍ତ ମଣିଷ– ତାଙ୍କୁ ଠିକ୍ ସମୟରେ ଖାଇବାକୁ ଗଣ୍ଡିଏ ଦେଇପାରିଲେ, ସେ ଖୁସି । ଘରକୁ ବୋହୂଟିଏ ନେବାପାଇଁ ସେ କେତେ ଆଗ୍ରହରେ ଅପେକ୍ଷା କରି ରହିଛନ୍ତି । ମନ ତାଙ୍କର ଆନନ୍ଦରେ ଫୁଲିଉଠିଛି । ସୁନାନାକୀ ବୋହୂଟିଏ ମିଳିଛି ବୋଲି ଗାଁଲୋକଙ୍କ ଆଗରେ କହିବୁଲୁଛନ୍ତି । ଘରକୁ ବୋହୂ ଆସିବ ବୋଲି ଶଶୁର ଘର ଲିପାପୋଛା କରାଇ, ଘର ଚାରିପଟ ସାଫ୍‌ସୁତୁରା କରି ଘରକୁ ନୂଆ ରୂପ ଦେଇଛନ୍ତି । ସେ କହନ୍ତି– ଘରକୁ ନୂଆ ବୋହୂ ଆସିଲେ ଆଉ କ'ଣ ସେହି ପୁରୁଣା ଘରେ ରହିବ ? ନୂଆ ବୋହୂପାଇଁ ନୂଆ ଘର ତାର ମନଲାଖି ହୋଇଥିବା ଦରକାର ।

ଯାହାଙ୍କ ପାଖରେ ରହିବି, ଯେ ମୋର ମା' ଭଳି, ମୋର ଭଲମନ୍ଦ ସହ ସଦାବେଳେ ଯୋଡ଼ିହୋଇଥିବେ ମୋର ଶାଶୁ, ସେ କେମିତି ? ସେ ମୋତେ ଆଦର କରିବେ ତ ? ତାଙ୍କ ହସହସ ମୁହଁ ଦେଖି ମୋ ମନକୁ ଭୁଲାଇ ନେଇପାରୁଥିବି ତ ? ସାଥୀମାନଙ୍କଠୁଁ ଶୁଣିଛି, ଶାଶୁ ତାର ଟିକିଏ ବଦ୍‌ରାଗୀ । ମନ ବୁଝିଥିଲେ ତ ଭଲ, ନହେଲେ ଟିକିଏ କଥାକୁ ରାଗିଯାଆନ୍ତି । କୁଆଡ଼େ ଶ୍ୱଶୁରଙ୍କ ସହ ଟିକିଏ ଟିକିଏ କଥାରେ ତିନି-ଚାରି ଦିନ ମୁହଁ ଫୁଲାଇ କଥାବାର୍ତ୍ତା ମଧ୍ୟ ହୁଅନ୍ତିନାହିଁ; ରାଗ ତମତମ ହୋଇ ସଭିଁଙ୍କ ଉପରେ ତାଙ୍କ ରାଗ ଶୁଝାଇଦେଉଥାନ୍ତି । ଯାହାକୁ କହିବାକଥା ତାକୁ କହିନପାରିଲେ, ଅନ୍ୟଠି ସେହି ରାଗଟିକକ ଛିଣ୍ଡାଇଦେଉଥାନ୍ତି । ତାଙ୍କ କଥା, ତାଙ୍କ ମର୍ଜି ମୁତାବକ ଚଳିନପାରିଲେ ସେ ମୋ ଉପରେ ରାଗି ଉଠିବେ । ରନ୍ଧାବଢ଼ା ପସନ୍ଦ ନହେଲେ, ମନ ତାଙ୍କର ଖରାପହୋଇଯିବ । ମୋ ପ୍ରତି ତାଙ୍କ ଶ୍ରଦ୍ଧା କମିଯିବ । ତାଙ୍କୁ ପସନ୍ଦ ନହେଲେ ସେ ତା' ଉପରେ ରାଗି ଘରେ ପାଟିତୁଣ୍ଡ କରିବେ । ମନ ତା... ଶାଶୁଙ୍କ କଡ଼ା କଥା ଶୁଣି ଭାଙ୍ଗିପଡ଼ିବ ନାହିଁ ତ ? ମନ ଭାଙ୍ଗିଗଲେ ତାକୁ ବୁଝାଇବ କିଏ ? ଏଇନେ ମା' ତାକୁ କେତେ କଥା ବୁଝାଇଶୁଝାଇ ମନକୁ ବଦଳାଇଦେଉଛି । ତାର ସାଙ୍ଗସାଥୀମାନେ ଆସି ହସଖୁସି ହୋଇ କଥା ହେଲେ ମନରେ କେତେ ଆଗ୍ରହ ଉତ୍ସାହ ଖେଳିଯାଉଛି । ସେହି ଗାଁରେ ତାର ସେଭଳି ସାଙ୍ଗସାଥୀ ମିଳିବେ ତ ? ତାର କଥାକୁ ଧରିବେନାହିଁ ତ ? ଭୁଲ୍ ହେଲେ ଛୋଟ ଭଉଣୀ ଭାବି ମାର୍ଜନା କରିବେ ତ ?

ଆମ ଗାଁରେ ମୋତେ ନେଇ କେଡ଼େକଥାଟିଏ ପୋଖରୀ ତୁଠରେ ପଡ଼ିଗଲା ।

ଛୋଟ କଥାଟାକୁ ବଡ଼କରି ରାଷ୍ଟ୍ରକରିଦିଆଗଲା। କଳିହୁଡ଼ୀ ମାଇକିନା ତାକୁ ଗାଁସାରା ରାଷ୍ଟ୍ର କଲା। ମାତ୍ର ଗାଁଲୋକ ଉଦାର ମନରେ ସବୁ କଥା ମାଏଶାରିଦେଲେ। ଗାଁ ମହତ ପଦାରେ ପଡ଼ିଲେ ଗାଁର ମାନ ଇଜ୍ଜତ ଚାଲିଯିବ। ଗୋଟିଏ ଗାଁଝିଅର ପ୍ରେମକଥା ଅନ୍ୟ ଗାଁରେ ପଡ଼ିଲେ ଗାଁର ଇଜ୍ଜତ ଚାଲିଯିବ। ଗାଁର ମହତକୁ ତଳେ ପକାଇ ଦେବାପାଇଁ କେହି ମନ କଲେନାହିଁ। ଏତକ ଭାବି ସବୁକଥାକୁ ଗାଁଲୋକେ ସମ୍ଭାଳିନେଲେ। ଏଇଟା ସିନା ପୁରୁଷପଣିଆ। ଗାଁର ମହତପଣ ଗାଁର ଏକତାର ନିଦର୍ଶନ। ଆହା, ସେମାନଙ୍କ ଗୁଣ କେତେ ମହାନ୍; ମନ କେତେ ଉଦାର !

ଆପଣାଛାଏଁ ସେମାନଙ୍କପ୍ରତି କିଆର ମୁଣ୍ଡ ନଇଁଗଲା। ଶଶୁରଘର ଗାଁରେ ତାର ଗୋପନ ପ୍ରେମକଥା ଗାଁଲୋକ ଜାଣିଲେ ତାକୁ ମାଫ୍ କରିବେ ତ ? ସେମାନେ ଜାଣିଲେ ତାଙ୍କ ଉଦାର ଗୁଣରେ କ୍ଷମାକରିବେ ତ? ତାର ଭାବୀ ସ୍ୱାମୀ ଯଦି ସବୁକଥା ଜାଣିଯାଆନ୍ତି, ତାକୁ ଘରୁ ତଡ଼ିଦେବେନାହିଁ ତ? କଥାଟା ନବୁଝି ତାକୁ ଯଦି ଭୁଲ ବୁଝନ୍ତି ତେବେ ସେ କ'ଣ କରିବ? ସେ ବଂଚିପାରିବ ତ? କାହାକୁ ଆଉ ଏ ପୋଡ଼ା ମୁହଁ ଦେଖାଇପାରିବ ?

କେଜାଣି କାହିଁକି ହଠାତ୍ ତା' ମନରେ ଏକ ଅଜଣା ଆଶଙ୍କା ଖେଳିଗଲା। ମାତ୍ର ପରମୁହୂର୍ତ୍ତରେ ନିଜ ମନକୁ ନିଜେ ବୁଝାଇବାକୁ ଚେଷ୍ଟାକଲା— ନା, ସେ ତାକୁ ଏତେ ଅବିଶ୍ୱାସ କରିବେ ନାହିଁ। ସେ ତ ଏମିତି କିଛି ଭୁଲ୍ କରିନାହିଁ। ସେ ଏତେ ଅମଣିଷ ହୋଇପାରିବେନାହିଁ। ମୁଁ ସବୁକଥା ତାଙ୍କୁ କହିଦେବି। କାହାଠୁ ଶୁଣି ମୋତେ ଭୁଲ୍ ବୁଝିବା ପୂର୍ବରୁ ମୋଠୁ ସବୁକଥା ସେ ଶୁଣିଯିବେ। ମୋଠୁ ସବୁକଥା ଶୁଣିଲାପରେ ତାଙ୍କ ମନରୁ ସବୁ ଦୁଃଶ୍ଚିନ୍ତା ଘୁଞ୍ଚିଯିବ।

ପୁଣି କେଜାଣି କାହିଁକି ତା' ମନରେ ସଂଶୟ ଭାବ ଖେଳିଗଲା। ମୋତେ ଭୁଲ୍ ବୁଝିଲେ ମୁଁ ସେତେବେଳେ କ'ଣ କରିବି? ଲୋକନିନ୍ଦା ଶୁଣି ନିରାଶ ହୋଇପଡ଼ିଲେ କୂଅଁ କିମ୍ବା ପୋଖରୀରେ ଆତ୍ମ-ବିସର୍ଜନ କରିଦେବି। ପୁଣି ପରମୁହୂର୍ତ୍ତରେ ନିଜ ମନକୁ ବୁଝାଇବାକୁ ଚେଷ୍ଟାକଲା— ଛି... ଆତ୍ମହତ୍ୟା ମହାପାପ। ମୁଁ କାହିଁକି ନିଜକୁ ଏତେ ଛୋଟ ମନେକରୁଛି? ଜୀବନରେ ମୁଁ କୌଣସି ଭୁଲ୍ ତ କରିନାହିଁ। ତଥାପି ମୋ ମନରେ ଏତେ ଆଶଙ୍କା କାହିଁକି? ପାପ-ମନ ସଦାବେଳେ ଶଙ୍କିରହିଥାଏ। ମୁଁ ତ କୌଣସି ପାପ କରିନାହିଁ— ତେବେ ମୋ' ମନ ଏତେ ଶଙ୍କିଯାଉଛି କାହିଁକି? ସଜମାଛରେ ପୋକପକାଇବାପାଇଁ ଏ ସଂସାରରେ ଲୋକର ଅଭାବ ନାହିଁ ବୋଲି !

କିଆ ନିଜ ମନକୁ ଦୃଢ଼କଲା। ନା, ମୋର ଏହି ଅବସ୍ଥା ପାଇଁ ମୁଁ ନିଜେହିଁ ଦାୟୀ। ମୁଁ ଠିକ୍ ଥିଲା ପର୍ଯ୍ୟନ୍ତ ମୋର କିଏ କିଛି ଅନିଷ୍ଟ କରିପାରିବେନାହିଁ। ସେ ତା' ନିଜ ମନକୁ ଦୃଢ଼କଲା। ମନରେ ତାର ଆତ୍ମବିଶ୍ୱାସ ଖେଳିଗଲା।

ଏମିତି ମାନସିକ ଦ୍ୱନ୍ଦ୍ୱ ଭିତରେ ମନ ତାର ଛଟପଟ ହୋଇଉଠିଲା। ଆଖି ବନ୍ଦ କରି ଶୋଇବାକୁ ଚେଷ୍ଟାକଲା, ମାତ୍ର ଶୋଇପାରିଲା ନାହିଁ; ପୁଣି ଭାବନାର ସ୍ରୁଅ ଭିତରେ ଭାସି ଚାଲିଲା। କେତେ ଯେ ଭାବନା ତା' ମନ ଭିତରେ ଉଙ୍କି-ମାରିଚାଲିଥାଏ ତାର କଳନା ନଥାଏ।

× × × ×

ବାହାଘର ଦିନ ଯେତେ ନିକଟରୁ ନିକଟତର ହୋଇଆସୁଥାଏ, କିଆ ମନରେ ବିଚ୍ଛିନ୍ନିତଭାବ ସେତେ ବଢ଼ିଚାଲିଥାଏ। ସେ ବାହାହୋଇ ଚାଲିଯିବ ବୋଲି ତାକୁ ତାର ଆତ୍ମୀୟମାନେ ନିଜ ନିଜ ଘରକୁ ଖାଇବାକୁ ଡାକୁଥାନ୍ତି। କିଆ ସମସ୍ତଙ୍କ ଘରକୁ ଯାଇ କାହା ଘରେ ଭାତ, କାହା ଘରେ ପିଠାପଣା ଖାଇ ହସଖୁସି ହୋଇ ଫେରିଆସୁଥାଏ। ତା' ମନରେ ଏକପ୍ରକାର ବିଦାୟକାଳୀନ ଭାବ ଖେଳିଯାଉଥାଏ। ଯେଉଁମାନେ ତାର ପିଲାଦିନର ସାଥୀ ସେମାନଙ୍କଠୁଁ ସେ ବିଦାୟ ନେଇନାହିଁ। ସେମାନଙ୍କଠୁ ବିଦାୟ ନନେଇ ଚାଲିଗଲେ ସେମାନଙ୍କ ମନରେ ଆଘାତ ଲାଗିବ; ମନ ତାର କେବେ ଶାନ୍ତ ହେବ ନାହିଁ। ସବୁଦିନପାଇଁ ଗୋଟିଏ ଦୁଃଖ ଲାଖିରହିବ।

ନବୀନଠୁଁ ବିଦାୟ ନନେଇ ସେ ଏ ଗାଁ ଛାଡ଼ି ଯାଇପାରିବନାହିଁ। ମାତ୍ର ନବୀନ ସହିତ ଆଉ ତାର କି ସଂପର୍କ? ତାର ବାହାଘର ଠିକ୍ ହୋଇସାରିଛି। ସେ ଆଉ ଜଣକୁ ଅର୍ପିତ ହୋଇସାରିଛି। ନା . . . ତା' କଥା ସେ ଆଉ ଭାବିବନାହିଁ। ମନରୁ ପାସୋରିଦେବ।

ମାତ୍ର ମନ ତାର ମାନୁନଥାଏ। ମନକୁ ବୁଝାଇବାପାଇଁ ଚେଷ୍ଟା କରି ମଧ୍ୟ ବୁଝାଇପାରୁନଥାଏ। ମନ କ'ଣ ସହଜରେ ବୁଝେ? ଗାଁରୁ ବିଦାୟ ନେଇ ଯିବା ପୂର୍ବରୁ ନବୀନ ସହିତ ଶେଷଦେଖାକରିବ; ତା'ଠୁ ବିଦାୟ ନନେଇ ସେ ଏ ଗାଁ ଛାଡ଼ି ଯାଇପାରିବନାହିଁ। ଏଣେ ଲୋକ-ଲଜ୍ଜା। କିଏ କ'ଣ କହିଦେବ ପରା। ଗାଁଲୋକ କଥାଟା ଭୁଲବୁଝିବେ। କଥା ପ୍ରଘଟ ହୋଇଗଲେ ତା' ଶାଶୁଘର ଲୋକେ ଜାଣିଯିବେ। ମୁହଁ ତାର ତଳକୁ ହୋଇଯିବ। ବାପ-ମା'ଙ୍କ ମନରେ କଷ୍ଟହେବ। ସେମାନେ କାହାକୁ ମୁହଁ ଦେଖାଇ ପାରିବେ ନାହିଁ। ସେ ମନେ ମନେ ଠିକ୍କଲା — ମନକୁ ଦୃଢ଼କଲା। ଠିକ୍କଲା ଗାଧୋଇଗଲାବେଳକୁ ପାହାଡ଼ତଳକୁ ଚାଲିଯିବ। ସେଇଠୁ ଅଳ୍ପ ବାଟ। ମାତ୍ର କିଏ ଦେଖିଲେ କ'ଣ କହିବ? କଥାଟା ପ୍ରଘଟ ହୋଇଗଲେ ସବୁ ସରିଯିବ।

ଏମିତି ଆଶା-ଆଶଙ୍କାରେ ମନ ତାର ଛଟପଟ ହେଉଥାଏ। ତଥାପି ଶେଷଥର ପାଇଁ ସେ ନବୀନଠୁଁ ବିଦାୟ ନନେଇ ଏ ଗାଁର ମାୟା-ମମତା ଛାଡ଼ି ଯାଇପାରିବନାହିଁ। ତା'ଛଡ଼ା ଥରେ ସେ ଆଖିପୂରାଇ ତାର ଚିରସାଥୀ, ଚିରପରିଚିତ ବଣ, ପାହାଡ଼, ପର୍ବତ, ଝରଣା ସମସ୍ତଙ୍କୁ ଥରେ ଦେଖିନେବ। ଆଉ ସେ ସୁଯୋଗ ଆସିବ ନାହିଁ।

ତା' ମନରେ କେତେ ଯେ କଳ୍ପନାର ତରଙ୍ଗ ଖେଳିଗଲା । ମନଣ ଭାବନାରେ ସେ ତାର ପରିଚିତ ସେଇ ଆମ୍ବଗଛମୂଳକୁ ଟାଣିହୋଇଗଲା । ମଣିଷ ନିଜ ମନକୁ ବୁଝିବାକୁ ମଧ୍ୟ ସମୟେ ସମୟେ ଭୁଲକରିବସେ । ସେ ଏ ଗାଁ ଛାଡ଼ି ଚାଲିଯିବା କଥା ଜାଣିବାବେଳଠୁଁ ମନ ତାର ଉଦାସହୋଇପଡ଼ିଛି ।

ତାର ସୁଖ-ଦୁଃଖର ସାଥୀ, ସେହି ମଧୁର ମିଳନର ମୂକ ସାକ୍ଷୀ ଆମ୍ବଗଛ ମୂଳ ଶେଷଥର ପାଇଁ ଆଖି ପୂରାଇ ଦେଖିଆସିବାକୁ ମନ ବ୍ୟାକୁଳ ହୋଇଉଠିଲା । ଆବେଗ ଏବଂ ଉତ୍ତେଜନାରେ ମନ ଅଥୟ ହୋଇଉଠୁଥାଏ । ତା' ମନରେ ଭୟ, ଆଶଙ୍କା ଖେଳିଯାଉଥାଏ । ଆଗରୁ ଏଭଳି କେବେ ତା' ମନରେ ଜଙ୍ଗଲକୁ ଯିବାପାଇଁ ଆଶଙ୍କା ହୋଇନଥିଲା । ଆଜି କାହିଁକି ତା' ମନରେ ଭୟ ଆଶଙ୍କା ଖେଳିଯାଉଛି ? ତା' ମୁହଁରେ ଚାପା ଉତ୍ତେଜନା ଲାଗିରହିଥାଏ । ତଥାପି ସେହି ପାହାଡ଼ତଳକୁ ଯିବାପାଇଁ ମନକୁ ତାର ଦୃଢ଼କରିନେଲା । ପଦଟିଏ ନବୀନ ସହିତ କଥା ହେବାକୁ ମନ ତାର ବ୍ୟାକୁଳ ହୋଇଉଠିଲା । ସେଇ ଜଣକୁ ଦେଖିବ ବୋଲି ବାହାରିପଡ଼ିଲା ।

କିଆ ଭାବାବେଗରେ ସେହି ପାହାଡ଼ତଳକୁ ଆଗେଇଗଲା । ଛାତି ତାର ଧକ୍‌ଧକ୍ କରୁଥାଏ । ଆଖି କାହାକୁ ଖୋଜିବା ଭଙ୍ଗିରେ ଚାରିଆଡ଼କୁ ଘୂରିଯାଉଥାଏ । ଅନେକ ଦିନ ପରେ ତାର ପ୍ରିୟ ସ୍ଥାନକୁ ସେ ଆଜି ଆସିଛି । ସେହି ପାହାଡ଼ତଳ ଆଜି ତାକୁ କିମିତି ନୂଆ ନୂଆ ଜଣାପଡୁଥାଏ । ଯେଉଁ ପାହାଡ଼ତଳେ ସେ ଏତେ ବର୍ଷ ବିତାଇଦେଇଛି, ତାର ମାୟା-ମମତା, ସେ କ'ଣ ସହଜରେ ଛାଡ଼ିଦେଇପାରିବ ?

ସେ ଯାଉଚି ତାର ପ୍ରିୟ ନବୀନକୁ ଭେଟିବାପାଇଁ— ଭେଟି ତା' ମନ ଏବଂ ଆଖିର ଉତ୍ତେଜନାକୁ ଲାଘବ କରିବାପାଇଁ ।

ନବୀନ ତାର ଗାଈକୁ ଅଡ଼େଇଦେଇ ସେହି ଆମ୍ବଗଛ ତଳେ ବସିରହିଥାଏ । ମୁହଁରେ ଭରିରହିଥାଏ ଉଦାସଭାବ । କ'ଣ ଗୋଟିଏ ଅମୂଲ୍ୟ ପଦାର୍ଥ ହଜାଇଦେଲାଭଳି ମନ ତାର ଘାଣ୍ଟିଚ଼କଟି ହେଉଥାଏ । କିଆ ତାକୁ ଦୂରରୁ ମନ ମାରି ବସିଥିବା ଦେଖି ତା' ମନରେ ଗଭୀର ବେଦନା ଜାତହେଲା । ଏକ ଅବ୍ୟକ୍ତ ଯନ୍ତ୍ରଣାରେ ତା' ମନ ଏବଂ ହୃଦୟ ଛଟପଟ ହୋଇଉଠିଲା । ନବୀନ ତ ଏଭଳି ଦୁଃଖରେ ତୁନିହୋଇ ବସିରହିବା ସେ କେବେ ଦେଖିନାହିଁ । ହସଖୁସିରେ ଖେଳି କୁଦି ପାହାଡ଼ ତଳକୁ ଚମକାଦେଉଥାଏ । ସେହି ଚଳଚ଼ଞ୍ଚଳ ନବୀନ ଆଜି ଏତେ ଉଦାସ ମନରେ ବସିରହିଛି ! କିଆ ମନରେ ଏକପ୍ରକାର ଦୁଃଖର ବେଦନା ଖେଳିଗଲା । କିଆ ଧୀରେ ଧୀରେ ଅତି ନିକଟକୁ ଚାଲିଆସି ନବୀନକୁ ଅପଲକ ନୟନରେ ଚାହିଁରହିଲା ।

ନବୀନ ତନ୍ମୟ ହୋଇ ବସିରହିଥିବା ଦେଖି, କିଛିକ୍ଷଣ ପରେ ସେ ଡାକଦେଲା— ନ . . . ବୀ . . . ନ . . . । ତାର ସ୍ୱର କେଜାଣି କାହିଁକି ଥରିଉଠିଲାଭଳି ମନେହେଲା ।

ସେ ତ ନବୀନକୁ ଏମିତି କେତେଥର ଡାକିଛି, ଅଥଚ ଆଜି କାହିଁକି ଡାକିବାପାଇଁ ତା' ହୃଦୟ ଥରିଉଠିଲା ? କାହାର କୋମଳ ମଧୁର ଡାକ ଶୁଣି ନବୀନ ପ୍ରଥମେ ଚମକିପଡ଼ିଲା । ଆଶ୍ଚର୍ଯ୍ୟରେ ମୁହଁ ବୁଲାଇଆଣି ଦେଖିଲା ପାଖରେ କିଆ ଛିଡ଼ାହୋଇ ତାକୁ ଅନାଇରହିଛି । ସେ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ; ତନ୍ମୟ ହୋଇ ତାକୁ ସତୃଷ୍ଣ ନୟନରେ ଅନାଇ ରହିଲା । ପରମ କାମ୍ୟ ବସ୍ତୁକୁ ହଠାତ୍ ପାଖରେ ପାଇଲେ ମଣିଷ ଯେପରି ଆତ୍ମହରା ହୋଇଉଠେ, ଆଜି ନବୀନ ମଧ୍ୟ କିଆକୁ ତା ପାଖରେ ଦେଖି ବିସ୍ମୟରେ ଆତ୍ମହରା ହୋଇପଡ଼ିଛି ।

ଯାହା ବିଷୟରେ ସେ ସଦାବେଳେ ଭାବୁଥିଲା, ଯାହାକୁ ଆଉ ଦେଖିବାକୁ ସୁଯୋଗ ମିଳିବନାହିଁ ବୋଲି ମନ ତାର ଉଦାସ ହୋଇପଡ଼ିଥିଲା, ସେହି କିଆ, ତାର ପ୍ରାଣର କିଆ ଆଜି ଆସି ତା' ଆଗରେ ଛିଡ଼ାହୋଇ ତାକୁ ଡାକୁଛି । ନବୀନ ତାକୁ ତନ୍ମୟରେ ଚାହିଁରହିଲା ।

ନବୀନ ଏଭଳି ଆଶ୍ଚର୍ଯ୍ୟ ଓ ତନ୍ମୟ ହୋଇ ଅନାଇରହିଥିବା ଦେଖି କିଆ ଲାଜରେ ଗୋଟିସୁଦ୍ଧା ଜଡ଼ସଡ଼ ହୋଇଗଲା । ତାର ପ୍ରିୟ ନବୀନ ତାକୁ ଏଭଳି ଅନାଇରହିଥିବା ଯୋଗୁଁ ମନ ତାର ପୁଲକିତ ହୋଇଉଠିଲା । ସେ କେବଳ ଜଳଜଳ କରି ତା' ମୁହଁକୁ ଚାହିଁରହିଲା । ଏହି ତାର ପ୍ରିୟ ନବୀନ, ତା'ରି ଆଗମନରେ କେତେ ଶ୍ରଦ୍ଧାରେ କେତେ ଆଗ୍ରହରେ ତାକୁ ଅନାଇରହିଛି । କିଆ ସଚେତନ ହୋଇ ସ୍ମିତ ହସି କହିଲା – ''କ'ଣ ତୁ ମୋତେ କଥା କହିବୁ ନାହିଁ କି ?''

କିଆର ଏହି ପଦକ କଥାରେ ତା' ମୁଖରେ ହସ ଚହଟି ଆସିଲା । ମନରେ ଆନନ୍ଦର ଲହରୀ ଖେଳିଗଲା । ତୁଣ୍ଡ ଖଜବଜ ହେଲା କଥା କହିବାକୁ । ନବୀନ କହିଲା – ''ଏତେଦିନପରେ ଏ ଅବେଳରେ ତୋତେ ଦେଖି ମନ ମୋର ଆନନ୍ଦରେ ଗଦ୍‌ଗଦ ହୋଇଯାଉଛି । ତୋତେ ଏତେବେଳେ ଦେଖିବି ବୋଲି କେବେ ବି ଭାବିପାରିନଥିଲି ।''

କିଆ ନବୀନ ମୁହଁକୁ ତନ୍ମୟ ହୋଇ ଅନାଇ ରହି ତାହାରି କଥା ଶୁଣି ଯାଉଥାଏ । ତାହାରି ପଦକ କଥାରେ କିଆ ମନରେ କେତେ ଶାନ୍ତି, କେତେ ତୃପ୍ତି ଖେଳାଇ ଦେଉଥାଏ; ମୁହଁରେ ହସ ଚହଟି ଯାଇଥାଏ । –''ତୁ ତ ବାହାହୋଇ-ଯିବୁ, ଆଉ ତୋତେ ଦେଖିପାରିବିନାହିଁ ବୋଲି ମନ ମୋର ଦୁଃଖରେ ଭରିଯାଇଥିଲା ।

ନବୀନ ତା'ରି ମୁହଁକୁ ସତୃଷ୍ଣ ନୟନରେ ଚାହିଁ ପୁଣି ପଚାରିଲା – ''କେମିତି ଚାଲିଆସିଲୁ ? ବାଟ ଭୁଲି ଚାଲିଆସିଲୁ ନାହିଁ ତ ?''

–''ବାଟ ଆଉ ଭୁଲିବି କେମିତି ? ଏ ତ ମୋର ସବୁଦିନିଆ ବାଟ । ତୋତେ ଟିକିଏ ଦେଖିବି ଆଉ ଦୁଇପଦ କଥା ହେବି ବୋଲି ଚାଲିଆସିଲି ।''

କିଆର ହସହସ ମୁହଁରୁ ଏଇ କଥାପଦକ ଶୁଣି ନବୀନର ମୁହଁ ହସରେ

ଝଲସିଉଠିଲା । ହୃଦୟରେ ପୁଲକ ସୃଷ୍ଟିହେଲା । କ୍ଷଣିକପାଇଁ ସେ ଭାବବିହ୍ୱଳ ହୋଇପଡ଼ିଲା ଏବଂ ତନ୍ମୟ ହୋଇ କିଆ ମୁହଁକୁ ଅନାଇରହିଲା । ନବୀନ ଏଭଳି ତାକୁ ଅନାଇରହିଥିବା ଦେଖି କିଆ ଲାଜରେ ମୁଣ୍ଡ ତଳକୁ କରି କହିଲା – ‘‘କାହିଁ, ତୁ କିଛି କହୁନାହୁଁ ଯେ ?’’

ଭାବବିହ୍ୱଳ ହୋଇ ନବୀନ ତାକୁ ଅନାଇ କହିଲା – ‘‘ଯାହାହେଉ, ତୁ ମୋତେ ମନେପକାଉଛୁ, ସେତକହିଁ ମୋ ମନରେ ଆଜି କେତେ ଶାନ୍ତି ଆଣିଦେଇଛି । ସତେ କିଆ, ମୋ ମନରେ ଦୁଃଖଟିକକ ଯାହା ଥିଲା, ଆଜି ତୋ’ରି କଥାପଦକରେ ସବୁ ପୋଛିହୋଇଯାଇଛି । ତୋ’ର ନିଷ୍କପଟ ସରଳ କଥା ପଦକ ମୋ’ ମନରେ କେତେ ଯେ ଆନନ୍ଦ ଖେଳାଇ ଦେଇଛି ।’’

କିଆ ଭାବବିହ୍ୱଳ ହୋଇପଡ଼ିଲା । ଆବେଗ ଉତ୍ତେଜନାରେ ମନ ତାର ଉଲ୍ଲସିତ ହୋଇଉଠିଲା । ମୁହଁରେ ଆନନ୍ଦର ଫଗୁ ବିଞ୍ଚିହୋଇଗଲା ଭଳି ମନେହେଲା । ମନ ତାର ଉଲ୍ଲସିତ ହୋଇଉଠିଲା । ଆନନ୍ଦରେ ଅଧୀର ହୋଇ ତା’ର ତୁଣ୍ଡରୁ ବାହାରିପଡ଼ିଲା – ‘‘ସ . . . ତେ . . . ? ତୁ ମୋତେ ମନେପକାଉଛୁ ନା ? ମୋତେ ହେତୁ କରୁଛୁ, ନା ?’’

କିଆ ବ୍ୟାକୁଳହୋଇ ତା’ର ମୁହଁରୁ ଉତ୍ତର ଶୁଣିବ ବୋଲି ବ୍ୟାକୁଳ ନୟନରେ ତାକୁ ଅନାଇରହିଲା ।

–‘‘ତୋତେ ମୁଁ ଭୁଲିପାରିବିନି ଲୋ ଭୁଲିପାରିବିନି । ତୁ ସୁଖରେ ରହି ଘର-ସଂସାର କରୁଛୁ ବୋଲି ଶୁଣିଲେ ମନ ମୋର ଖୁସିରେ ନାଚିଉଠିବ ।

ପାଇବାର ଲୋଭ ନଥିଲେ ହରାଇବାରେ ଦୁଃଖ ନଥାଏ । ନବୀନ ଯେଉଁ ଦିନ ଜାଣିଗଲା ଏବଂ ଭଲରୂପେ ବୁଝିପାରିଲା, ସାମାଜିକ ବନ୍ଧନ ସବୁଠୁଁ ବଡ଼ ବନ୍ଧନ । ସମାଜକୁ ଛାଡ଼ି ମଣିଷ ବଞ୍ଚିପାରିବ ନାହିଁ । ସମାଜର ରୀତିନୀତିକୁ ମାନି ଚଳିବାକୁ ପଡ଼ିବ । ସେ ଗୋଟିଏ ଜାତି ଏବଂ କିଆ ଅନ୍ୟ ଜାତି; ତେଣୁ ସେମାନଙ୍କ ବିବାହ ସମ୍ଭବ ନୁହେଁ । ତେଣୁ ସେ କିଆକୁ ଆପଣାର କରିପାରିବନାହିଁ । ତାକୁ ପାଇବା ତା’ପକ୍ଷେ ସମ୍ଭବ ହୋଇପାରିବନାହିଁ । ସେହି ଦିନଠୁଁ ସେ ତା’ ମନକୁ ବୁଝାଇନେଇସାରିଛି । ସେ ଇଚ୍ଛାକଲେ ମଧ୍ୟ କିଆକୁ ବାହାହୋଇପାରିବନାହିଁ । ତାକୁ ମଧ୍ୟ ସେ ବାଧାଦେଇ ପାରିବନାହିଁ । ତାର ସେ ଶକ୍ତି ମଧ୍ୟ ନାହିଁ । ସମାଜର ରୀତିନୀତି ଚାଲିଚଳନ ଆଗରେ ସେମାନଙ୍କ ପ୍ରେମ କେବଳ ଅଳୀକମାତ୍ର ।

ତେଣୁ ସେ ମନକୁ ବୁଝାଇବାପାଇଁ ଚେଷ୍ଟାକରିଛି । କିଆପ୍ରତି ତା’ ମନର ଆସକ୍ତି କଟିଯାଇଛି; ମାତ୍ର ଅତୀତକୁ ସେ ଭୁଲିପାରୁନି । ଭୁଲିବାପାଇଁ ମନକୁ ବୁଝାଇଚାଲିଛି; ମାତ୍ର ମନ ବୁଝିଲେ ତ ? ନବୀନ ତାର ପ୍ରିୟା କିଆର ଗୋରାମୁହଁକୁ ସତୃଷ୍ଣ ନୟନରେ ଅନାଇ ଅପାର ତୃପ୍ତି ଅନୁଭବକଲା ।

ଏହି ତାର ପ୍ରିୟ ନବୀନ। ତା'ଠୁଁ ତାକୁ ଛଡ଼ାଇନେଇ ଅନ୍ୟଜଣକ ସହିତ ତାକୁ ଛନ୍ଦିଦେଉଛନ୍ତି। ହେଲେ ମୋତେ ତା'ଠାରୁ ଛଡ଼ାଇ ନେଇ ପାରିବେ ନାହିଁ। ସେ... କେବଳ... ତାର... ଯେଉଁଠି ଥିଲେ ବି... ମୁଁ... ତୋର...। ଆମେ ଏକ... ଅଭିନ୍ନ! ଜଣକୁ ବାଦ୍‌ଦେଲେ ଆଉ ଜଣକର ବଞ୍ଚିବାର ମାନେ କିଛି ରହିପାରେନା।

ସେ କେବଳ ଛଳଛଳ କରି ତା' ମୁହଁକୁ ଚାହିଁରହିଲା। ଦୁଇ ଆଖି ଛଳ ଛଳ ହୋଇଆସିଲା ଲୁହରେ। ଆଖିରେ ଆଖିଏ ଲୁହ, ଛାତି ଭିତରେ ତୁହାକୁତୁହା କୋହ। ଏମିତି କେତେ ସମୟ ତନ୍ମୟ ହୋଇ ମନର ବେଦନାକୁ ମନ ଭିତରେ ଚାପିରଖି କିଆ ତା' ମୁହଁକୁ ଅନାଇରହିଥାଏ। ସେ କେତେ କଥା ଭାବି ଆସିଥିଲା। ନବୀନ ସହିତ ଦେଖାହେଲାପରେ ତାକୁ କହିବ ବୋଲି ଭାବିଥିଲା; ମାତ୍ର ନବୀନକୁ ଦେଖିଲାପରେ ମନରେ କୋହ ଜାତହେଲା। ସେ ଭାବିଥିଲା, ସେ କେବଳ ସଦାବେଳେ ନବୀନ କଥା ଭାବିହେଉଛି; ମାତ୍ର ଆଜି ଆସି ନବୀନଠୁଁ ଯାହା ଶୁଣିଲା, ଯାହା ଦେଖିଲା, ତା' ମନର ଅହଂକାରଟିକକ ଲିଭିଗଲା। ସେ ଏକା ନବୀନକୁ ଭଲପାଉନାହିଁ; ନବୀନ ମଧ୍ୟ ତାକୁ ଅନ୍ତର ସହିତ ଭଲପାଇଛି, ତା'ରିକଥା ସଦାବେଳେ ମନେପକାଉଛି। କିଆକୁ ଏଭଳି ତୁନିରହିଥିବା ଦେଖି ନବୀନ କହିଲା— ''ତୁ ଏ ଗାଁ ଛାଡ଼ି ଚାଲିଗଲେ ସଭିଏଁ ତୋତେ ଝୁରିଝୁରି ମନେ ପକାଉଥିବେ।''

ନବୀନର 'ସଭିଏଁ' ଶବ୍ଦ କିଆକୁ ବୁଝିବାକୁ ବାକି ରହିଲା ନାହିଁ। କିଏ ମନେନପକାଇଲେ ମଧ୍ୟ ନବୀନର ମନରୁ କେବେ ସେ ଏତେ ସହଜରେ ପାଶୋର ଯାଇପାରିବ ନାହିଁ। ଆଜି ସେ ଭଲରୂପେ ବୁଝିଯାଇଛି ନବୀନ ତାକୁ କିଭଳି ଅନ୍ତରଦେଇ ଭଲପାଏ। ତା' ପ୍ରେମ ତୁଳନାରେ ନବୀନର ପ୍ରେମ କେତେ ଗଭୀର! ସେ ଭାବିଥିଲା ପୁରୁଷର ପ୍ରେମ ପାଣିଫୋଟକା ଭଳି କ୍ଷଣିକ, ଅଳୀକ। ମାତ୍ର ଆଜି ସେ ତାର ଭୁଲ ବୁଝିପାରିଛି। ନା... ପୁରୁଷର ପ୍ରେମ ନାରୀର ପ୍ରେମଠୁଁ ମଧ୍ୟ ଆହୁରି ଗଭୀର, ଆହୁରି ମର୍ମସ୍ପର୍ଶୀ। କିଆ ଛଳଛଳ ଆଖିରେ ତାକୁ ଅନାଇରହିଲା। ସେ ଭାବବିହ୍ୱଳ ହୋଇଯାଉଛି। ନବୀନକୁ କ'ଣ କହିବ ବୋଲି ତାର ତୁଣ୍ଡ ଖଜବଜ ହୋଇଉଠୁଛି। କିଆ ତାର ଆଖିରେ ଆଖି ମିଳାଇ ତନ୍ମୟହୋଇ ଡାକିଲା— ''ନ... ବୀ... ନ...।

କିଆର ସେହି ମଧୁର ଡାକ ଶୁଣି ଭାବ ବିହ୍ୱଳ ନବୀନର ତୁଣ୍ଡରୁ ବାହାରିପଡ଼ିଲା ''ଉଁ...''

ନବୀନ ତାକୁ ସତୃଷ୍ଣ ନୟନରେ ଅନାଇରହିଲା। ଆଖିରେ ଆଖି ମିଳାଇ, କିଆ ଧୀରେ କହିଲା— ''ତୁ ବି ଭଲଝିଅଟାଏ ଦେଖି ବାହାହୋଇ ପଡ଼...।'' ସେ ଆଉ କହିପାରିଲାନାହିଁ। ଶ୍ୱାସରୁଦ୍ଧ ହେଲାଭଳି ତାକୁ ମନେହେଲା। ତାର

ସ୍ୱର ଥରିଉଠିଲା । ହୃଦୟର କେଉଁ ନିଭୃତ କୋଣରେ କିଏ ହାତୁଡ଼ିଟାଏ ପିଟିଦେଲାଭଳି ମନେହେଲା । ତାର ଅନ୍ତର ବେଦନାରେ ହାହାକାର କରିଉଠିଲା । ଆଖି ତାର ଛଳ ଛଳ ହୋଇଗଲା । କ୍ଷଣିକପାଇଁ ସତେ ଯେପରି ସାରାସଂସାର ଅନ୍ଧକାରମୟ ଲାଗିଲା ।

ନବୀନ ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁ କହିଲା – ''ସେ କଥା ଆଉ ମୋତେ କହନାଲୋ . . . ।'' ମନ ତାର ବେଦନାରେ ଭରିଗଲା । କଣ୍ଠ ତାର ବାଷ୍ପରୁଦ୍ଧ ହୋଇଗଲା । ଛାତିର ପଞ୍ଜରା ଥରାଇ ଏକ ଦୀର୍ଘ ନିଃଶ୍ୱାସ ବାହାରିଆସିଲା ।

କିଆ ହତବାକ୍ ହୋଇ ନୀରବରେ କେବଳ ତାକୁ ଚାହିଁରହିଲା । ଭାବିଲା, ତାକୁ ଏଭଳି କହିବା ତା'ପକ୍ଷେ ଠିକ୍‌ହେଲାନାହିଁ । ମୋ ମନରେ ସତେ କେତେ ଅହଂକାର ଭରିରହିଛି । ଭାବିଥିଲି, ମୁଁ ଏକା ତାକୁ ଝୁରିହେଉଛି । ମାତ୍ର ନବୀନକୁ ଆଉ ଜଣକୁ ବାହାହେବା କଥା କହିଲାକ୍ଷଣି ମନ ତାର ବେଦନାରେ ଭରିଗଲା; ସକାଳର ଜହ୍ନିଫୁଲ ଭଳି ଫିକାପଡ଼ିଗଲା । କିଆ ସାଙ୍ଗମାନଙ୍କଠୁ ଶୁଣିଥିଲା, ତା' ବାପମା' ତାକୁ ଯେତେ କହିଲେ ଝିଅ ଦେଖିଯିବାପାଇଁ, ସେ ରୋକ୍‌ଠୋକ୍ ମନାକରିଦେଲା । ସେହି ନବୀନ ଆଜି ତାର ପଦକ କଥାରେ ସତେ କେତେ ଭାଙ୍ଗିପଡ଼ିଲା । ତାର ମଳିନ ଶୁଖିଲା ମୁହଁରେ ବେଦନାର ରେଖା ଫୁଟିଉଠିଲା । ତା' ମୁହଁକୁ କିଆ ଜଳଜଳ କରି ଅନାଇ ରହିଲା ।

ଏକ ଆବେଗଭରା ଚାହାଣିରେ ସେ କିଆର ମୁହଁକୁ ଚାହିଁରହିଲା । ପିଲାଦିନର ଅଭୁଲା ସ୍ମୃତିକି କିଏ କ'ଣ ଭୁଲିଯାଇପାରେ ? ସମୟର ସ୍ରୋତରେ ତାହା କେବଳ ମଳିନପଡ଼ିଯାଇଥାଏ, ମାତ୍ର; ମନରୁ ପୋଛି ହୋଇଯାଇନଥାଏ ।

ନୀରବରେ ଦୁହେଁ ବସିରହିଥାନ୍ତି । ଏହିଭଳି କିଛି ସମୟ ନୀରବରେ ଅତିବାହିତ ହୋଇଗଲା । ପାଖ ଆମ୍ବଗଛର ଗହଳ-ପତ୍ର ମଧ୍ୟରୁ ଚଢ଼େଇଟିଏ ଡେଣା ଫଡ଼୍‌ଫଡ଼୍ କରି ଉଡ଼ିଗଲା । ଦୁଇ ପ୍ରେମିକ-ପ୍ରେମିକାଙ୍କ ମନର ବେଦନାରେ ସମବେଦନା ପ୍ରକାଶ କରି ଉଡ଼ି ଉଡ଼ି ଅନନ୍ତ ଆକାଶରେ ଛପିଗଲା ।

ନବୀନ ତାର ମଳିନ ମୁହଁରେ ହସର ଏକ ସରୁ ରେଖାଟିଏ ଫୁଟାଇ କହିଲା – ''ସତରେ କିଆ, ତୁ ବାହାହେବା ଆଗରୁ ମୋତେ ଭେଟିବାପାଇଁ ଆସିଲୁ; ସେତକହିଁ ମୋତେ ଖୁସିଲାଗିଲା । ସେତକ ମୋ ମନରେ ଶାନ୍ତିଆଣିଦେଲା । ମନରେ ଅନ୍ତତଃ ସାନ୍ତ୍ୱନାଟିକକ ମିଳିଲା ଯେ ତୁ ମୋତେ ଭୁଲିନୁ . . . । ଆଉ ତୋ' ସହିତ ଦେଖା ହେବ କି ନା, ମୁଁ ଜାଣେନା . . . । ତୁ ତ ଶାଶୁଘରକୁ ଚାଲିଯିବୁ । ଦୂରଗାଁ . . . । ଘର-ସଂସାର କଳାପରେ ନୂଆ ଜଞ୍ଜାଳରେ ବୁଡ଼ିରହିବୁ । ସେତେବେଳେ ତୋତେ ଆଉ କାହା କଥା ଭାବିବାକୁ ବେଳ ମିଳିବ ନାହିଁ ।''

ନବୀନର କଥା ଶୁଣି କିଆର ଅନ୍ତର ଥରିଉଠିଲା । ତାର କଣ୍ଠନଳି ଶୁଷ୍କ ହେଲାଭଳି ଜଣାଗଲା । ଛାତିଭିତରେ ସ୍ପନ୍ଦନ ବଢ଼ିବାକୁ ଲାଗିଲା । ନବୀନର ମର୍ମଭେଦୀ

କଥାପଦକ ଶୁଣି ତା' ମନରେ ଘନ ଅନ୍ଧକାର ଖେଳିଗଲା, ଆଖିରୁ ଜ୍ୟୋତି ଲିଭିଗଲା ଭଳି ମନେହେଲା। ସତେ କ'ଣ ସେ ନବୀନଠାରୁ ଆଜି ଶେଷ ବିଦାୟ ନେଇ ଯାଉଛି? ସେ ନିଜ ମନକୁ ବିଶ୍ୱାସ କରିପାରିଲାନାହିଁ। ସେ ନବୀନକୁ ଭେଟି ଦୁଇପଦ କଥା ହେବାକୁ ଆସିଛି– ତା'ଠୁ ବିଦାୟ ନେବାକୁ ଆସିନାହିଁ। ନବୀନଠୁଁ ଏହା ତାର ଶେଷ ବିଦାୟ ବୋଲି ସେ ଭାବିପାରୁନାହିଁ। ତଥାପି ମନ ତାର ଦୁଃଖରେ ଭରିଯାଇଛି। ନବୀନର କଥାରେ କିଆର ଆଖି ଛଳଛଳ ହୋଇଉଠିଲା। ତାର ସାରାଦେହ ରୋମାଞ୍ଚିତ ହୋଇଉଠିଲା ଆବେଗରେ।

ପିଲାଦିନର ସବୁ ସ୍ୱପ୍ନ ଆଜି ଧୂଳିସାତ୍ ହୋଇଯାଉଛି। ମନର ସବୁ ଆଶା ଧୀରେ ଧୀରେ ଲିଭି ଲିଭି ଯାଉଛି। ଅନ୍ୟ ଜଣକୁ ସେ ବାହାହୋଇଯିବ, ଏ କଥା ଭାବି ସେ ବ୍ୟତିବ୍ୟସ୍ତ ହୋଇପଡୁଛି। ତାକୁ ଚାରିଆଡ଼ ଅନ୍ଧାର ଦେଖାଯାଉଛି। ତା' ମନ ଉଦାସରେ ଭରିଯାଉଛି।

ସେ ପ୍ରଥମେ ହତବାକ୍ ହୋଇ ନବୀନ ଆଡ଼କୁ ଅନାଇନେଲା। ତାର ସେହି ପ୍ରିୟସାଥି ପାହାଡ଼ତଳେ ଆଜି ନୀରବ ନିଶ୍ଚଳ ହୋଇ ତାକୁ ଅନାଇରହିଛି। ତା' ମୁହଁରେ ହସଟିକକ ମଧ୍ୟ ନାହିଁ। ତା' ଦୁଃଖରେ ସେ ମଧ୍ୟ ଦୁଃଖୀ ହେଲାଭଳି ମନେହେଉଛି। ଆଜି ଯେପରି ସେହି ପାହାଡ଼ରୁ ଆଗଭଳି ଫୁଲର ମହକ ପବନରେ ଭାଆସୁନାହିଁ। କୋକିଳର କୁହୁତାନ ଆଉ ଶୁଭୁନାହିଁ। ଝରଣାର କୁଳୁକୁଳୁ ନାଦ ଆଜି କିଭଳି କର୍କଶ ମନେହେଉଛି।

ଦୁଃଖ ଓ ବିଷାଦରେ କିଆ ଫୁଲିଫୁଲି କାନ୍ଦିଉଠିଲା। ଦୁଃଖ ଏବଂ ବେଦନାରେ ମନ ତାର ଭରିଗଲା। ତା' ମନଭିତରେ କେତେ ଯେ ପ୍ରଶ୍ନ ଖେଳିଯାଉଛି– ସତରେ ସେ କ'ଣ ନବୀନଠୁଁ ଦୂରେଇଯିବ? ଯାଇପାରିବ କି? ଏ ଜନ୍ମରେ କାହିଁକି; ସାତ ଜନ୍ମରେ ମଧ୍ୟ ତାକୁ ନବୀନଠୁ କିଏ ଦୂରେଇ ନେଇ ପାରିବେ ନାହିଁ।

କିଆ ମୌନହୋଇ ଛିଡ଼ାହୋଇରହିଥିବା ଦେଖି ନବୀନ ଡାକିଦେଲା– ''କି... ଆ...!''

ନବୀନର ସେହି 'କିଆ ଡାକ' ତାର ସମଗ୍ର ଶରୀରରେ ଆବେଗଭରା ଉତ୍ତେଜନାରେ ଶିହରିଉଠିଲା। ସ୍ନାୟୁରେ ଖେଳିଗଲା ତୀବ୍ର ଉତ୍ତେଜନା। ନିଶ୍ୱାସପ୍ରବାହରେ ଭରିଗଲା ପ୍ରଚୁର ଉଷ୍ଣତା। ସେହି ମଧୁର ଡାକ ଶୁଣି ଖୁସିରେ ସେ ଆତ୍ମହରା ହୋଇଉଠିଲା। କ୍ଷଣିକ ପୂର୍ବରୁ ମନର ବିଷାଦ ଏଇ ଡାକରେ ଦୂରେଇଗଲା। ଯେପରି ସକାଳର ସୂର୍ଯ୍ୟାଲୋକରେ ଘନ କୁହୁଡ଼ି ଦୂରେଇଗଲାଭଳି ତାକୁ ପ୍ରତୀୟମାନ ହେଲା। ଆବେଗରେ ଆଖି ତାର ଛଳଛଳ ହୋଇଉଠିଲା।

ନବୀନର ମନରେ ମଧ୍ୟ ଅକୁହା ବେଦନା ଭରିଯାଇଥାଏ। ମନର ବେଦନାକୁ

ଚାପିରଖି ଛାତିକୁ ପଥର କରି ସେ କହିଲା– "ତୁ ତ ଆମ ସଭିଁଙ୍କୁ ଛାଡ଼ି ଚାଲିଯିବୁ ଶାଶୁଘର। ନୂଆ ସାଙ୍ଗ ପାଇଲାପରେ ମତେ ଭୁଲିଯିବୁ। ନୂଆ ସାଥି ଗହଣରେ ମୁଁ କିନ୍ତୁ ଏହି ପାହାଡ଼ତଳେ ଥାଇ, ଏହି ଆମ୍ବଗଛମୂଳେ ବସି ଆମ ଅତୀତ କଥା ମନେପକାଉଥିବି।"

କିଆ ନୀରବ ନିଶ୍ଚଳରେ ନବୀନର କଥା ଶୁଣିଯାଉଥାଏ– "ଆମେ ଛୋଟ ଥିଲୁ, ଆମକୁ କିଛି ଭାବନା ସ୍ପର୍ଶ କରିପାରିନଥିଲା। ମନରେ ଭୟ ଆଶଙ୍କା ନଥିଲା। ହସଖୁସିରେ ଦିନ କଟିଯାଇଥିଲା। ଆମେ ଯେତେବେଳେ ବଡ଼ହୋଇଗଲୁ, ସବୁ ଆକଟ ଆମକୁ ମାଡ଼ିବସିଲା। ପିଲାଦିନରେ ଆମ ମନରେ ଭୟଭ୍ରାନ୍ତି ନଥିଲା; ବଡ଼ହୋଇଗଲାପରେ ସମାଜର ନାଲିଆଖି ଆମକୁ ମାଡ଼ିବସିଲା। ସତେ ପିଲାଦିନ ଆମର କେତେ ମଧୁର ଥିଲା ?"

କିଆ ଆଉ ନବୀନର କଥା ଶୁଣିପାରିଲାନାହିଁ। ଛୋଟ ଛୁଆଙ୍କ ପରି କଇଁକଇଁ ହୋଇ କାନ୍ଦିପକାଇଲା। ନବୀନ ଏକ ଆବେଗରେ କହିଲା– "ଛି... ମୋ ରାଣ, ତୁ ଆଉ କାନ୍ଦନା। ତୋ' ଆଖିରେ ଲୁହ ଦେଖିଲେ ମୋର ହୃଦୟ ଦୁଃଖରେ ଭରିଯାଉଛି। ଆମ ଗାଁ ଠାକୁରାଣୀ ତୋର ମଙ୍ଗଳକରନ୍ତୁ।"

ତାର କଣ୍ଠସ୍ୱର ଥରିଉଠିଲା। କିଆ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ। ତୁହାକୁ ତୁହା କୋହ ଛାତିରୁ ଉଠିଆସୁଥିଲା। ଆଖି ଛଳଛଳ ହୋଇଯାଇଥିଲା। ତାର ଚାହାଣିରେ ବିଷାଦର ଛାୟା ଖେଳିଯାଇଥିଲା। ସତେ ତାର ନବୀନ କେତେ ଉଦାର, କେତେ ମହାନ୍। ତା' ମନରେ ତା'ପ୍ରତି କୌଣସି ଭୁଲ ଧାରଣା ସୃଷ୍ଟିହୋଇନାହିଁ। ସେ ଭାବି ଆସିଥିଲା, ତାକୁ ଦେଖି ନବୀନ ତା' ସହିତ କଥା ହେବନାହିଁ, ରାଗରେ ତା' ମୁହଁକୁ ଅନାଇବନାହିଁ। ମାତ୍ର ଆସି ଯାହା ଦେଖିଲା, ସେଥିରେ ନବୀନ ପ୍ରତି ତାର ସ୍ନେହ ଶ୍ରଦ୍ଧା ଶତଗୁଣ ବଢ଼ିଗଲା।

ସେ ନବୀନକୁ ଦେଖିଲା– ତାର ଆଖି ଦୁଇଟି କୋହରେ ଫୁଲିଉଠି ନାଲିପଡ଼ିଯାଇଛି। ନବୀନର ଛଳଛଳ ଆଖି ଦେଖି କିଆ ନିଜକୁ ସମ୍ଭାଳି ପାରିଲା ନାହିଁ। ଅନ୍ତରର କୋହକୁ ପାରୁପର୍ଯ୍ୟନ୍ତ ଚାପିରଖି ଦ୍ରୁତପଦରେ ସେଠୁ ଦୌଡ଼ିପଳାଇଗଲା। ନବୀନ କେବଳ ତାର ଯିବାପଥକୁ ଅନାଇରହିଲା। ତାର ଆଖିରୁ ଦୁଇଟୋପା ଲୁହ ଗଡ଼ିପଡ଼ିଲା।

× × × ×

ବିବାହର ନିର୍ଦ୍ଦିଷ୍ଟ ଦିନ ଆସି ପହଞ୍ଚିଯାଇଛି। ଗାଁର ସ୍ତ୍ରୀଲୋକ ଏବଂ ସଖୀଜନ ଗହଣରେ କିଆ ଆଜି ସାଗରକୁ ଗାଧୋଇବାପାଇଁ ଆସିଛି। ତାର ସାଙ୍ଗ ସାଥୀମାନେ କେତେଜଣ ସାଗରତୁଠରେ ତାକୁ ଏକ ବଡ଼ପଥର ଉପରେ ବସାଇ ଥଟ୍ଟା-ଟାପରା କରୁ କରୁ ଦେହରେ ହଳଦୀ ଲଗାଇଦେଉଥାନ୍ତି। ପାଦରେ ପାଉଞ୍ଜି, କାନରେ

ଝୁମୁକା ଝୁଣୁଝୁଣୁ କରୁଥାଏ। କିଆ ମଧ୍ୟ ତାର ସାଙ୍ଗମାନଙ୍କ ମୁହଁରେ ହଳଦୀବୋଳିଦେଇ ଆନନ୍ଦ ଉପଲବ୍ଧି କରୁଥାଏ। ସାଙ୍ଗଜଣେ ତାର ମସୃଣ ଦୁଇ ଗୋଡ଼ର ଲୁଗାକୁ ଆଣ୍ଠୁ ପର୍ଯ୍ୟନ୍ତ ଟେକି ହଳଦୀ ଲଗାଇ ଦେଉଥାଏ। କଅଁଳ ଦେହସାରା ହଳଦୀ ବୋଳୁ ବୋଳୁ କେତେ ମଧୁର କଥା ପଡ଼ିଯାଉଥାଏ। ଦୁଇ ଗୋରା ବାହୁଯୁଗଳରେ ହଳଦୀ ଲଗାଇ ସାଥୀମାନେ କୌତୁକରେ ତାର ହାତକୁ ଚିପିଦେଉଥାନ୍ତି। କିଆ ଲାଜେଇଯାଇ ସ୍ମିତ ହସି ହଳଦୀ ମେଂଚାଏ ଆଣି ସେମାନଙ୍କ ଦେହରେ ବୋଳି ହସି ଉଠୁଥାଏ।

ଜଣେ କହିଉଠିଲା– ‘‘ଆଲୋ, ଏ ହଳଦୀ ତୋତେ ମଖାଇବାକୁ ଆଣିଛୁଁ; ତୋ’ ବାହାଘର ଅଛି। ତୁ କ’ଣ ଆମକୁ ହଳଦୀ ଲଗାଇଦେଉଛୁ?’’

ଆଉ ଜଣେ ସାଥୀ ପଦ୍ମା ହସି ହସି କହିଲା– କିଆର ପାଳିପରେ ମୀନାର ପାଳି ପଡ଼ିବ ନାହିଁକି? ସେଥିପାଇଁ ସେ ମଧ୍ୟ ଆଗତୁରା ହଳଦୀ ମାଖି ନେଉଛି।

–‘‘ହଁ ଲୋ ହଁ, ସତେ ଯେପରି ତୋର ଆଉ ପାଳି ପଡ଼ିବ ନାହିଁ?’’ ମୀନା ଖିଲିଖିଲି ହସି କହିଲା।

–‘‘ମୋତେ କିଏ ବାହା ହେବ ମ?’’ ପଦ୍ମା ମନମାରି କହିଲା– ‘‘ମୁଁ ଆସି ଦରବୁଢ଼ୀଟିଏ ହେଲିଣି। ଆଉ କ’ଣ ବାହା ହେବାପାଇଁ ବଅସ ଅଛି ଯେ କେଉଁ ଯୁବାପୁରୁଷ ମୋତେ ବାହାହେବାପାଇଁ ମନକରିବ।’’

ମୀନା ତାର ଅତି ନିକଟକୁ ଚାଲିଆସି ମୁହଁରେ ହଳଦୀ ମେଞ୍ଚାଏ ବୋଳିଦେଇ କହିଲା– ‘‘ଏଇନେ ପଦ୍ମାକୁ ଦେଖ। ମୁହଁଟା କେମିତି ଫୁଟିଲା ସଜଫୁଲ ଭଳି ଦିଶୁଛି। ମୁଁ ମରଦ ହୋଇଥିଲେ ଏମିତି ମାଇକିନାକୁ ଆଗ ବାହାହୁଅନ୍ତି।’’

ତାର କଥା ଶୁଣି କୁଆଁରୀ କନ୍ୟାମାନେ ଖିଲିଖିଲି ହସିଉଠିଲେ। କିଆ ମଧ୍ୟ ହସିଉଠିଲା। ହେଲେ ତାର ସ୍ୱାଭାବିକ ପ୍ରାଣଖୋଲା ହସ ହସି ପାରିଲା ନାହିଁ।

ସାଙ୍ଗମାନଙ୍କ ଭିତରୁ ଜଣେ ପାଟିକରି ଉଠିଲା– ‘‘ଆଲୋ ଅଲାଜୁକୀ, ଦଇବ ତୋତେ ମରଦ ନକଲା କିଆଁ?’’

–‘‘ସତେ ଲୋ, ମରଦ ହୋଇଥିଲେ ପଦ୍ମାକୁ ଆଗ ମୁଁ ବାହାହୁଅନ୍ତି; କାହା କଥା ମୁଁ ଶୁଣନ୍ତିନାହିଁ। ଏମିତି ସୁନ୍ଦରୀ ଝିଅଟାକୁ ମୁଁ ଛାଡ଼ନ୍ତିନାହିଁ। ମାଡ଼ଖାଆନ୍ତି ସିନା; ଜୋରଜବରଦସ୍ତି ଟେକିନେଇ ବାହା ହୋଇ ପଡ଼ନ୍ତି।’’ –ଏତକ କହି ସତକୁ ସତ ତାକୁ କୁଣ୍ଢାଇପକାଇଲା।

ପଦ୍ମା ପାଟିକରିଉଠିଲା। ଦେହରେ ତାର ଶିହରଣ ଖେଳିଗଲା। ଦେହ ରୋମାଞ୍ଚିତ ହୋଇଉଠିଲା। କ୍ଷଣିକପାଇଁ କାମନାର ପୀଡ଼ାରେ ତାର ସୁପ୍ତ ଯୌବନ ଉତ୍ତେଜିତ ହୋଇଉଠିଲା। ପ୍ରେମର ଫଲଗୁ ତାର ମୁହଁସାରା ଚହଲିଗଲା। ଲାଜରେ ପାଟିକରି ଛଡ଼ାଇହେବାପାଇଁ ଛାଟିପିଟିହୋଇ ପାଟିକଲା– ‘‘ଆଲୋ, ଆଲୋ ଏ

କ'ଣ ହଉଛି ? ୟା'କୁ ଦେଖ, ସତେ ଯେମିତି ମରଦ ପାଲଟିଯାଇଛି । ଛି ଲୋ, ଅଲାଜୁକୀ, କେମିତି ଢଙ୍ଗରେ କଥା ହେଉଛି ? ତୋତେ ଲାଜସରମ ନାହିଁ ଲୋ !''

କିଆ ତା' ସାଥୀମାନଙ୍କ ଟାହି-ଟାପରା ଶୁଣି ଭାବବିହ୍ୱଳ ହୋଇଯାଇଥାଏ । ଏଇମାନଙ୍କୁ ଛାଡ଼ି ସେ କେଉଁ ଏକ ଅଜଣା-ଅଶୁଣା ଗାଁକୁ ଚାଲିଯିବ । ଏଭଳି ମଧୁର ପ୍ରେମ ସମ୍ଭାଷଣ ସେ ଆଉ ଶୁଣିପାରିବନାହିଁ । ଏଭଳି ମନଖୋଲା ମଧୁର ହସ ସେ ଆଉ ଦେଖିପାରିବନାହିଁ କି ଶୁଣିପାରିବନାହିଁ ।

ତା' ମନରେ ତା' ଅଜାଣତରେ କୋହ ଉଠିଆସିଲା । ସେ ତାର ପ୍ରିୟ ଏଇ ପୋଖରୀକୁ ଛାଡ଼ି ଚାଲିଯିବ । ପିଲାଟି ଦିନରୁ ଯେଉଁ ପୋଖରୀରେ ଗାଧୋଇଛି, ଯେଉଁ ପୋଖରୀ ଏତେବଡ଼ ଯେ ସାଗର ଭଳି ଦିଶେ; ସେହି ସାଗରର ପାଣିରେ ଖେଳିକୁଦି, ପହଁରି ବଡ଼ହୋଇଛି । ତାର ସେହି ନିର୍ମଳ ଜଳ ଆଉ ତାକୁ ମିଳିବନାହିଁ । ସେହି ଗାଁରେ କ'ଣ ଏତେବଡ଼ ପୋଖରୀଟିଏ ଥିବ ? ଆମ ଗାଁ ପୋଖରୀଭଳି ଏତେବଡ଼ ପୋଖରୀ ଏ ଖଣ୍ଡମଣ୍ଡଳରେ ନାହିଁ ବୋଲି ସଭିଏଁ କହନ୍ତି । ତା'ତ ସତ ।

ସାଙ୍ଗସାଥୀମାନେ ପୁଣି ପାଣି ଫିଙ୍ଗାଫିଙ୍ଗି ହେଉଥାନ୍ତି । ଜଣେ ଆରଜଣକ ଉପରକୁ ପାଣି ପକାଇଦେଉଥାଏ । ଖିଲିଖିଲି ହସରେ ପୋଖରୀ ତୁଠ କମ୍ପିଉଠୁଥାଏ । ଓଦାଦେହରେ ସଭିଏଁ ପାଣିଭିତରେ ଛିଡ଼ାହୋଇଥାନ୍ତି । ଓଦା ପତଳା ଶାଢ଼ି ଦେହ ସହିତ ମିଶିଯାଇ ରୂପଯୌବନ ଫୁଟିଦିଶୁଥାଏ । କିଏ ପାଣିକୁ ଲମ୍ଫ ଦେଇ ପାଣି ଛିଟିକାରେ ଅନ୍ୟକୁ ତିନ୍ତାଇ ଦେଉଥାଏ । ତରୁଣୀମାନଙ୍କ କଳରୋଳରେ ସ୍ଥାନଟି ମୁଖରିତ ହୋଇଉଠୁଥାଏ । ଦୁଷ୍ଟାମିରେ କୁରୁଳିଉଠି ପରସ୍ପରକୁ ଠେଲାଠେଲି ହୋଇ ଝିଅମାନେ ଆନନ୍ଦରେ ଅଧୀର ହୋଇପଡୁଥାନ୍ତି ।

ଗୋଧୋଇସାରି ପୋଖରୀ ହୁଡ଼ାରେ ଛିଡ଼ାହୋଇ ଜଣେ ପ୍ରୌଢ଼ା ମୁରବି ସୁଲଭ ଢଙ୍ଗରେ ପାଟିକରି ଆକଟ କରୁଥାନ୍ତି– ''ବେଗେ କିଆକୁ ଗାଧୋଇ ନେଇଆସ; ବେଳହେଲାଣି । ଘରେ ସଭିଏଁ ଚାକିରହିଥିବେ । ଆମେ ଗଲେ ବାହା ବିଧାନ ଆରମ୍ଭହେବ । ଆଲୋ ମୀନା, ଆଲୋ ପଦ୍ମା, ମୋ' କଥା ତୁମକୁ କ'ଣ ଶୁଭୁନିକି ?''

–''ମାଉସି, ଏଇ ଶୀଘ୍ର ଗାଧୋଇଦେଉଛୁ । ଟିକିଏ ରହିଯାଅ ।'' ପାଣି ଭିତରୁ ପଦ୍ମା ପାଟିକରିଉଠିଲା । କିଆ ତାର ସଖୀମାନଙ୍କ ଗହଣରେ ପାଣି ଭିତରକୁ ଚାଲିଚାଲି ଆସିଲା; ଗାଧୋଇସାରି ଘରକୁ ଯିବ । ପାଣି ଭିତରକୁ ଚାଲିଗଲାପରେ କେହି କେହି ପହଁରି ଗୋଡ଼ ବାଡ଼େଇ ପାଣିଛିଟିକା ମାରୁଥାନ୍ତି । ପାଣିଛିଟିକା ଆସି ମୁହଁରେ ପଡୁଥାଏ । କିଆ ମଧ୍ୟ ସାଥୀମେଳରେ ପହଁରିପହଁରି ପାଣି ଭିତରକୁ ଚାଲିଯାଉଥାଏ । ମନଭରି ଶେଷଥରପାଇଁ ସାଗରପାଣିରେ ଗାଧୋଇବାପାଇଁ ଆଜି ତାର ପ୍ରବଳ ଆଗ୍ରହ ।

ଏମିତି ଗୋଟିଏ ଖିଆଲରେ ଗୋଡ଼ ହଲାଇ ହଲାଇ ହାତବଢ଼ାଇ କିଆ ଭିତରକୁ ଚାଲିଗଲା । କୂଳଠୁଁ ଅନେକ ଦୂରକୁ ଚାଲିଗଲା । ତାର ସାଙ୍ଗସାଥୀମାନେ କେତେ ପଛରେ ପଡ଼ିଗଲେଣି । ସେମାନେ ଥକ୍କା ହୋଇ ଜଣଜଣକରି ଫେରି- ଆସୁଥାନ୍ତି ।

ସାଥୀମାନଙ୍କ ଭିତରୁ ଦୂରରୁ ଜଣେ ପାଟିକରିଉଠିଲା— ‘‘ଆଲୋ କିଆ, ପାଣିରେ ପହଁରା ଆଜି ଏତିକି ଥାଉ । ତେଣେ ଘରେ ସଭିଏଁ ଚାହିଁରହିଥିବେ ।’’

—‘‘ହଁ ଲୋ, ହଁ ଆଉ କ’ଣ ଏ ସାଗରପାଣି ପହଁରିବାକୁ ପାଇବି ? ଆଜି ଶେଷଥର ପାଇଁ ଆମ ଗାଁ ସାଗରରେ ପହଁରିଥାଏଁ । ଆଉ କ’ଣ ତୁମମାନଙ୍କ ସାଥିରେ ପହଁରିବାକୁ ସୁଯୋଗ ମିଳିବ ?’’ କିଆ ଏହା କହି ଆଗକୁ ଆଗକୁ ପହଁରିଚାଲିଥାଏ ।

ତା’ ସାଥୀମାନଙ୍କ ଭିତରୁ ମୀନା କହିଉଠିଲା— ‘‘ହଁ ଲୋ, ତୁ ଆଉ ଆମ ସହିତ କାହିଁକି ପହଁରିବୁ ? ତୋର ପ୍ରେମସାଗରରେ ତୋ’ ମନର ପୁରୁଷ ପହଁରିବେ ଏଥର । ଆମ ଗାଁ ସାଗରରେ ପହଁରିବାକୁ ବେଳ ମିଳିବ କାହୁଁ ?’’

ତା’କଥା ଶୁଣି ତାର ସାଥୀମାନେ ଖିଲିଖିଲି ହସିଉଠିଲେ ।

ଆଉ ଜଣେ ପାଟି କରି ଉଠିଲା— ‘‘ଆଲୋ କିଆ, ଆଉ ଆଗକୁ ଯାଆନା ଲୋ !’’

କିଆ ସେତେବେଳକୁ ପାଣି ଭିତରେ ଅନେକ ଦୂରକୁ ଚାଲିଯାଇଥାଏ । ପିଞ୍ଜରାବଦ୍ଧ ପକ୍ଷୀଟିଏ ମୁକ୍ତ ହୋଇ ବହୁଦିନପରେ ମୁକ୍ତ ଆକାଶରେ ଉଡ଼ିବାର ସୁଯୋଗ ପାଇଲେ, ଡେଣା ହଲାଇ ଉଡ଼ିଗଲାଭଳି ପାଣିଭିତରେ କିଆ ମଧ୍ୟ ଗୋଡ଼ହାତ ହଲାଇ ନିର୍ଭୟରେ ପହଁରିଚାଲିଛି । ଏତିକିବେଳକୁ କିଆର ଗୋଡ଼ଦୁଇଟି ତାର ପିନ୍ଧିଥିବା ଲୁଗାରେ ଧୀରେ ଧୀରେ ଛନ୍ଦିହୋଇଆସୁଥାଏ । ସାରା ଦେହଟା ସତେ କି ଅଚଳ ହୋଇଆସୁଛି !! ଅକସ୍ମାତ୍ ସେ ଜାଣିପାରିଲା ତାର ଗୋଡ଼ ତାରି ଲୁଗାରେ ଛନ୍ଦିହୋଇଯାଇଛି । ଭୟରେ ତାର ଛାତି ଥରିଉଠିଲା । ଏକ ଅଜଣା ଆଶଙ୍କାରେ ମନ ତାର ଭୟଭୀତ ହୋଇଉଠିଲା । ଆଖି ବୁଲାଇ ଦେଖିଲା କୂଳଠୁଁ ସେ ବହୁଦୂରକୁ ଚାଲିଆସିଛି । ପାଖରେ କେହି ସାଙ୍ଗସାଥୀ ନାହାନ୍ତି । ସମସ୍ତେ ଗୋଟି ଗୋଟିକରି କୂଳଆଡ଼କୁ ଫେରିଚାଲିଛନ୍ତି । କିଏ ବା ଥକିଯାଇ ବିକଳରେ କୂଳରେ ପହଞ୍ଚିବାକୁ ଆପ୍ରାଣ ଚେଷ୍ଟା ଚଳାଇଛି ।

ଅକସ୍ମାତ୍ କିଆକୁ ଭୟରେ ଚାରିଆଡ଼ ଅନ୍ଧାର ଦେଖାଗଲା । କ୍ଷଣିକ ପାଇଁ ସାରା ସଂସାର ଅନ୍ଧକାରମୟ ହୋଇଗଲା । ପାଣିଭିତରେ ଥାଇ ମଧ୍ୟ ପାଟି ଶୁଖିଯାଇ ଅଠା ଅଠା ବୋଧହେଲା । ଭୟ ଆଶଙ୍କା ତା’ ମନକୁ ଘାରିଗଲା । ଏ ପରିସ୍ଥିତିରେ କିଏ ଅବା ଭୟଭୀତ ନହେବ ? ତଥାପି ମନରେ ସାହସ ସଂଚୟ କରି କିଆ

ଏ ବିପଦରୁ ଉଦ୍ଧାର ପାଇବାପାଇଁ ଆପ୍ରାଣ ଚେଷ୍ଟାକଲା । ସେ ଜାଣିଲା, ପାଖରେ କେହି ନାହାନ୍ତି । ତାର ସାହାଭରସା ପାଇଁ କିଏ ତା' ପାଖକୁ ଏଇନେ ଆସି-ପାରିବନାହିଁ । ମନର ଝୁଙ୍କରେ ସେ ଏତେଦୂରକୁ ଚାଲିଆସିଛି ।

ତା' ମନକୁ ଏକ ବୁଦ୍ଧି ଦିଶିଲା । ସେ ପାଣିରେ ଏକ ବୁଡ଼ ଦେଇ ଗୋଡ଼ରୁ ଲୁଗା ଖସାଇବାକୁ ଚେଷ୍ଟାକଲା । ପତଳା ଲୁଗାଟା ଦେହ ତମାମ ଗୁଡ଼ାଇହୋଇ ତାର ଦୁଇଗୋଡ଼କୁ ବାନ୍ଧିଦେଲାଭଳି ଛନ୍ଦିହୋଇଯାଇଥାଏ । ପାଣିରେ ଏମିତି ବୁଡ଼ଦେଇ ଗୋଡ଼ରେ ଲୁଗାକୁ ଖସାଇବାକୁ ସେ ଚେଷ୍ଟା ଚଳାଇଲା; ମାତ୍ର ତାର ସମସ୍ତ ଚେଷ୍ଟା ବୃଥା ହୋଇ ଆସୁଥାଏ । ଏଥର ସେ ଆତଙ୍କଗ୍ରସ୍ତ ହୋଇ ସାହାଯ୍ୟପାଇଁ ଚାରିଆଡ଼କୁ ଚାହିଁଲା । ଦେଖିଲା ତାର ସାଙ୍ଗସାଥୀମାନେ ପାଖରେ କେହି ନାହାନ୍ତି; ସେମାନେ କୂଳକୁ ଲେଉଟିଗଲେଣି ।

କିଆ ହତାଶ ହୋଇପଡ଼ିଲା । ଅସହ୍ୟ ମାନସିକ ଯନ୍ତ୍ରଣାରେ ସେ ଛଟପଟ ହୋଇ ବଂଚିବାପାଇଁ ସମସ୍ତ ଚେଷ୍ଟାକରିବା ସତ୍ତ୍ୱେ ତା' ଗୋଡ଼ର ଲୁଗା ଧୀରେ ଧୀରେ ଆହୁରି ଶକ୍ତ ହୋଇ ଛନ୍ଦିହୋଇଯାଉଥାଏ । ଏକ ଅଜଣା ଆଶଙ୍କାରେ ସେ ଭୟଭୀତ ହୋଇ ଚିତ୍କାରକରିଉଠିଲା । ତାର ଚିତ୍କାର ଶୁଣି, ତାକୁ ଅନାଇରହିଥିବା ଗାଁ ମାଇପିଏ ମଧ ଭୟ ଓ ଆଶଙ୍କାରେ ଚିତ୍କାର କରିଉଠିଲେ ।

ସାଗର ତୁଠର ସମସ୍ତଙ୍କ ଚିତ୍କାରରେ ସେହି ପାହାଡ଼ତଳ ପ୍ରକମ୍ପିତ ହୋଇଉଠିଲା । ସେହି ପାହାଡ଼ତଳୁ ଏକ ପ୍ରକମ୍ପିତ ପ୍ରତିଧ୍ୱନି ସ୍ୱର ସେ ଶୁଣିବାକୁ ପାଇଲା । କିଆ ଅନୁଭବ କଲା ତାର ଜୀବନର ଶେଷ ମୁହୂର୍ତ୍ତ ଆସି ପହଞ୍ଚିଯାଇଛି ।

ଗାଁର ଗାଈଚରାଉଥିବା ପିଲାମାନେ ସେ ଚିତ୍କାର ଶୁଣି ନବୀନକୁ ପାଟିକରି ଡାକଛାଡ଼ିଲେ – "ଭାଇ ନବୀନ, କିଏ ପାଣିରେ ବୁଡ଼ିଯାଉଛି, ଚାଲ ଶୀଘ୍ର ଉଦ୍ଧାରକରିବା ।"

ନବୀନ ଅନ୍ୟମନସ୍କ ଥିଲା; ତେଣୁ ପ୍ରଥମେ କିଛି ଶୁଣିପାରିଲାନାହିଁ । କାନ ପାତି ସେ କ'ଣ ଶୁଣିବାକୁ ଚେଷ୍ଟାକଲା । ସେ ଦୂରରୁ ନାରୀମାନଙ୍କର ଚିତ୍କାର ଶୁଣିଲା – "ଆରେ କିଏ ଅଛ . . . ରକ୍ଷାକର . . . ରକ୍ଷାକର . . . ହେଇ ବୁଡ଼ିଗଲା . . . ହେଇ ବୁଡ଼ିଗଲା . . . ।"

ସେ ଚିତ୍କାର ଶୁଣି ନବୀନର ସର୍ବାଙ୍ଗ ଥରିଉଠିଲା । ଦେହରେ ଉତ୍ତେଜନାର ଶିହରଣ ଖେଳିଗଲା । ମନ ଚଞ୍ଚଳ ହୋଇଉଠିଲା । ଲୋମ ମୂଳ ଟାଙ୍କୁରିଉଠିଲା । ସେ ଏକାନିଶ୍ୱାସରେ ବସିବା ସ୍ଥାନରୁ ଉଠି ଦୌଡ଼ିବାକୁ ଲାଗିଲା । ତା' ପଛେ ପଛେ ସଭିଏଁ ଦୌଡ଼ିବାକୁ ଲାଗିଲେ । ସଭିଁଙ୍କୁ ଦୌଡୁଥିବା ଦେଖି ଗାଈ, ଗୋରୁ, ଛେଳି ମେଣ୍ଢା ମଧ୍ୟ ସେମାନଙ୍କ ପଛରେ କାନ ଓ ଲାଞ୍ଜ ଟେକି ବିକଳରେ ଦୌଡ଼ିବାକୁ ଲାଗିଲେ । ସେମାନଙ୍କ ଦୌଡ଼ ସହ ଏକ ବିକଳ ଚିତ୍କାର ସେମାନଙ୍କ

ମୁହଁରୁ ବାହାରିପଡୁଥାଏ । ପରିସ୍ଥିତି ଆହୁରି କରୁଣ୍ୟଭରା ହୋଇଉଠୁଥାଏ ।

ନବୀନ ମୁହୂର୍ତ୍ତକ ଭିତରେ ସାଗର ହୁଡ଼ାରେ ପହଞ୍ଚି ପ୍ରଥମେ ପାଣି ଭିତରକୁ ଆଖିପକାଇଲା । ଦେଖିଲା ଜଣେ କିଏ ବହୁଦୂରରେ ପାଣିଭିତରେ ବଂଚିବାପାଇଁ ବିକଳ ପ୍ରୟାସ ଚଳାଇଛି । କେତେବେଳେ ପାଣିଭିତରେ ବୁଡ଼ି ଯାଉଛି ତ ପୁଣି ପରମୁହୂର୍ତ୍ତରେ ଉପରକୁ ମୁଣ୍ଡଟେକିଦେଉଛି ।

ନବୀନ ଆଉ ଧୈର୍ଯ୍ୟଧରି ରହିପାରିଲାନାହିଁ । ଅଣ୍ଟାରେ ତାର ପିନ୍ଧିଥିବା ଧୋତିକୁ ଭଲକରି ଗୁଡ଼ାଇଦେଇ ପାଣିଭିତରକୁ ଡେଇଁପଡ଼ିଲା । ତାର ସୁପ୍ତ ଶକ୍ତି ଜାଗ୍ରତ ହୋଇଉଠିଲା । ଲମ୍ବା ଲମ୍ବା ହାତ ଆଗକୁ ବଢ଼ାଇ ଗୋଡ଼କୁ କ୍ଷିପ୍ରଗତିରେ ଚଳାଇ ପହଁରିଯାଇ କ୍ଷଣିକ ଭିତରେ ଝିଅଟି ନିକଟରେ ପହଞ୍ଚିଗଲା । ବିସ୍ମୟରେ ତାର ଆଖି ଦୁଇଟି ବିସ୍ତାରିତ ହୋଇଗଲା । ଏ କ'ଣ ! ତାର ପ୍ରିୟ କିଆ !! ତାର ଆଜି ଏ ଅବସ୍ଥା ?

ନବୀନ ଭାବବିହ୍ୱଳ ହୋଇ ଚିତ୍କାରକରିଉଠିଲା – "କି . . . ଆ . . ."

କେହି ଜଣେ ତାକୁ ଉଦ୍ଧାର କରିବାପାଇଁ ଆସୁଥିବା ଦୂରରୁ ଦେଖି କିଆ ମନରେ ସାହସ ଆସିଗଲା । ବଂଚିବାର କ୍ଷୀଣ ଆଶାରେ ମୁହଁ ତାର ଉଜ୍ଜ୍ୱଳ ହୋଇଗଲା । ମନରେ ଆଶା ଜାଗିଉଠିଲା । କ୍ଷଣିକ ପୂର୍ବରୁ ଭୟରେ ସେ ଥରିଉଠୁଥିଲା । ଜୀବନ ଏବଂ ମୃତ୍ୟୁର ସଂଘର୍ଷ ଭିତରେ ଏବେ ବଂଚିବାର ଆଶା ନେଇ ପ୍ରାଣ ତାର ପୁଲକିତ ହୋଇଉଠିଲା ।

ପାଖରେ କାହାର କି . . . ଆ ଡାକ ଶୁଣି ସେ ଚମକିପଡ଼ିଲା । ଏ କ'ଣ ତାର ମନର ଭ୍ରମ କି ? ନା' ତ ।

ଅତି ନିକଟରୁ ପୁଣି ସେହି ଡାକ ଶୁଭିଲା । ଏଁ, ଏ ତ ତାର ସେହି ଅତି ପରିଚିତ ଡାକ ! ତାର ପ୍ରିୟତମର କଣ୍ଠସ୍ୱର । ଯେଉଁ ଡାକଟିକକ ଶୁଣିବାପାଇଁ ମନ ତାର ଛନଛନ ହେଉଥାଏ; ଯେଉଁ ଡାକ ଶୁଣି ସେ ଭାବବିହ୍ୱଳ ହୋଇଯାଏ, ସେହି ପରିଚିତ ସ୍ୱର ଏଭଳି ସଂକଟ ସମୟରେ ଶୁଣି ମନ ତାର ଚଳଚଞ୍ଚଳ ହୋଇଉଠିଲା । ପ୍ରାଣରେ ନୂତନ ଜୀବନ ସଂଚାରିତହେଲା । ତାର ପ୍ରାଣର ନବୀନ, ତା'ରି ମଧୁର ସ୍ୱର ଆଜି ଏ ଅସମୟରେ ସେ ଶୁଣିପାରିଛି । ତାର ନବୀନ ବିନା ଏ ସ୍ୱର ଆଉ କାହାର ହୋଇନପାରେ । ଏ ତାର ମନର ଭ୍ରମ ନୁହେଁ– ନିରାଟ ସତ୍ୟ । ଏ ବିପଦ ସମୟରେ ତାର ଜୀବନରକ୍ଷା ପାଇଁ ତାର ପ୍ରାଣପ୍ରିୟ ନବୀନ ଛଡ଼ା ଆଉ କିଏ ତା' ପାଖକୁ ଆସିପାରେ ? ତେବେ ତାର ବିକଳ ଚିତ୍କାର ତା'ପାଖରେ ପହଞ୍ଚିପାରିଛି ? ସେ ପହଁରିଆସି ତାକୁ ଉଦ୍ଧାରକରିବାପାଇଁ ତା' ପାଖରେ ପହଞ୍ଚି ତାକୁ ଡାକୁଛି । କିଆ ବିସ୍ମୟ ଏବଂ ଆତୁରରେ ଡାକିଲା – "ନ . . . ବୀ . . . ନ . . ."

କିଆ ମୁହଁରେ ଟେନାଏ ହସର ଲହରୀ ଖେଳିଗଲା । ଏତେ ବିପଦରେ ମଧ୍ୟ ମୁହଁ କ୍ଷଣିକପାଇଁ ସତେଜହୋଇଉଠିଲା । ସେହି ମୁହୂର୍ତ୍ତଟି ତା' ଜୀବନର ସମସ୍ତ ଦୁଃଖକୁ କ୍ଷଣିକ ପାଇଁ ଲିଭାଇଦେଲା । ନବୀନର ଡାକରେ ସେ ଆତ୍ମବିଭୋର ହୋଇଗଲା । ତା' ଆଖି ସାମନାରେ ସତକୁ ସତ ତାର ପ୍ରିୟ ନବୀନ ଆସି ପହଞ୍ଚିଯାଇଛି ତାକୁ ଏ ବିପଦରୁ ଉଦ୍ଧାରକରିବାପାଇଁ। ନବୀନ ଆସିଗଲାପରେ କିଆ ହାତବଢ଼ାଇ ଭାବବିହ୍ୱଳ ହୋଇ ନବୀନକୁ ଭିଡ଼ିଧରିଲା ।

ନବୀନ ଏବଂ କିଆ ଦୁହେଁ ଦୁହିଁଙ୍କୁ କିଛିସମୟପାଇଁ ଆତ୍ମହରା ହୋଇ କୁଣ୍ଢାଇଧରିଲେ । ଦୁଇ ଶରୀର ଏକହୋଇଗଲା । ଅକସ୍ମାତ୍ ଅପ୍ରତ୍ୟାଶିତ ଭାବରେ ଏ ମଧୁର ମିଳନ । ସାଗରବକ୍ଷରେ ପ୍ରେମପାଗଳ ଦୁଇ ଯୁବକ ଯୁବତୀର ଗାଢ଼ ଆଲିଙ୍ଗନ ମଧ୍ୟରେ ମଧୁର ମିଳନ ଘଟିଗଲା । ଏ ପ୍ରେମବନ୍ଧନ ଏତେ ସହଜରେ ଛିଣ୍ଡିଯାଇ ପାରେନା !! ଆଃ . . . କି ଆନନ୍ଦ . . . କି ତୃପ୍ତି । ପ୍ରେମପାଗଳ ଦୁଇ ପ୍ରାଣୀ କେତେ ବର୍ଷ ପରେ ସେମାନଙ୍କର ଅପ୍ରତ୍ୟାଶିତ ଭାବରେ ମିଳନ ଘଟିଛି । ମନର କୋହ, ମନର ବେଦନା ସବୁ ଲୁପ୍ତହୋଇ ସେମାନେ ଆତ୍ମବିଭୋର ହୋଇଯାଇଛନ୍ତି ।

ପ୍ରେମିକ ପ୍ରେମିକାଙ୍କ ମିଳନ ସତେ କେଡ଼େ ମଧୁମୟ ଆଜି ସେମାନେ ମର୍ମେ ମର୍ମେ ଉପଲବ୍ଧି କରିପାରିଛନ୍ତି ।

ଧୀରେ ଧୀରେ ନବୀନ ଆତ୍ମସଚେତନ ହୋଇଉଠିଲା । ଭାବବିହ୍ୱଳତା ଛାଡ଼ି କିଆର ଏ ଅବସ୍ଥା ଦେଖି ତାକୁ ଉଦ୍ଧାରକରିବାପାଇଁ ସବୁପ୍ରକାର ଉଦ୍ୟମ କଲା ।

ପ୍ରାଣର ଆବେଗରେ ତାର ତୁଣ୍ଡରୁ ବାହାରିପଡ଼ିଲା – କି . . . ଆ . . . ମୋର ପ୍ରାଣର କି . . . ଆ . . . । ଅର୍ଦ୍ଧଚେତନ ଅବସ୍ଥାରେ କିଆର ପାଟିରୁ ମଧ୍ୟ ଅସ୍ପଷ୍ଟ ସ୍ୱରରେ ବାହାରିପଡ଼ିଲା – ନ . . . ବୀ . . . ନ . . .

କିଆର ସେହି ସ୍ୱର ଶୁଣି ନବୀନ ଭାବବିହ୍ୱଳ ହୋଇ କହିଚାଲିଥାଏ – "ତୋ' ବିନା ମୁଁ ବଞ୍ଚିପାରିବି ନାହିଁ ଲୋ । ତୋତେ ବଞ୍ଚିବାକୁ ହେବ ।"

କିଆ ମୁହଁରେ ଏକ ସରୁ ହାସ୍ୟରେଖା ଫୁଟିଉଠିଲା । ସେ ମଧ୍ୟ ଅଚେତନ ଅବସ୍ଥାରେ ଉତ୍ତର ଦେଲା – "ନ . . . ବୀ . . . ନ . . . ତୁ ମୋର ଜୀବନ । ତୁ ମୋର ସବୁ । ତୋ' ବିନା ମୁଁ ମଧ୍ୟ ବଞ୍ଚିପାରିବିନାହିଁ ।"

ଦୁହେଁ ପରସ୍ପରକୁ କୁଣ୍ଢାଇଧରି ପରମ ତୃପ୍ତିରେ କିଛିକ୍ଷଣ ଆଖି ବୁଜି ରହିଲେ । ଦୁହିଁଙ୍କ ମନରେ ଗୋଟିଏ ଭାବନା – ଆମେ ଦୁହେଁ ଏକ ଏବଂ ଅଭିନ୍ନ । ଅନନ୍ତକାଳପାଇଁ ଆମେ ଦୁହେଁ ଏକ ହୋଇ ରହିଥିବୁଁ । ଆମକୁ କିଏ ବିଚ୍ଛିନ୍ନ କରିପାରିବେନାହିଁ; କାହାର ସେ ସାଧ୍ୟ ମଧ୍ୟ ନାହିଁ ।

କିଆ ମନରେ ଅନେକ କଥା ଛପିରହିଥିଲା – ମାତ୍ର ସେ କିଛି କହିପାରିଲାନାହିଁ ।

ଭାବାବେଗରେ ପୁଣି ଥରେ ନବୀନକୁ ଗାଢ଼ଭାବେ ଆଲିଙ୍ଗନ କଲା । ତାର ଆଲିଙ୍ଗନରୁ ନିଜକୁ ମୁକ୍ତକରିବା ଶକ୍ତିଟିକକ ମଧ୍ୟ ନବୀନର ନଥିଲା । କିଆର ବାହୁବନ୍ଧନରେ ଛନ୍ଦିହୋଇ ନବୀନ ଆତ୍ମବିଭୋର ହୋଇଯାଉଥାଏ ।

ଏ ମଧୁର ମିଳନରେ ଦୁଇ ଯୁବକ-ଯୁବତୀ ବିହ୍ୱଳ ହୋଇପଡ଼ିଥାନ୍ତି । ମାତ୍ର ତାଙ୍କର ଅଲକ୍ଷ୍ୟରେ ନିୟତି ମଧ୍ୟ ହସିଉଠୁଥିଲା ତାଙ୍କର ଭାବବିହ୍ୱଳ ମିଳନକୁ ଉପକ୍ଷୋ କରି, ତାହା ସେମାନେ ଭୁଲିଗଲେ । ସେମାନେ ମଧ୍ୟ ସେତେବେଳେ ଜାଣିବା ଅବସ୍ଥାରେ ନଥିଲେ । ଦୁହେଁ ଗାଢ଼ ଆଲିଙ୍ଗନ ମଧ୍ୟରେ ଆତ୍ମବିଭୋର ହୋଇ .ଏ' ତା' କାନରେ ସେ ତା' କାନରେ ଗୋପନରେ କେତେ କଥା କହିଯାଉଥାନ୍ତି – ଆମେ ଏକ ଓ ଅଭିନ୍ନ; ଜଣକୁ ଛାଡ଼ି ଅନ୍ୟ ଜଣକ ବଞ୍ଚିପାରେନାହିଁ । ବଞ୍ଚିବା ତ ଦୁହେଁ ବଞ୍ଚିବା; ମରିବା ତ ଦୁହେଁ ମରିବା ।

ଆଲିଙ୍ଗନର ସେ ମଧୁରତା ମଧ୍ୟରୁ ଉଭୟେ ଆଉ ମୁକ୍ତ ହେବାକୁ ଚାହୁଁନଥିଲେ । ଦୁହିଁଙ୍କର ପରସ୍ପରଠୁଁ ବିଚ୍ଛିନ୍ନ ହେବାର ଶକ୍ତି ମଧ୍ୟ ନଥିଲା । ସୁଖ, ଶାନ୍ତି, ସ୍ନେହ ପ୍ରେମ ଆଜି ସବୁ ଏକାଠି ହୋଇଯାଇଛି । ଏତେ ସୁଖ ସେମାନେ ଜୀବନରେ ଆଉ କେବେ ପାଇନଥିଲେ ।

ସେମାନଙ୍କର ଏ ମିଳନ ଆନନ୍ଦ ମଧରେ ଅଲକ୍ଷ୍ୟରେ ନିୟତି ପରିହାସ କରିଚାଲିଛି । ଧୀରେ ଧୀରେ କିଆ ଅଚେ଼ତ୍ ହୋଇଆସୁଥାଏ । ତାର ଆଖି ଆପଣାଛାଏଁ ମୁଦିହୋଇଯାଉଥାଏ । ପେଟରେ ପାଣି ଭର୍ତ୍ତିହୋଇ ପେଟ ଫୁଲି ଯାଇଥାଏ । ତାର ସ୍ୱର ଧୀରେ ଧୀରେ କ୍ଷୀଣହୋଇଆସୁଥିଲା । ନବୀନ ତାର ଦୁଇ ବାହୁର ସବୁ ଶକ୍ତି ଲଗାଇ କିଆକୁ ଉପରକୁ ଟେକି ପହଁରିବାପାଇଁ ଚେଷ୍ଟାକଲା; ମାତ୍ର ତାହା ତା'ପକ୍ଷେ ସମ୍ଭବ ହୋଇପାରିଲାନାହିଁ ।

ନବୀନ ମନରେ ଏକ ଅଜଣା ଭୟ ସଂଚ଼ରିଗଲା । ସେ କିଆକୁ ବଂଚାଇବାପାଇଁ ଆପ୍ରାଣ ଚେଷ୍ଟାକଲା; ମାତ୍ର ସବୁ ବିଫଳହୋଇଗଲା । ନବୀନକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ସତେ ଯେପରି କ୍ଷଣିକପାଇଁ ସାରାସଂସାର ଅନ୍ଧକାରମୟ ହୋଇଗଲା । ଛିନ୍ନପକ୍ଷ କପୋତପରି କରୁଣ ଅସହାୟ ଆଜି ତାର ଅବସ୍ଥା । ତାର ଚତୁଃପାର୍ଶ୍ୱ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଭଳି ମନେହେଉଥାଏ । ସେ ଅସହାୟ ବୋଧକଲା ।

କିଆ ଧୀରେ ଧୀରେ ନୀରବ ହୋଇଆସୁଛି । ଯେଉଁ ସାମାନ୍ୟ ସ୍ୱର ଶୁଭୁଛି ନିସ୍ତବ୍‌ଧତା ଭିତରେ ମୃତ୍ୟୁର ଆର୍ତ୍ତନାଦ ଭଳି ଶୁଣାଗଲା ସେ ସ୍ୱର । ନବୀନ ଦେଖିଲା— କିଆ ମୁହଁରେ ଏକ ପ୍ରସନ୍ନ ଭାବ ଖେଳିଯାଇଥାଏ । ଜୀବନର ଶେଷ ମୁହୂର୍ତ୍ତରେ ନବୀନର ଛାତିରେ ମୁଣ୍ଡରଖି ତାର ଶେଷ ନିଶ୍ୱାସଟିକକ ଛାଡ଼ି ଯାଉଥିବା ଯୋଗୁଁ ତା' ମନର ତୃପ୍ତି ମୁହଁରେ ଫୁଟିଉଠିଥାଏ ।

ଧୀରେ ଧୀରେ କିଆର ହାତ ଦୁଇଟି ଅଧିକ ଜୋର୍‌ରେ ନବୀନର ଦେହକୁ

ଚାପିଧରିଲାଭଳି ତାର ମନେହେଉଥାଏ। ନବୀନ ତାର ମଜଭୁତ୍ ବାହୁର ମାଂସପେଶୀ ଉପରେ ଅନୁଭବ କରୁଥାଏ ଏକ କୋମଳ ହସ୍ତର ସ୍ପର୍ଶ। ମାତ୍ର ସେଇ ଶକ୍ତ ଚାପରେ ତାର ଶ୍ୱାସ ରୁଦ୍ଧ ହୋଇଗଲାଭଳି ମନେହେଉଥାଏ। ସେହି ବାହୁବନ୍ଧନ ମଧ୍ୟରୁ ମୁକ୍ତହେବା ନବୀନ ପକ୍ଷେ ସମ୍ଭବ ହୋଇପାରିଲାନାହିଁ। ଧୀରେ ଧୀରେ ସେ ଅଣନିଶ୍ୱାସୀ ହୋଇପଡ଼ିଲା।

ଗଭୀର ପ୍ରେମର ନିବିଡ଼ ସ୍ପର୍ଶ ଅନୁଭବ କରୁ କରୁ ସବୁ କିଛି ଓଲଟପାଲଟ ହୋଇଗଲା। ସେ କିଛି ବୁଝିପାରିଲା ନାହିଁ କି କିଛି କରିପାରିଲାନାହିଁ। କିଆକୁ ବଂଚାଇବାପାଇଁ ଆସି ତା'ର ଜୀବନ ମଧ୍ୟ କିଆ ସହିତ ଏକାକାର ହୋଇଗଲା। ଧୀରେ ଧୀରେ ତାର ଗୋଡ଼ ଦୁଇଟି କିଆର ଗୋଡ଼ ସହିତ ଛନ୍ଦିହୋଇ ତଳକୁ ତଳକୁ ଚାଲିଗଲା ଭଳି ତାକୁ ମନେହେଲା। ସାଗରର ଗଭୀର ଜଳରେ ଦୁହେଁ ଉବୁଟୁବୁ ହେଉଁ ହେଉଁ ଅତଳ ଗର୍ଭରେ ଧୀରେ ଧୀରେ ହଜିଗଲେ କିଛିକ୍ଷଣପାଇଁ।

ସାଗର ହୁଡ଼ାରେ ଛିଡ଼ାହୋଇଥିବା ଗ୍ରାମର ନରନାରୀମାନେ ପାଣି ଭିତରେ ଏ ଦୁଇଜଣଙ୍କୁ ବୁଡ଼ିଯାଉଥିବା ଦେଖି ବିକଳହୋଇ ଚିତ୍କାରକରିଉଠିଲେ। ପର ମୁହୂର୍ତ୍ତରେ ପୁଣି ସାଗର ପାଣିରେ ଭାସିଉଠିଲେ ଦୁହେଁ। ଜୀବନ ଆଉ ମୃତ୍ୟୁର ଏଇ ମହା ସଂଘର୍ଷ ଭିତରେ ଶେଷରେ ମୃତ୍ୟୁରହିଁ ବିଜୟ ଘଟିଲା। ସୃଷ୍ଟିର ଦୁଇଟି ପ୍ରାଣୀ— ଦୁଇଟି ନିଷ୍ପାପ କଳିକା— ଦୁଇ ପ୍ରେମିକ-ପ୍ରେମିକାଙ୍କ ମଧୁର ମିଳନ— ଯେଉଁ ମିଳନରେ ହୃଦୟ ସହିତ ହୃଦୟର ମିଳନ— ଗଭୀର ଆବେଗରେ ଦୁହେଁ ଦୁହିଁଙ୍କୁ କୁଣ୍ଢାଇ ଛନ୍ଦି ହୋଇ ରହିଛନ୍ତି। ଘନ ନୀରବତା ମଧ୍ୟରେ ଦୁଇପ୍ରାଣୀ ହଜିଗଲେ ସବୁଦିନପାଇଁ। ନିଷ୍ପନ୍ଦ ପ୍ରାଣହୀନ ଶରୀର ଦୁଇଟି ସାଗରବକ୍ଷରେ ଭାସୁଥାଏ ମନେହେଉଥାଏ; ସତେଜ ଏବଂ ଜୀବନ୍ତ ଭଳି। ଆଖିରେ ଏବଂ ମୁହଁରେ ଏବେ ମଧ୍ୟ ମିଳନ ଆନନ୍ଦର ହସ ଲାଖିରହିଥାଏ। ମନେହେଉଥାଏ, ଯେପରି ଜଣେ ଆରଜଣକ ମୁହଁରେ ମୁହଁ ଲଗାଇ ଚାପା ସ୍ୱରରେ କହୁଛି— ତୁ ମୋର... ମୁଁ ତୋ'ର।

କିଆ ଓ ନବୀନ ଦୁହେଁ ଗାଢ଼ ଆଲିଙ୍ଗନ ମଧ୍ୟରେ ଛନ୍ଦିହୋଇଯାଇଥାଆନ୍ତି। ନବୀନର ଡାହାଣ ହାତପାପୁଲି କିଆର ବାମ ହାତପାପୁଲି ସହିତ ଛନ୍ଦି ହୋଇଯାଇଥାଏ। ଆନନ୍ଦ ଅଧୀରରେ ଦୁଇ ହସ୍ତ ଶକ୍ତ ହୋଇଯାଇଥାଏ। ସେମାନଙ୍କ ହୃଦୟରେ ଏକ ଅପୂର୍ବ ପୁଲକ ସୃଷ୍ଟିହୋଇଯାଇଥାଏ। ଏଭଳି ପୁଲକ ସେମାନେ ତାଙ୍କ ଜୀବନରେ କେବେ ଭୋଗିନଥିବା ଭଳି ସେମାନଙ୍କ ମୁହଁରେ ପରିସ୍ଫୁଟ ହୋଇଯାଇଥାଏ। ଏହାହିଁ ପ୍ରଥମ ଓ ଶେଷ ଅନୁଭୂତି। ଏଭଳି ଅବସ୍ଥାରେ ନୀରବ ନିଷ୍କଳ ହୋଇ ପାଣି ଉପରେ ପଡ଼ିରହିଥାନ୍ତି।

ନବୀନ କିଆକୁ ବଂଚାଇବାପାଇଁ ପାଣି ଭିତରକୁ ଲମ୍ଫଦେବାପରେ ସମସ୍ତଙ୍କ

ମନରେ ଦମ୍ଭ ଆସିଯାଇଥିଲା। ନବୀନ ଉପରେ ସମସ୍ତଙ୍କର ଅଟଳ ବିଶ୍ୱାସ। ସେ କିଆକୁ ନିଶ୍ଚୟ ଏ ବିପଦରୁ ଉଦ୍ଧାର କରିପାରିବ। ମାତ୍ର ସେମାନେ ଯେତେବେଳେ ଦେଖିଲେ ଯେ ସାଗରଜଳରେ କିଆ ଏବଂ ନବୀନ ଉବୁଟୁବୁ ହେଉଛନ୍ତି, ସେମାନଙ୍କ ଦମ୍ଭ ଭାଙ୍ଗିଗଲା। ସେମାନଙ୍କ ଭିତରୁ ଆଉ କେତେଜଣ ପାଣିକୁ ଲମ୍ଫ ଦେଲେ; ମାତ୍ର ସେମାନେ ପହଞ୍ଚିଲାବେଳକୁ ସବୁ ଶେଷ।

ଗାଁଲୋକମାନେ ସାଗର ଭିତରୁ ମୃତ କିଆ ଏବଂ ନବୀନକୁ ଆଣିଲେ। ସେ ଦୁହେଁ ଗାଢ଼ ଆଲିଙ୍ଗନରେ ଆବଦ୍ଧ ଥାଇ ମୃତ୍ୟୁବରଣ କରିଥିଲେ। ସାଗର କୂଳରେ ଛିଡ଼ାହୋଇଥିବା ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ସମସ୍ତେ ସେମାନଙ୍କ ନିର୍ଜୀବ ଜଡ଼ପିଣ୍ଡ ଦେଖି ଧୈର୍ଯ୍ୟଧରି ରହିପାରିଲେନାହିଁ। ସେମାନଙ୍କ କ୍ରନ୍ଦନରୋଳରେ ପାହାଡ଼ତଳ ମୁଖରିତ ହୋଇଉଠିଲା।

ସେମାନଙ୍କ କଇଁକଇଁ କାନ୍ଦଣା ସହ ଗାଈ, ଗୋରୁ, ଛେଳି, ମେଣ୍ଢା ମଧ୍ୟ ମଣିଷର ସ୍ୱର ସହ ସ୍ୱର ମିଳାଇ ବିକଳ ରଡ଼ି ଛାଡ଼ିଲେ। ସେମାନଙ୍କ ବିକଳ ଚିତ୍କାରରେ କ୍ଷଣିକପାଇଁ ସେହି ସ୍ଥାନଟି ଭୟଙ୍କର ରୂପ ଧାରଣ କଲାଭଳି ମନେହେଲା। ଗାଈ ଛେଳିମାନଙ୍କ ଆଖିରୁ ଅନବରତ ଅଶ୍ରୁ ବର୍ଷଣ ହୋଇ ଚାଲିଥାଏ। ସେମାନେ ଭଲରୂପେ ଜାଣିଯାଇଥାନ୍ତି, ତାଙ୍କ ପ୍ରିୟ ଗାଈଆଳ ନବୀନ ଆଉ ନାହିଁ; ତା' ସହିତ କିଆ ମଧ୍ୟ ନାହିଁ। ସେମାନେ ପଶୁ ହେଲେ ମଧ୍ୟ ମାୟା-ମମତା ଅଛି। ବୁଝିବାର ଶକ୍ତି ମଣିଷଠୁଁ ମଧ୍ୟ କମ୍‌ନୁହେଁ। ମାଳତୀ ଦୂରରେ ଛିଡ଼ାହୋଇ ସ୍ଥାଣୁ ପାଲଟିଯାଇଥାଏ। ମନକୁ ମନ କହୁଥାଏ– "କିଆ, ତୁ ମୋତେ ଅଭିମାନ କରି ଚାଲିଗଲୁ ?"

ସତେ କ'ଣ କିଏ କେବେ ଭାବିଥିଲା ଯେ ଏମାନେ ଏମିତିଭାବେ ସମସ୍ତଙ୍କ ଆଖିଆଗରୁ ସବୁଦିନପାଇଁ ଅନ୍ତର୍ହିତ ହୋଇଯିବେ ? ଯେଉଁ କିଆ ସହ ହସଖୁସିରେ ପୋଖରୀ ତୁଠ କିଛିକ୍ଷଣ ପୂର୍ବରୁ ମୁଖରିତ ହେଉଥିଲା; ଏବେ ତାର ପ୍ରାଣହୀନ ଜଡ଼ପିଣ୍ଡ ସେଠାରେ ପଡ଼ିରହିଛି। ଏତେ ଶୀଘ୍ର କେଡ଼େ ବିପର୍ଯ୍ୟୟ ଘଟିଗଲା ! କିଆର ମା' ରେବତୀ ଘରେ ବିଭାଘରପାଇଁ ସବୁ ଜିନିଷ ଯୋଗାଡ଼ କରି ରଖି କିଆର ଫେରିବା ବାଟକୁ ଅନାଇରହିଥାଏ। ସାଗର ତୁଠରେ କ୍ରନ୍ଦନ କୋଳାହଳ ଶୁଣି ଆସି ଯାହା ଦେଖିଲା, ନିଜ ଆଖିକୁ ବିଶ୍ୱାସ କରିପାରିଲାନାହିଁ। ସେ ବିକଳ ଚିତ୍କାର କରିକରି ତାର ଛାତିକୁ ପିଟିହେଉଥାଏ। ସେ ଶୋକରେ ଅସମ୍ଭାଳ ହୋଇପଡ଼ିଥାଏ। ଗାଁ ମାଇପେ ତାକୁ ଧରି ସାନ୍ତ୍ୱନା ଦେଉଥାନ୍ତି। ମାତ୍ର ସେମାନଙ୍କର ସବୁ ସାନ୍ତ୍ୱନା ବୃଥାହୋଇଯାଉଥାଏ। ତାର କାନ୍ଦଣା ସହ ଗାଁର ସ୍ତ୍ରୀ ପିଲା ମଧ ଭୋ-ଭୋ କାନ୍ଦିପକାଉଥାଆନ୍ତି। କିଏ କାହାକୁ ବୁଝାଇବା ଅବସ୍ଥାରେ ନଥିଲେ। ବିକଳରେ ସାଗର ହୁଡ଼ାରେ ରେବତୀ ମୁଣ୍ଡ ପିଟି କାନ୍ଦି କାନ୍ଦି ଅଚେତ୍ ହୋଇପଡ଼ିଲା।

ନବୀନର ମା' ରେଖା ମୃତ ପୁଅକୁ ଦେଖି ସ୍ଥାଣୁପାଲଟିଯାଇଥାଏ। ସେ କିଛି ଶୁଣିପାରୁନଥାଏ ଅବା ଦେଖିପାରୁନଥିବା ଭଳି ମନେହେଉଥାଏ। ଦେହରେ ପ୍ରାଣ ନଥିବା ଭଳି ଶୂନ୍ୟକୁ ଆଖି ଦୁଇଟି ତେରିହୋଇଯାଇଥାଏ।

ଧୀରେ ଧୀରେ ସୂର୍ଯ୍ୟ ପଶ୍ଚିମ ଆକାଶକୁ ଓହ୍ଲାଇଆସୁଥାନ୍ତି। ଏଣେ ବରଯାତ୍ରୀଙ୍କ ଗହଣରେ ବର ବାଜା ବଜାଇ ରୋଶଣି କରି ଖୁବ୍ ଜାକଜମକରେ ଆସୁଥାଏ। ପୁରୋହିତ ଉଚ୍ଚ ସ୍ୱରରେ ମନ୍ତ୍ର ପଢ଼ି ଚାଲିଥାନ୍ତି। ତାଙ୍କର ସୁମଧୁର କଣ୍ଠର ମନ୍ତ୍ରଧ୍ୱନିରେ ସ୍ଥାନଟି ମୁଖରିତ ହୋଇଉଠୁଥାଏ। ବାଜାବାଲାଙ୍କ ବାଦ୍ୟ ସହିତ ବରଯାତ୍ରୀ ଦଳର ଯୁବକମାନଙ୍କର ନାଚ୍‌ଚାଲିଥାଏ। ଆନନ୍ଦ ଉଲ୍ଲାସରେ ସମସ୍ତେ ମାତିଉଠିଥାନ୍ତି। ହଠାତ୍ ଗାଁରୁ କିଏ ଜଣେ ଆସି ଶୁକ୍ରୁ ବୁଢ଼ାଙ୍କ କାନରେ ଫିସ୍‌ଫିସ୍ କରି ଏ ମର୍ମନ୍ତୁଦ ଘଟଣାଟି କହିଦେଇ ଚାଲିଗଲା। ସେ ଖବର ଶୁଣି ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ାହୋଇପଡ଼ିଲା। ତାର ପରମୁହୂର୍ତ୍ତରେ ଆତ୍ମସଚେତନ ହୋଇ ସମସ୍ତଙ୍କୁ ଇସାରାଦେଲା ନାଚ ବାଜା ସବୁ ବନ୍ଦ କରିବାପାଇଁ। ତାର ଇସାରା ପାଇ ହଠାତ୍ ସବୁ ନିସ୍ତବ୍ଧ ହୋଇଗଲା। ପୁରୋହିତଙ୍କ ମନ୍ତ୍ରପାଠ, ବାଜାବାଲାଙ୍କ ବାଦ୍ୟନାଦ ଓ ବରଯାତ୍ରୀଙ୍କ ଆନନ୍ଦ କୋଳାହଳ କ୍ଷଣିକ ମଧରେ ନିସ୍ତବ୍ଧ ହୋଇଗଲା।

ସମସ୍ତ ଆୟୋଜନ ମୁହୂର୍ତ୍ତକ ମଧରେ ପାଣିଫାଟିଗଲା। ସବୁସ୍ୱପ୍ନ ମାଟିରେ ମିଶିଗଲା। ମୁହୂର୍ତ୍ତକ ମଧ୍ୟରେ ସବୁକିଛି ଓଲଟପାଲଟ ହୋଇଗଲା। ସମସ୍ତେ ମୂକଙ୍କ ଭଳି କେବଳ ଛିଡ଼ାହୋଇରହିଲେ। ଏ କାନରୁ ସେ କାନ ହୋଇ କଥାଟା ଯାଇ ବରର କାନରେ ପହଞ୍ଚିଗଲା। ନଗେନ ବରବେଶରେ କେତେ ଖୁସିରେ କିଆର ହାତ ଧରିବ ବୋଲି ମନରେ ଆଶା ବାନ୍ଧି ଗାଁମୁଣ୍ଡରେ ପହଞ୍ଚିଯାଇଛି। କଥାଟା ଶୁଣି ପ୍ରଥମେ ସେ ଆବାକାବା ହୋଇଗଲା। ଚାରିଆଡ଼କୁ ଶୂନ୍ୟଦୃଷ୍ଟିରେ ଅନାଇଁନେଲା। ତାର ସମସ୍ତ ଆଶା ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯାଇଛି। କିଆକୁ ସ୍ତ୍ରୀଭାବରେ ପାଇବା ଆଶା ଶେଷହୋଇଗଲା। ମନରେ କେତେ ମଧୁର କଳ୍ପନା କରିଥିଲା। ଭାବିଥିଲା — ଓଢ଼ଣା ତଳେ ଲୁଚିରହିଥିବା ସଜଫୁଲ ଭଳି ସୁନ୍ଦର ମୁହଁଟିକୁ ଦେଖି ମନ ତାର ପୂରିଉଠିବ। ସେତକ ଆଉ ତା' ମନ୍ଦ ଭାଗ୍ୟକୁ ମିଳିଲାନାହିଁ। ମନ ତାର ହା-ହତାଶମୟ ହୋଇଉଠିଲା। ମନ ବିଷାଦରେ ଭରିଗଲା। ମୁଣ୍ଡର ପଗଡ଼ି ମୁକୁଟ କାଢ଼ି ଦୂରକୁ ଫିଙ୍ଗିଦେଲା।

ପରମ କାମ୍ୟ ବସ୍ତୁକୁ ପାଖରେ ପାଇ ହାତ ବଢ଼ାଇଲା ବେଳକୁ ହାତ-ପାଆନ୍ତାରୁ ଖସିଗଲେ ମଣିଷ ଯେମିତି ନିରାଶହୋଇପଡ଼େ, ଆଜି ନଗେନର ମଧ୍ୟ ସେହି ଅବସ୍ଥା। ପରମ ଆଦରରେ ତାର ବୁକୁତଳେ ସାଇତିରଖିଥିବା ପୂଜାର ନୈବେଦ୍ୟ ଆଜି ସେ ତାର ପ୍ରଣୟ-ପୂଜାରିଣୀ ନିକଟରେ ଅର୍ପଣ କରିଦେବାପାଇଁ ବ୍ୟାକୁଳ ହୋଇ ଆସିଥିଲା। ମାତ୍ର ବିଧିର ବିଡ଼ମ୍ବନା, ନିୟତିର ପରିହାସରେ ସବୁ ଆଜି

ଓଲଟପାଲଟ ହୋଇଗଲା। ଦୁଃଖ, ଶୋକ ଓ ଲଜ୍ଜାରେ ମୁଣ୍ଡ ତାର ତଳକୁ ହୋଇଗଲା।

ଶୁକ୍ରୁ ବୁଢ଼ା କାନ୍ଧରେ ପଡ଼ିଥିବା ଗାମୁଛାକୁ ଅଣ୍ଟାରେ ଭିଡ଼ି ସାଗର କୂଳକୁ ପାଦ ବଢ଼ାଇଲା। ଏ ଦାରୁଣ ଦୁଃଖବେଳେ ତାର ଭଣଜା ପାଖରେ ଛିଡ଼ାହୋଇ ତାକୁ ଆଶ୍ୱାସନା ଦେବାପାଇଁ ମନ ତାର ବ୍ୟାକୁଳ ହୋଇଉଠିଲା। ତା' ପଛେପଛେ ନଗେନ୍ ମଧ୍ୟ ଏକ ଅବିଶ୍ୱାସ୍ୟ କୌତୂହଳ ଓ ଉତ୍‌କଣ୍ଠାରେ ଟାଣିହୋଇଗଲା ସେହି ସାଗରକୂଳକୁ।

ଏଣେ ଗାଁର ମୁରବିମାନେ ଶବଯାତ୍ରା ପାଇଁ ଆୟୋଜନରେ ଲାଗିଗଲେ। ବେଳ ରତରତ ହେଉଥିବାଦେଖି ସେମାନେ ତତ୍‌ପର ହୋଇଉଠିଲେ। କଳା କଳା ମେଘର ଉହାଡ଼ରେ ବିଜୁଳିର ଝଲକ ଦୂରରେ ଦିଶୁଯାଉଥାଏ। ଗାଁଲୋକେ ବୁଝିନେଲେ ଯେ, ନବୀନ ବୁଡ଼ିଯାଉଥିବା କିଆକୁ ଉଦ୍ଧାରକରିବାପାଇଁ ନିଜ ଜୀବନକୁ ତୁଚ୍ଛକରି ସାଗର ଭିତରକୁ ଲମ୍ଫଦେଇଥିଲା; ମାତ୍ର ଦୁର୍ଯୋଗକୁ କିଆ ସହିତ ସେ ବି ବୁଡ଼ିଗଲା। ଏଭଳିଭାବେ ଦୁଇଟି ଜୀବନଦୀପ ଲିଭିଗଲା।

ଯେଉଁ ପ୍ରେମିକ ପ୍ରେମିକାଙ୍କ ମିଳନକୁ ସମାଜ ବାରଣକରିଥିଲା, ସମସ୍ତଙ୍କ ସମ୍ମୁଖରେ ସେହି ଦୁଇପ୍ରାଣୀଙ୍କର ମଧୁର ମିଳନ ଗାଁଲୋକେ ଦେଖିଲେ। ଦୁହେଁ ଗାଢ଼ ଆଲିଙ୍ଗନରେ ଆବଦ୍ଧରହି ତାଙ୍କର ମଧୁର ମିଳନର ଗୋପନ କଥାକୁ ସ୍ପଷ୍ଟ ଦିବାଲୋକରେ ଲୋକଙ୍କୁ ଦେଖାଇଦେଇ ସବୁଦିନପାଇଁ ଏ ଅବୁଝା, ସହାନୁଭୂତିହୀନ, ବିଚାରହୀନ ସଂସାରରୁ ବିଦାୟ ନେଇଗଲେ। ସମସ୍ତଙ୍କୁ କହିଦେଇଗଲେ— 'ଆମେ ଦୁହେଁ ଏକ ଏବଂ ଅଭିନ୍ନ। ଅନନ୍ତ କାଳପାଇଁ ଆମେ ଏକ ହୋଇ ରହିଥିବୁଁ। ଆମ ପ୍ରେମ ଅମର ଏବଂ ଅଜେୟ। ଆମ ଦୁହିଁଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରିବାର ଶକ୍ତି କାହାରି ନାହିଁ।'

× × × ×

ସନ୍ଧ୍ୟାର ଘନ ଛାୟା ଶୋକଛାୟାରେ ପରିଣତ ହୋଇଯାଇଥାଏ। ଗାଁର ସଭିଏଁ ସେହି ପାହାଡ଼ତଳର ସାଗର ହୁଡ଼ାରେ ଛିଡ଼ାହୋଇ ଅଶ୍ରୁବର୍ଷଣ କରିଚାଲିଥାନ୍ତି। ଶେଷଥରପାଇଁ କରୁଣ ଭାବରେ ସେହି ଯୁଗଳ ମୂର୍ତ୍ତିକୁ ଅନାଇରହିଥାନ୍ତି।

ସମାଜର ନୀତି, ନିୟମ, ସୁନାମ ଦୁର୍ନାମ ଆଜି ଆଉ ଏହି ଦୁଇପ୍ରାଣୀଙ୍କୁ ସ୍ପର୍ଶ କରିପାରୁନାହିଁ। ସେମାନେ ତାର ବହୁ ଊର୍ଦ୍ଧ୍ୱରେ। ମାତ୍ର ଉପସ୍ଥିତ ସଭିଏଁ ଦୁଃଖରେ, ଶୋକରେ, ବ୍ୟଥାରେ ଓ ବେଦନାରେ ମର୍ମାହତ . . .। ମୁହୂର୍ତ୍ତକ ମଧରେ ସବୁଥିରେ ପଡ଼ିଗଲା ଏକ ପୂର୍ଣ୍ଣଚ୍ଛେଦ।

□ □ □